# ଧରାକୋଟ ଐତିହ୍ୟ

ପ୍ରଣେତା ଓ ପ୍ରକାଶକ :

ଶିବରାମ ରଥ

ନାରାୟଣପୁର

ପୋଷ୍ଟ : ଜଗମୋହନ

ଧରାକୋଟ ( ଗଞ୍ଜାମ )

ମୁଦ୍ରଣ—ପଣ୍ଡାପ୍ରିଣ୍ଟର୍ସ, କାଳଷଣ୍ଡିପୁର ( ଗଞ୍ଜାମ )

ମୂଲ୍ୟ— ଟ ୨୧-୦୦ ପ:



*The Samaja*
*Premier Oriya Daily*
*Member A B.C.I., and E N S.,*
*I.L. N A. and A I.N.E.C.*
*Gopabandhu Bhawan*
*Cuttack - 753001*

ବରିଷ୍ଠ ଶିକ୍ଷାବିତ୍ ଶ୍ରୀ ଶିବରାମ ରଥଙ୍କ ଲିଖିତ "ଧରାକୋଟ ଐତିହ୍ୟ" ପୁସ୍ତକର ପାଣ୍ଡୁଲିପି ପାଠକରିବାର ସୁଯୋଗ ପାଇଥିଲି । ଧରାକୋଟ ଗଡର ଇତିହାସ, ସଂସ୍କୃତି, ଐତିହ୍ୟ ଏବଂ ସର୍ବୋପରି ଧରାକୋଟ ରାଜବଂଶର ସଂକ୍ଷିପ୍ତ ବିବରଣୀ ଏଥିରେ ସନ୍ନିବେଶିତ ହୋଇଛି । ଏହାକୁ ଅଞ୍ଚଳବାସୀ ଏକ ତଥ୍ୟପୂର୍ଣ୍ଣ ଗ୍ରନ୍ଥରୂପେ ବ୍ୟବହାର କରିବା ସଙ୍ଗେ ସଙ୍ଗେ ତତ୍କାଳୀନ ଘଟଣାବଳୀ ସମ୍ପର୍କରେ କେତେକ ପରିମାଣରେ ଅବଗତ ହୋଇପାରିବେ । ଛାତ୍ର ସମାଜ, ବୁଦ୍ଧିଜୀବୀ, ଗବେଷକ, ଇତିହାସବିତ୍, ସମାଲୋଚକ ଏବଂ ସାହିତ୍ୟିକ ମାନଙ୍କ ପାଇଁ ଏହା ଏକ ଉପାଦେୟ ପୁସ୍ତକରୂପେ ବିବେଚିତ ହୋଇପାରିବ ବୋଲି ମୁଁ ଆଶାକରୁଛି ।

ସ୍ୱା **ରାଧାନାଥ ରଥ**
ସମ୍ପାଦକ-ସମାଜ
୨୮ ୧୨-୮୮



ଲେଖକ - ଶ୍ରୀ ଶିବରାମ ରଥ – ନାରାୟଣ ପୁର

ପୋଷ୍ଟ ଜଗମୋହନ – (ଗଞ୍ଜାମ)

ଜନ୍ମ – ତା ୧.୭-୧୯୨୯

ରାଜ୍ୟପାଳପୁରସ୍କୃତ କୃତି ପ୍ରଧାନ ଶିକ୍ଷକ

ଶ୍ରୀ ରାଜଉଚ୍ଚବିଦ୍ୟାଳୟ, ଧରାକୋଟ

ଅବସର ପ୍ରାପ୍ତ - ଫୁଲବାଣୀ ମଣ୍ଡଳ ଓ ଗଞ୍ଜାମ ମଣ୍ଡଳ ଶିକ୍ଷାଧିକାରୀ

# ଅଭିମତ

**ପ୍ରଫେସର ପ୍ରହ୍ଲାଦ ପଣ୍ଡା**
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ତା ୧୨–୫–୧୯୮୯

ଓଡ଼ିଶାର ବିଶ୍ୱବିଦ୍ୟାଳୟ ଗୁଡିକରେ ବିଭିନ୍ନ ଅଞ୍ଚଳର ସାହିତ୍ୟିକ ଅବଦାନ ସମ୍ପର୍କରେ ବହୁ ଗବେଷଣା ସନ୍ଦର୍ଭ ସମ୍ପୂର୍ଣ୍ଣ ହୋଇଥିଲା ବେଳେ ଧରାକୋଟ ଭଳି ଏକ ପ୍ରବୁଦ୍ଧ ସାରସ୍ୱତ ପୀଠର ସାହିତ୍ୟ ସମ୍ପର୍କରେ ଏପର୍ଯ୍ୟନ୍ତ ଗବେଷକମାନେ ଯଥାର୍ଥ ଆଲୋକପାତ କରି ପାରିନଥିଲେ । ମଧ୍ୟ-ଯୁଗୀୟ ସୁଖ୍ୟାତି ସମ୍ପନ୍ନ କବି କୃଷ୍ଣସିଂହ ଓ କୃଷ୍ଣଚରଣ ପଟ୍ଟନାୟକଙ୍କ ପ୍ରତିଭା ସମ୍ପର୍କରେ ଐତିହାସିକ ଓ ସମାଲୋଚକମାନେ ଯାହା ସବୁ ଆଲୋଚନା କରି-ଯାଇଛନ୍ତି ତାହା ଅତ୍ୟନ୍ତ ସୀମିତ । ପାରଳା ଓ ବଡ଼ଖେମୁଣ୍ଡିର ବହୁ ମୂଲ୍ୟ-ବାନ କାବ୍ୟ ପ୍ରକାଶିତ ହୋଇଥିବା ସ୍ଥଳେ ଧରାକୋଟରେ ତାହା ସମ୍ଭବପର ହୋଇ ନଥିବାରୁ ଏହାର ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ପୂର୍ଣ୍ଣାଙ୍ଗ ଆଲୋଚନା ଲାଗି ଲେଖକମାନେ ସାହସ କରିନାହାନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଗବେଷକମାନେ ଧରାକୋଟର କାବ୍ୟ କବିତା ସମ୍ପର୍କରେ ଯେଉଁ ସନ୍ଦର୍ଭ-ମାନ ହାତକୁ ନେଇଛନ୍ତି ତାହା ମଧ୍ୟ ପର୍ଯ୍ୟାପ୍ତ ବୋଲି କୁହାଯାଇ ନପାରେ । କିନ୍ତୁ ଅତ୍ୟନ୍ତ ଆନନ୍ଦର କଥା ମୋର ପରମାରାଧ୍ୟ ଗୁରୁଦେବ ଧରାକୋଟ ରାଜ ଉଚ୍ଚ ବିଦ୍ୟାଳୟର ପୂର୍ବତନ ପ୍ରଧାନ ଶିକ୍ଷକ ଓ ଫୁଲବାଣୀ ଓ ଗଞ୍ଜାମ ଶିକ୍ଷାମଣ୍ଡଳର ଶିକ୍ଷାଧିକାରୀ ଶ୍ରୀ ଶିବରାମ ରଥ ଆଜି ଏ ଦିଗରେ ଏକ ସାହସିକ ପଦକ୍ଷେପ ନେଇଛନ୍ତି । ତାଙ୍କ ଲିଖିତ ପାଣ୍ଡୁଲିପି "ଧରାକୋଟର ଐତିହ୍ୟ ଓ ସାହିତ୍ୟ ବିଭବ" ପାଠକଲେ ହୃଦ୍‌ବୋଧ ହୁଏ ଯେ ଏହି ରଚନା ସାମଗ୍ରିକ ଭାବେ ଧରାକୋଟ ରାଜ୍ୟର ଇତିହାସ, ଧର୍ମ ଓ ସାହିତ୍ୟ ସମ୍ପର୍କରେ ଯେତେ ପରିମାଣ ବିବରଣୀ ପ୍ରଦାନ କରେ ଅନ୍ୟ କୌଣସି ପ୍ରକାଶିତ ଗ୍ରନ୍ଥରେ ତାହା ଦୃଷ୍ଟିଗୋଚର ହୁଏନାହିଁ । ଇତିହାସ ଓ ସଂସ୍କୃତିକୁ ଦୃଷ୍ଟି-

ଭୂମିରେ ରଖି ଧରାକୋଟର ସାହିତ୍ୟକ ବିବର୍ତ୍ତନର ଅବତାରଣା ପାଇଁ ତାଙ୍କର ପ୍ରୟାସ ଅତ୍ୟନ୍ତ ଅଭିନବ ।

ପାଣ୍ଡୁଲିପିର ପ୍ରଥମ ଭାଗରେ ଗୁରୁଦେବ ଶ୍ରୀ ରଥ ଖିଡ଼ସିଙ୍ଗି ରାଜ୍ୟର ସୃଷ୍ଟି ଓ ଧରାକୋଟର ନାମକରଣ ସମ୍ପର୍କରେ, କନ୍ଧ ରାଜାଙ୍କ ହସ୍ତରୁ ଶୋଭାଚନ୍ଦ୍ର ଦେବଙ୍କର ଶାସନ ଭାର ଓ ସେହି ପରମ୍ପରା ରକ୍ଷା କରି ହାଡ଼ୁସିଂହଙ୍କର ଧରାକୋଟର ଶାସନ ଭାର ଗ୍ରହଣ ସମ୍ପର୍କରେ ଏକ ଗବେଷଣାତ୍ମକ ଆଲୋଚନା କରିଛନ୍ତି । ଧରାକୋଟ ଇତିହାସ ଯେ କୌତୁହଳ ପୂର୍ଣ୍ଣ ଘଟଣାରେ ପରିପୂର୍ଣ୍ଣ ପାଣ୍ଡୁଲିପି ଅନୁଧ୍ୟାନରୁ ତାହା ସ୍ପଷ୍ଟ ସୂଚିତ ହୁଏ । ବଳୟାର. ସିଂହଙ୍କର ଶାସନ କାଳରେ ଖିଡ଼ସିଙ୍ଗିର ବିଭାଜନ, ହାଡ଼ୁସିଂହଙ୍କ ନେତୃତ୍ୱରେ ଧରା ଓ ମାଳାଙ୍କୁ କରାୟତ୍ତ ଓ ସେମାନଙ୍କ ସ୍ମୃତିରକ୍ଷା ଲାଗି ରାଜ୍ୟର ଓ ପୁଷ୍କରିଣୀର ନାମ ରଖାଯାଇଥିବା ଘଟଣା ଏଥିରେ ଉଲ୍ଲିଖିତ । ପ୍ରତାପରୁଦ୍ରଙ୍କ ସହ ସାକ୍ଷାତ୍ ପାଇଁ ହାଡ଼ୁସିଂହଙ୍କ ପୁରୀଧାମ ଯାତ୍ରା ଓ ଜଗନ୍ନାଥ ଦାସଙ୍କ ଠାରୁ ଭାଗବତର ଓଡ଼ିଆ ଅନୁବାଦର ଏକ ନକଲ ଧରାକୋଟ ଆଣିବା ଘଟଣା ମଧ୍ୟ ରାଜ୍ୟର ସାଂସ୍କୃତିକ ଭିତ୍ତିର ପ୍ରମାଣ ଦିଏ । ହାଡ଼ୁସିଂହ ଓ ରାୟସିଂହଙ୍କ ଶାସନ କାଳରେ ପଡ଼ୋଶୀ ରାଜ୍ୟ ଗୁଡ଼ିକ ସହ ଘନଘଟ ଯୁଦ୍ଧ ଓ ଇଷ୍ଟଇଣ୍ଡିଆ କମ୍ପାନୀ ସହାୟତାରେ ରାଜେନ୍ଦ୍ର ସିଂହ ନିଜ ଭଣଜାଙ୍କୁ କୃଷ୍ଣଭଞ୍ଜଙ୍କର ଉତ୍ତରାଧିକାରୀ ରୂପେ ଧୂମୁସର ଶାସନ ଭାରରେ ଅଧିଷ୍ଠିତ କରାଇବା ବିବରଣୀ ପାଣ୍ଡୁଲିପିର ଐତିହାସିକ ମୂଲ୍ୟବୋଧକୁ ଉଚ୍ଚତର କରିପାରିଛି । ଗଞ୍ଜାମରେ ରାଜ୍ୟ ରାଜ୍ୟ ମଧ୍ୟରେ କଳହ ଓ ଭ୍ରାନ୍ତ ବିବାଦ ପରିପ୍ରେକ୍ଷରେ ଇଷ୍ଟଇଣ୍ଡିଆ କମ୍ପାନୀର ସାମ୍ରାଜ୍ୟ ବିସ୍ତାରରେ କିପରି ସାହାଯ୍ୟ କରିଥିଲା ତାର ଇଙ୍ଗିତ ମଧ୍ୟ ଏଥିରେ ରହିଛି । ସୁତରାଂ ପାଣ୍ଡୁଲିପିଟି ଇତିହାସ ଗବେଷଣା ଲାଗି ପର୍ଯ୍ୟାପ୍ତ ମାନସିକ ଖାଦ୍ୟ ପରିବେଷଣ କରିବା ପାଇଁ ସମର୍ଥ ।

ପାଣ୍ଡୁଲିପିର ଅନ୍ୟ ଏକ ବିଶିଷ୍ଟ ଅଙ୍ଗ ହେଲା ସାହିତ୍ୟକ ସମାଲୋଚନା । ପୁରୁଷୋତ୍ତମ ଦେବ ସମୟରେ ଚନ୍ଦ୍ରକଳେଶ୍ୱର ପୀଠ ପ୍ରତିଷ୍ଠା

ବୃଦ୍ଧି ରାମଚନ୍ଦ୍ର ଦେବଙ୍କ ସମୟରେ ବୃନ୍ଦାବନଚନ୍ଦ୍ର ପୀଠର ପ୍ରତିଷ୍ଠା ଓ ଜୟସିଂହଙ୍କ ଶାସନ କାଳରେ ମହାଭାରତର ଦ୍ରୋଣପର୍ବ ଓ ଗୀତା ଅନୁବାଦର ଅୟୁମାରମ୍ଭ ସମ୍ପର୍କରେ ଲେଖକ ଯେଉଁ ସୂଚନା ଦେଇଛନ୍ତି ଗବେଷକମାନଙ୍କ ଲାଗି ତାହା ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ । ଗୁରୁଦେବ ଶ୍ରୀ ରଥ ରାଜକବି କୃଷ୍ଣସିଂହଙ୍କ ମହାଭାରତ ଅନୁବାଦ ସମ୍ପର୍କରେ ଟିକିଏ ଦୀର୍ଘ ଆଲୋଚନା କରିଛନ୍ତି । ଓଡ଼ିଆ ଜାତୀୟତାର ପରି ପ୍ରସାର କଲେ ରାଜାମଦନମୋହନଙ୍କ ଅବଦାନ ପାଣ୍ଡୁଲିପିରେ ଯେ ଭଳି ପ୍ରାଞ୍ଜଳଭାବେ ବର୍ଣ୍ଣିତ ଅତି କ୍ୱଚିତ୍ ଗ୍ରନ୍ଥରେ ସେଭଳି ଅବତାରଣା ଦୃଷ୍ଟିଗୋଚର ହୋଇଥାଏ । ନାରୀ କବି ରାଧାନାମୀଙ୍କର ବୈଧବ୍ୟ କ୍ଳେଶର କାବ୍ୟିକ ପ୍ରକାଶ, କାହ୍ନୁଦାସଙ୍କ ରାମାୟଣର ମାର୍ମିକ ବର୍ଣ୍ଣନା, ହନୁମାନ ରାୟଗୁରୁ ଓ ଗୋବିନ୍ଦ ରାୟଗୁରୁଙ୍କର କାବ୍ୟକୃତି, ଭୁବନେଶ୍ୱର କବିଚନ୍ଦ୍ରଙ୍କର ଚଉତିଶା, ସାରଥୀଦାସ, ଭରତ ସେଣ, ଅନନ୍ତ ଦାସ, ଭୁବନେଶ୍ୱର କବିବଲ୍ଲଭ, ସଦାଶିବ-ଉଦ୍‌ଗାତା, ଶ୍ୟାମକବି, ଗୋପୀନାଥ ମହାପାତ୍ର, ଗଣେଶ୍ୱର କବିଚନ୍ଦ୍ର, ଗଣପତି ସାହୁ ପ୍ରଭୃତିଙ୍କ ପାଣ୍ଡିତ୍ୟପୂର୍ଣ୍ଣ ରଚନାବଳୀ ସମ୍ପର୍କରେ ଗୁରୁଦେବ ଶ୍ରୀରଥ ଯେଉଁ ତଥ୍ୟ ପ୍ରଦାନ କରିଛନ୍ତି ଅଧିକତର ସାହିତ୍ୟ ସାଧନା ଲାଗି ଗବେଷକମାନଙ୍କୁ ତାହା ଯେ ଦିଗ୍‌ଦର୍ଶନ ଦେବ ଏଥିରେ ଦ୍ୱିମତ ନାହିଁ ।

ଯେଉଁ ସବୁ ସ୍ୱନାମଧନ୍ୟ ଜ୍ଞାନଗରିଷ୍ଠ ପଣ୍ଡିତ ଓ ବିଦ୍ୱାନ୍‌ମାନେ ବାହାରୁ ଆସି ଧରାକୋଟ ରାଜଦରବାରରେ ସମ୍ମାନ ଲାଭ କରିଥିଲେ ସେମାନଙ୍କ କୃତି ଓ ମତାମତ ମଧ୍ୟ ପାଣ୍ଡୁଲିପିରେ ସ୍ଥାନ ପାଇଛି । ତାହାଙ୍କୁ ତୁଳନାତ୍ମକ ଅଳ୍ପ ପ୍ରତିଷ୍ଠିତ ଲେଖକମାନଙ୍କ ସମ୍ପର୍କରେ ମଧ୍ୟ ସେ ସଂକ୍ଷିପ୍ତ ଆଲୋଚନା କରିଛନ୍ତି । କେବଳ ଧର୍ମ, ଇତିହାସ ଓ ସାହିତ୍ୟ ନୁହେଁ, ପିତଳ ଜାତି ଭଳି ସାମାଜିକ ଉତ୍ସବ ସମ୍ପର୍କରେ ଆଲୋକପାତ କରି ପାଣ୍ଡୁଲିପିଟିକୁ ସର୍ବାଙ୍ଗ ସୁନ୍ଦର କରିବା ଲାଗି ଲେଖକ ପ୍ରୟାସ କରିଛନ୍ତି, ଦେଶବତ୍ସଳ ମଦନମୋହନ ଦେବଙ୍କର ଘଟଣା ବହୁଳ ଶାସନ ଓ ତାଙ୍କ ରାଜକବି ଉଦ୍ୟାଳଙ୍କାର ଶ୍ୟାମସୁନ୍ଦର ଦାସଙ୍କର ବିସ୍ତାରିତ ସାହିତ୍ୟ ସାଧନା ସମ୍ପର୍କୀୟ

ଆଲୋଚନା ଅଧିକ ପ୍ରାଞ୍ଜଳ ଓ ଜୀବନ୍ତ ହୋଇପାରିଛି । ପାଣ୍ଡୁଲିପିଟି ପାଠକଲେ ହୃଦ୍‌ବୋଧ ହୁଏ ଯେ ଉତ୍କଳୀୟ ଇତିହାସରେ ଯାହାକୁ ଆମେ ଆଦର୍ଶ ସ୍ଥାନୀୟ ବୋଲି ଜାଣିଛୁ, ଧରାକୋଟ ରାଜ୍ୟରେ ସେ ସବୁ ଭରପୂର ଥିଲା । ଏହା ପ୍ରକାଶିତ ହେଲେ ସାହିତ୍ୟ ଓ ସଂସ୍କୃତି ପ୍ରେମୀ ପାଠକମାନେ ଅଶେଷ ଉପକୃତ ହେବେ ବୋଲି ଆମେ ବିଶ୍ୱାସ ପୋଷଣ କରୁ । ଆଞ୍ଚଳିକ ସାହିତ୍ୟ ଓ ଇତିହାସ ଗବେଷଣା କ୍ଷେତ୍ରରେ ଏହାକୁ ଏକ ସାର୍ଥକ ପ୍ରଚେଷ୍ଟା ବୋଲି ଗଣ୍ୟ କରାଯାଇପାରେ ।

ଏହି ଗ୍ରନ୍ଥ ରଚନା କରି ସେ ଧରାକୋଟ ତଥା ଗଞ୍ଜାମର ଲୁପ୍ତ ରତ୍ନକୁ ଉଦ୍ଧାର କରି ସାହିତ୍ୟ ଓ ସଂସ୍କୃତି ବିକାଶର ଦିବ୍ୟ ମାର୍ଗ ଫିଟାଇ ପାରିଥିବା ହେତୁ ମୁଁ ବିନମ୍ର ଅଭିନନ୍ଦନ ଜଣାଉଅଛି ।



# ଆଦ୍ୟକଥନୀ

ଓଡ଼ିଶା ଇତିହାସର ସାରସ୍ୱତ ପୀଠ ମଧ୍ୟରେ ଅଗ୍ରଗଣ୍ୟ ବିବେଚିତ ଧରାକୋଟ ଏଷ୍ଟେଟର ରାଜ ପରିବାର ବହୁପ୍ରଶଂସିତ ହୋଇଆସିଛନ୍ତି । ଏହିବଂଶର ଅନେକ ରାଜା ନିଜ ନିଜର ମନୀଷା ଦ୍ୱାରା ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ପ୍ରଭୂତ ଉନ୍ନତି କରିପାରିଛନ୍ତି । ଏହିରାଜାଙ୍କରେ ପ୍ରୋତ୍ସାହନରେ ଧରାକୋଟ ଓ ଧରାକୋଟ ବାହାରର ବହୁ ପ୍ରଖ୍ୟାତ ସଂସ୍କୃତଜ୍ଞ ଓ କବି ସଂସ୍କୃତ ଓ ଓଡ଼ିଆ ଭାଷାରେ ବହୁକାବ୍ୟ, ପୁରାଣ, ଚମ୍ପୂ, ଚୌପଦୀ ସ୍ତୁତି ଓ ସ୍ତୋତ୍ର ପ୍ରଭୃତି ରଚନାକରି ଉଭୟ ସାହିତ୍ୟର ଅନେକ ବିଭାଗ ଓ ବିଭବକୁ ସମୃଦ୍ଧ ଓ ମହିମାମୟ କରିବାରେ ସଫଳ ହୋଇପାରିଛନ୍ତି । ଏତଦ୍‌ଭିନ୍ନ-ଏହିରାଜବଂଶର ରାଜାମାନେ ଆଧ୍ୟାତ୍ମିକ କ୍ଷେତ୍ରରେ ଓଡ଼ିଶା ତଥା ଭାରତବର୍ଷରେ ସନାତନ ଧର୍ମର ପ୍ରଚାର ଓ ପ୍ରସାର ପାଇଁ ପ୍ରସିଦ୍ଧି ଲାଭକରିଥିଲେ ।

ଏହିବଂଶର ପ୍ରଥିତଯଶା ରାଜାମଦନମୋହନ ସିଂହଦେଓ ଉତ୍କଳ ପ୍ରଦେଶ ଗଠନ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣକରି ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ ସଭାପତିତ୍ୱ କରିବାର ଗୌରବ ଅର୍ଜନ କରିବା ସଙ୍ଗେସଙ୍ଗେ ଗଞ୍ଜାମର ତେଲୁଗୁ ଭାଷାର "କୁ" ପ୍ରଭାବରୁ ଓଡ଼ିଆ ଭାଷାକୁ ରକ୍ଷାକରିବାପାଇଁ ଏକ ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

ଏଣୁ ଆମର ମାତୃଭୂମି ଏହି ପବିତ୍ର ଜ୍ଞାନ ପୀଠର ସାହିତ୍ୟ, ସଂସ୍କୃତି ଓ ଧାର୍ମିକ ଚେତନାରେ ଉଦ୍‌ବୁଦ୍ଧ ହୋଇ ଏଠା ସ୍ଥାନୀୟ ଶ୍ରୀରାଜ ଉଚ୍ଚ ବିଦ୍ୟାଳୟରେ ସହକାରୀ ଓ ପ୍ରଧାନ ଶିକ୍ଷକ ଦାୟିତ୍ୱରେ ରହି ଅଧ୍ୟାପନା

କାର୍ଯ୍ୟ କରୁଥିବା ସମୟରେ ବିସ୍ମୃତି ଗର୍ଭରେ ଲୋପପାଇ ଯାଉଥିବା ଏ ଅଞ୍ଚଳର ଲେଖକମାନଙ୍କ ବିକ୍ଷିପ୍ତ ଲେଖା ସମୂହକୁ ସଂଗ୍ରହକରି କେତେ-ଗୋଟି ପ୍ରବନ୍ଧ ଲେଖି ଉତ୍କଳ ସାହିତ୍ୟ, ନବଜୀବନ, ସହକାର ଓ ଦୈନିକ ସମାଜରେ ପ୍ରକାଶନ ପାଇଁ ପଠାଇଥିଲି । ଏଥିରେ ସନ୍ନିବେଶିତ ଅନେକ ଲେଖା ଉପରୋକ୍ତ ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା । ଏତଦ୍‌ବ୍ୟତୀତ ଧରାକୋଟର ଇତିହାସ ସମ୍ବନ୍ଧିତ ଆଉ କେତେକ ମୋର ଲେଖା ସ୍କୁଲର ବାର୍ଷିକ ମୁଖପତ୍ର ଦୂର୍ବାଦଳ, ମଦନମୋହନ ସ୍ମରଣିକା ଓ ଗୁରୁଶ୍ରେଷ୍ଠ ଭୁବନେଶ୍ୱର ସ୍ମୃତିକାରେ ମଧ୍ୟ ଆଗରୁ ପ୍ରକାଶ ପାଇଥିଲା । ଏଣୁ ଧରାକୋଟର ଧାରାବାହିକ ରାଜନୈତିକ ସାହିତ୍ୟିକ ଓ ସାଂସ୍କୃତିକ ଇତିହାସ ଲେଖିବାର ଆଶାପୋଷଣକରି ପ୍ରାଚୀନ ଓ ଅର୍ବାଚୀନ ଲେଖକ ମାନଙ୍କ ପ୍ରକାଶିତ ଲେଖାଗୁଡ଼ିକ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଲୋକ ମୁଖରେ ପ୍ରଚଳିତ କେତେକ କିମ୍ବଦନ୍ତୀ, ଭଜନ ଓ ସଂସ୍କୃତ ଶ୍ଳୋକ ସଂଗ୍ରହକରି ଗବେଷଣା କାର୍ଯ୍ୟରେ ମନୋନିବେଶକଲି । ଇତ୍ୟବସରରେ ମୋର ପିତୃଦେବ ସ୍ୱର୍ଗୀୟ ଚନ୍ଦ୍ରମଣି ରଥ କାବ୍ୟତୀର୍ଥ ତାଙ୍କ ଜୀବଦଶାରେ ଧରାକୋଟର ବହୁ ଐତିହାସିକ ତଥ୍ୟ ଓ ଲେଖକମାନଙ୍କ ସାହିତ୍ୟକୃତି ସଂଗ୍ରହକରି ରଖିଥିଲେ । ସେହି ଲୁକ୍କାୟିତ ଉପାଦେୟ ତଥ୍ୟଗୁଡ଼ିକ ଏହି ପୁସ୍ତକ ରଚନାକରିବାରେ ବିଶେଷ ସହାୟକ ହେଲା । ଏଣୁ ତାଙ୍କଠାରେ ମୋର ଭକ୍ତିପୂତ ପ୍ରଣତି ଜଣାଉଅଛି ।

ଏହି ଅବସରରେ ଧରାକୋଟର ଉପସ୍ଥିମାନ ରାଜା ଶ୍ରୀ ଅନନ୍ତନାରାୟଣ ସିଂହ ଦେଓ ରାଜବାଟୀରେ ରକ୍ଷିତ ତଥ୍ୟ ଓ ତାଙ୍କ ବଂଶାବଳୀ ସମ୍ପର୍କରେ କେତେକ ତଥ୍ୟ ଯୋଗାଇ ଏହି ଅବଲୁପ୍ତ ଗୌରବାବହ ସାହିତ୍ୟ ଓ ସଂସ୍କୃତିର ଇତିହାସ ଲେଖିବା ପାଇଁ ମୋତେ ଯେଉଁ ଉତ୍ସାହ ଓ ପ୍ରେରଣା ଦେଇଛନ୍ତି ସେଥିପାଇଁ ତାଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଅଛି ।

ମୋର ନିବେଦନ ନମେ ପରମ ଦେଶ ହିତୈଷୀ, ଓଡ଼ିଶାର ବରପୁତ୍ର, ସ୍ୱନାମ ଧନ୍ୟ ଲୋକସେବକ ମଣ୍ଡଳର ସଭାପତି, ସମାଜ-ସମ୍ପାଦକ, ପଦ୍ମଭୂଷଣ ଡାକ୍ତର ରାଧାନାଥ ରଥ "ଧର୍ମକୋଷ ଐତିହ୍ୟ ବଢ଼ିର" ପାଣ୍ଡୁଲିପି ପାଠକରି ଯେଉଁ ଗୁରୁତ୍ୱପୂର୍ଣ୍ଣ ଅଭିମତ ଦେଇଛନ୍ତି ତାହା ପ୍ରଣିଧାନ ଯୋଗ୍ୟ । ସେ ମହୋଦୟ ବହିର ମୁଦ୍ରଣ ପାଇଁ ଆକୁଣ୍ଠିତ ଚିତ୍ତରେ ସମସ୍ତ କାଗଜ ଯୋଗାଇ ଏହାର ଆଶୁ ପ୍ରକାଶନ-ପାଇଁ ଯେଉଁ ଉତ୍ସାହ ପ୍ରଦାନ କରିଛନ୍ତି ସେଥିପାଇଁ ତାଙ୍କ ନିକଟରେ ଚିରକୃତଜ୍ଞତା ପାଶରେ ଆବଦ୍ଧ ରହିଲି ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରବୀଣ ଅର୍ଥନୀତି ଅଧ୍ୟାପକ, ବାଗ୍ମୀ ଓ ପ୍ରତିଷ୍ଠିତ ଲେଖକ, ସାହିତ୍ୟାନୁରାଗୀ ଶ୍ରୀ ପ୍ରହଲ୍ଲାଦ ପଣ୍ଡା ପାଣ୍ଡୁଲିପି ଅମୂଳଚୂଳ ପାଠକରି ଏଥିରେ ସନ୍ନିବେଶିତ ପାଣ୍ଡିତ୍ୟପୂର୍ଣ୍ଣ ଭୂମିକା ଲେଖି ଦେଇଥିବା ହେତୁ ତାଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଜଣାଉ ଅଛି ।

ପୁନଶ୍ଚ ମୋର ପରମ ହିତୈଷୀ ବ୍ରହ୍ମପୁରର ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର, ସାହିତ୍ୟିକ, ସଂସ୍କୃତ ଶାସ୍ତ୍ର ଗବେଷକ ବରିଷ୍ଠ ପଣ୍ଡିତ ଶ୍ରୀ ପରମେଶ୍ୱର ମିଶ୍ର, ସାହିତ୍ୟ ନ୍ୟାୟାଚାର୍ଯ୍ୟ, ପଣ୍ଡିତ ଶ୍ରୀ ସନ୍ତୋଷ ମିଶ୍ର-ସାହିତ୍ୟାଚାର୍ଯ୍ୟ, ଅବସରପ୍ରାପ୍ତ ପ୍ରବୀଣ ଶିକ୍ଷକ ଶ୍ରୀ କୃଷ୍ଣଚନ୍ଦ୍ର ପଟ୍ଟନାୟକ, ବହୁ ତଥ୍ୟ ଯୋଗାଇ ଏହାର ପ୍ରକାଶନ ପାଇଁ ଉତ୍ସାହିତ କରିଥିବା ହେତୁ ସେମାନେ ମୋର ଧନ୍ୟବାଦାର୍ହ ।

ସର୍ବୋପରି ଶ୍ରୀ ରାଜ ଉଚ୍ଚ ବିଦ୍ୟାଳୟର ସଂସ୍କୃତ ଶିକ୍ଷକ, ଜଗନ୍ନାଥ ବିଶ୍ୱବିଦ୍ୟାଳୟ ଦ୍ୱାରା ବିଦ୍ୟାବାରିଧି ଉପାଧି ପ୍ରାପ୍ତ ଓ "ଭର୍ତ୍ତୃହରି ନୀତିଶତକମ୍" ର ଓଡ଼ିଆ ଅନୁବାଦକ ସୁସାହିତ୍ୟିକ ପଣ୍ଡିତ ଶ୍ରୀ ଈଶ୍ୱର ମିଶ୍ର ସାହିତ୍ୟାଚାର୍ଯ୍ୟ ପୁରାତନ ଜୀର୍ଣ୍ଣ ତାଳପତ୍ର, କାଗଜ ଓ ଜନଶ୍ରୁତିରୁ ସଂଗୃହିତ କେତେକ ସଂସ୍କୃତ ଶ୍ଳୋକର ଭ୍ରମ ସଂଶୋଧନ-ପୂର୍ବକ ପ୍ରୁଫ୍ ପର୍ଦ୍ଦଗୁଡ଼ିକ ସଂଶୋଧନ କରି ଏହାର ପ୍ରକାଶନ କାର୍ଯ୍ୟରେ

କାୟ-ମନୋ-ବାକ୍ୟରେ ପରିଶ୍ରମ ପୂର୍ବକ ଯେଉଁ ନୈତିକ ସମର୍ଥନ ଓ ପ୍ରେରଣା ଯୋଗାଇଛନ୍ତି ସେଥିପାଇଁ ତାଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଜଣାଉଅଛି ।

ଏତଦ୍ ବ୍ୟତୀତ ଅନ୍ୟାନ୍ୟ ଯେଉଁ ସୁଧୀବର୍ଗ ଏ ବହିପାଇଁ ତଥ୍ୟ ଯୋଗାଇଛନ୍ତି ସେମାନଙ୍କୁ ଓ ମୁଦ୍ରାକର ଶ୍ରୀ ସତ୍ୟନାରାୟଣ ପଣ୍ଡାଙ୍କୁ ଧନ୍ୟବାଦ ଜଣାଉଛି ।

ଏ ବହିରେ ଆଲୋଚିତ ହୋଇଥିବା ଲେଖକମାନଙ୍କ ବ୍ୟତୀତ ନିମ୍ନଲିଖିତ ସଂସ୍କୃତ ଓ ଓଡ଼ିଆ ଲେଖକଙ୍କ ସାହିତ୍ୟକୃତି ଉପରେ ଆଲୋଚନା କରି ଯାଇ ପାରିନାହିଁ । ସେମାନଙ୍କ ଗ୍ରନ୍ଥଗୁଡ଼ିକ ଅନୁସନ୍ଧାନ ସାପେକ୍ଷ । ଲିଖିତ ତାଳପତ୍ର ଗ୍ରନ୍ଥଗୁଡ଼ିକ ଓଡ଼ିଶା ସାହିତ୍ୟ ସଂଗ୍ରହାଳୟରେ ରକ୍ଷିତଥିବା ଜଣାଯାଏ । ଗ୍ରନ୍ଥଗୁଡ଼ିକ ମିଳିଲେ ଏଗୁଡ଼ିକ ବିଷୟରେ ପରେ ପରିବର୍ଦ୍ଧିତ ସଂସ୍କରଣରେ ପ୍ରକାଶ କରାଯିବ ।

ଯଥା :—୧) ରାଜା ରଘୁନାଥ ସିଂହଙ୍କ ଭ୍ରାତା ଯଦୁନାଥ ସିଂହଙ୍କ 'ଅଭିନୟ ଦର୍ପଣ' ୨) ଗଙ୍ଗାଧର ରାଜଗୁରୁଙ୍କ 'ଲକ୍ଷ୍ମଣା ପରିଣୟ କାବ୍ୟ' ଓ 'କୋକିଳ ଦୂତ' ୩) କବି ଲକ୍ଷ୍ମୀଧରଙ୍କ "ନାମନିର୍ଣ୍ଣୟ ଦର୍ପଣ" ୪) ହରିହର ମିଶ୍ରଙ୍କ "ନ୍ୟାୟସିଦ୍ଧାନ୍ତ ମୁକ୍ତାବଳୀ" ୫) ରାଧାକୃଷ୍ଣ 'ସିଂହଙ୍କ କବିତାବଳୀ' ୬) ଗୋପାଳକୃଷ୍ଣ ପଟ୍ଟନାୟକଙ୍କ 'ବ୍ୟାଘ୍ର ପୁରାଣ' ୭) ଗଣେଶ୍ୱର ବିଦ୍ୟାରତ୍ନଙ୍କ 'ବଳୀବୈଧ ବ୍ୟବସ୍ଥା' ।

ପରିମାର୍ଜିତ ତ୍ରୁଟିଶୂନ୍ୟ ପ୍ରକାଶନ ପାଇଁ ଯଥେଷ୍ଟ ଚେଷ୍ଟା ସତ୍ତ୍ୱେ ଏ ବହିରେ ମୁଦ୍ରଣ ଜନିତ ଯେଉଁ ଭୁଲ ରହିଗଲା ସେଥିପାଇଁ ଶେଷରେ ଶୁଦ୍ଧିପତ୍ର ଦିଆଯାଇଛି । ସୁଧୀପାଠକ ବର୍ଗ ଏହି ତ୍ରୁଟି ମାର୍ଜନା କରିବେ ।

ବହିଟି ପାଠକମାନଙ୍କ ମଧ୍ୟରେ ଉପାଦେୟ ବିବେଚିତ ହୋଇ ଆଦୃତ ହେଲେ ମୋର ଶ୍ରମ ଓ ଅର୍ଥ ସାର୍ଥକ ହେବା ମନେ କରିବି ।

ତା ୨୫-୧୨-୯୧ ଲେଖକ

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|
| ୨୨ । ଭରତସେଣ | ୧୨୩ |
| ୨୩ । ରାଜା ବ୍ରଜସୁନ୍ଦର ସିଂହ | ୧୩୪ |
| ୨୪ । ହନୁମାନ କବିଚନ୍ଦ୍ର | ୧୩୫ |
| ୨୫ । ଭୁବନେଶ୍ୱର କବିଚନ୍ଦ୍ର | ୧୪୦ |
| ୨୬ । ମୃତ୍ୟୁଞ୍ଜୟ ସାହିତ୍ୟଭୂଷଣ | ୧୪୮ |
| ୨୭ । କବିରାଜ ନୀଳକଣ୍ଠ | ୧୪୮ |
| ୨୮ । ରାଜା ମଦନମୋହନ ସିଂହଦେଓ | ୧୫୮ |
| ୨୯ । ଗୋବିନ୍ଦ ରଥଗୁରୁ | ୧୭୭ |
| ୩୦ । ଅନନ୍ତ ଦାସ କବିରତ୍ନ | ୧୮୦ |
| ୩୧ । ଶ୍ୟାମସୁନ୍ଦର ଦାସ ପଦ୍ୟାଳଂକାର | ୧୯୦ |
| ୩୨ । କବି ସାରଥି ଦାସ | ୨୦୩ |
| ୩୩ । ଭୁବନେଶ୍ୱର ମିଶ୍ର କବିବଲ୍ଲଭ | ୨୧୦ |
| ୩୪ । ରାମକୃଷ୍ଣ ରଥ | ୨୨୩ |
| ୩୫ । ଗଣପତି ସାହୁ | ୨୨୭ |
| ୩୬ । ଚନ୍ଦ୍ରମଣି ରଥ | ୨୨୯ |
| ୩୭ । ହରିହର ମିଶ୍ର | ୨୩୧ |
| ୩୮ । ଗଣେଶ୍ୱର କବିଚନ୍ଦ୍ର | ୨୩୨ |
| ୩୯ । ପିଙ୍ଗଳଯାତ ଓ କବି ମୋହନ ପଣ୍ଡା | ୨୩୭ |
| ୪୦ । ରାଜା ବ୍ରଜକିଶୋର ଚନ୍ଦ୍ରସିଂହ ଦେଓ | ୨୪୨ |
| ୪୧ । ରାଜା ପଦ୍ମନାଭ ସିଂହଦେଓ | ୨୪୮ |
| ୪୨ । କବି କ୍ଷେତ୍ରବାସୀ ପାଳ | ୨୫୦ |
| ୪୩ । ରାଜା ଅନନ୍ତନାରାୟଣ ସିଂହଦେଓ | ୨୫୨ |

—o—

# ଖିଡ଼ିସିଙ୍ଗି ରାଜ୍ୟର ସଂକ୍ଷିପ୍ତ ଇତିହାସ

ଧରାକୋଟ ଜମିଦାରୀ ତାଲୁକା ଗଞ୍ଜାମ ଜିଲ୍ଲାରେ ଅବସ୍ଥିତ । ଓଡ଼ିଶା ଇତିହାସରେ ଗଞ୍ଜାମ ଜିଲ୍ଲା ନାମରେ ଯେଉଁ ଭୂଖଣ୍ଡ ଅଛି ତାହା ପ୍ରାଚୀନ ଉତ୍କଳ ତଥା କଳିଙ୍ଗର ଏକ ଅଂଶ । ଉଡ୍ର, ଉତ୍କଳ ଓ କଳିଙ୍ଗର କେତେକ ଅଞ୍ଚଳକୁ ନେଇ ଆଧୁନିକ ଓଡ଼ିଶା ପ୍ରଦେଶ ଗଠିତ । ଗଞ୍ଜାମ ଜିଲ୍ଲାର ବହୁ ଅଞ୍ଚଳ ଦିନେ ଘନ ଜଙ୍ଗଲ, ପାହାଡ଼ ଓ ପର୍ବତରେ ପରିପୂର୍ଣ୍ଣ ଥିଲା । ଏହି ଜିଲ୍ଲାରେ ଅଧିକାଂଶ ପୁଳିନ୍ଦ, କନ୍ଧ ଓ ଶବର ଜାତିର ଲୋକମାନେ ବସବାସ କରୁଥିଲେ । ଏହି ଜିଲ୍ଲାର ଦକ୍ଷିଣ ପଶ୍ଚିମରେ କୋରାପୁଟ, କଳାହାଣ୍ଡି ଓ ଉତ୍ତର ପଶ୍ଚିମରେ ଫୁଲବାଣୀ ଜିଲ୍ଲା ଅବସ୍ଥିତ ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରୁ ସପ୍ତମ ଶତାବ୍ଦୀ ଯାଏ କୋରାପୁଟର ଉତ୍ତର ଭାଗ ସମେତ ମଧ୍ୟପ୍ରଦେଶର ବସ୍ତର ଓ ପଶ୍ଚିମ ଓଡିଶାର ପଶ୍ଚିମାଞ୍ଚଳର ଏକ ବିରାଟ ଭୂଖଣ୍ଡରେ ନଳବଂଶର ରାଜାମାନେ ରାଜତ୍ୱ କରୁଥିଲେ । ଏହି ବଂଶରେ ବରାହରାଜଙ୍କ ଠାରୁ ଆରମ୍ଭ କରି ବିଳାସତୁଙ୍ଗଙ୍କ ସମେତ ସାତ ଜଣ ରାଜା ସପ୍ତମ ଶତାବ୍ଦୀ ଯାଏ ରାଜତ୍ୱ କରିଥିବା ଜଣାଯାଏ । ଆଧୁନିକ ଗଞ୍ଜାମ ଜିଲ୍ଲାର ପଶ୍ଚିମାଞ୍ଚଳରେ ଅବସ୍ଥିତ ଏକ ବିରାଟ ଭୂଖଣ୍ଡକୁ ପୂର୍ବେ ଖିଣ୍ଡିଗିରି ଶୃଙ୍ଗ ମଣ୍ଡଳ କୁହାଯାଉଥିଲା । ଏହି ଖିଣ୍ଡିଗିରି-ଶୃଙ୍ଗ-ମଣ୍ଡଳ ଦିନେ ନଳରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ବିଳାସ ତୁଙ୍ଗଙ୍କ ପରେ ଭୀମଦେବଙ୍କ ପର୍ଯ୍ୟନ୍ତ ଅର୍ଥାତ୍ ଅଷ୍ଟମ ଶତାବ୍ଦୀରୁ ଆରମ୍ଭ କରି ଦଶମ-ଶତାବ୍ଦୀର ଦ୍ୱିତୀୟ ଦଶକ ଯାଏ ନଳବଂଶର ରାଜାମାନଙ୍କ ନାମ ଓ ରାଜତ୍ୱ ସମ୍ବନ୍ଧରେ ବିଶେଷ ଇତିହାସ ଏଯାଏ ଜଣାଯାଇ ନାହିଁ ।

ଆସିକା ନିକଟସ୍ଥ ପାଣ୍ଡିଆପଥର ଅଞ୍ଚଳରୁ ୧୯୫୫ ଖ୍ରୀଷ୍ଟାବ୍ଦରେ ମିଳିଥିବା ଏକ ତାମ୍ର ଫଳକରୁ ନଳବଂଶୀୟ ଜଣେ ରାଜା " ଭୀମସେନ " ମହାରାଜାଧିରାଜ ଉପାଧି ବହନ କରି ସେଠାରେ ରାଜତ୍ୱ କରିଥିବା ବିଷୟ ପ୍ରକାଶ ପାଇଛି । ସେଥିରେ ଭୌମାବ୍ଦ ୧୮୯ ଅଙ୍କିତ ହୋଇଥିବାରୁ ଏବଂ

ସେହି ସମ୍ବତ୍ (୯୨୫ ଖ୍ରୀଷ୍ଟାବ୍ଦରେ) ଅର୍ଥାତ୍ ଖ୍ରୀମସେନଙ୍କ ରାଜତ୍ୱକାଳ ଦଶମ-ଶତାବ୍ଦୀର ପ୍ରଥମାର୍ଦ୍ଧରେ ବୋଲି ଜଣାଯାଏ । ଏହି ତାମ୍ର ଶାସନରେ ଲେଖାଅଛି ଯେ ଖିଣ୍ଡିଖି-ଶୃଙ୍ଗ-ମଣ୍ଡଳର ନଳବଂଶ ଉଦ୍ଭବ ମହାରାଜା-ଧିରାଜ ଖ୍ରୀମସେନଦେବଙ୍କ ରାଜଧାନୀ ଖ୍ରୀମପୁର ଥିଲି ଓ ସେ କୂର୍ମିତୋଳ ଗ୍ରାମ ବସ୍‌ଗୋତ୍ରୀୟ ଅଗି୍ନ ସ୍ୱାମୀଙ୍କ ପୌତ୍ର ଓ ଆଦିତ୍ୟଦେବଙ୍କ ପୁତ୍ରଭଟ୍ଟପ୍ରାକ୍ରନଙ୍କୁ ସଂକ୍ରାନ୍ତି ପୁଣ୍ୟକାଳରେ ସାତପଳ ରୂପା ଦକ୍ଷିଣା ସହ ଦାନ କରିଥିଲେ । ଉକ୍ତ ନଳବଂଶୀୟ ମହାରାଜା ଖ୍ରୀମସେନ ଦେବ ପରମ ମାହେଶ୍ୱର ଏବଂ ତାଙ୍କ ଇଷ୍ଟଦେବଙ୍କ ନାମ ଶ୍ରୀ ଯମଲିଙ୍ଗେଶ୍ୱର (ମହାଦେବ) ବୋଲି ଏହି ତାମ୍ରଫଳକରେ ଲିଖିତ ଅଛି । ଖ୍ରୀମସେନଙ୍କ ପରେ ଇପୁଧବଳ ନାମକ ଜଣେ ରାଜା ଏହି ମଣ୍ଡଳରେ ୯୨୯ ଖ୍ରୀଷ୍ଟାବ୍ଦରେ ରାଜତ୍ୱ କରୁଥିବା ବିଷୟ ଅନ୍ୟ ଏକ ତାମ୍ରଫଳକରୁ ପ୍ରକଟିତ ହେଉଛି । ରାଜା ଖ୍ରୀମସେନଙ୍କ ବଂଶ ସମ୍ବନ୍ଧରେ କିମ୍ବା ନରେନ୍ଦ୍ର ଧବଳଙ୍କ ପରବର୍ତ୍ତୀ ରାଜାମାନଙ୍କ ବିଷୟରେ ଏ ପର୍ଯ୍ୟନ୍ତ ସବିଶେଷ ଐତିହାସିକ ତଥ୍ୟ ଆବିଷ୍କୃତ ହୋଇନାହିଁ ।

ଓଡ଼ିଶା ଇତିହାସରୁ ଜଣାଯାଏ ଏହି ଖିଣ୍ଡିଖି-ଶୃଙ୍ଗ-ମଣ୍ଡଳ ନିକଟରେ ଗୋମୁଣ୍ଡ ମଣ୍ଡଳ ଥିବା ଜଣାଯାଏ । ଏହି ଦୁଇ ମଣ୍ଡଳର ଭୌଗୋଳିକ ପରିସ୍ଥିତି ସଠିକ୍ ଭାବେ ଜଣାନଗଲେ ସୁଦ୍ଧା ତାହା ଭଞ୍ଜବଂଶୀୟ ରାଜା-ମାନଙ୍କ ଖିଞ୍ଜିଳୀ ମଣ୍ଡଳ ( ଆଧୁନିକ ଘୁମୁସର ସବ୍‌ଡିଭିଜନର କେତେକ ଅଞ୍ଚଳ ଏବଂ 'ସ୍ୱେତକ' ଆଧୁନିକ ବ୍ରହ୍ମପୁର ସବ୍‌ଡିଭିଜନ) ମଧ୍ୟବର୍ତ୍ତୀ ମାଳଅଞ୍ଚଳରେ ଅବସ୍ଥିତ ଥିଲା । ସମ୍ଭବତଃ ଖିଞ୍ଜିଳୀରେ ଯେଉଁ ପ୍ରଭାବଶାଳୀ ଭଞ୍ଜବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ ସେମାନଙ୍କ ପ୍ରଭାବ ହେତୁ ନଳ-ବଂଶୀୟ ରାଜାମାନଙ୍କ ପ୍ରଭୁତ୍ୱ କିୟତ୍ ପରିମାଣରେ ହ୍ରାସ ପାଇଲା । ଦଶମ ଶତାବ୍ଦୀ ବେଳକୁ ଏହି ଖିଣ୍ଡିଖି-ଶୃଙ୍ଗରେ ଏହି ନଳବଂଶୀୟ ରାଜାମାନେ ଭୌମକର ରାଜାମାନଙ୍କ ଅଧୀନରେ ରାଜତ୍ୱ କରିଥିବା ଜଣାଯାଏ । ଭୌମ-ବଂଶୀୟ ମହାରାଜାଧିରାଜ 'ଶାନ୍ତିକର ଦେବ' ନିଜକୁ ଅଷ୍ଟାଦଶ ମଣ୍ଡଳାଧିପତି

ଉପାଧିରେ ନିଜକୁ ଭୂଷିତ କରିଥିଲେ । ସେତେବେଳେ ଏହି ଖିଣ୍ଡିଗ୍ର-ଶୃଙ୍ଗ ମଣ୍ଡଳ ଅଷ୍ଟାଦଶ ମଣ୍ଡଳର ଅନ୍ତର୍ଭୁକ୍ତ ଥିଲା । ଏହି ନଳବଂଶୀୟ ରାଜାମାନେ ମହାରାଜାଧିରାଜ ଉପାଧି ବହନ କରିଥିଲେ ସୁଦ୍ଧା ଭୌମକର ବଂଶୀୟ ରାଜାମାନଙ୍କ ଅଧୀନରେ ସାମନ୍ତ ରାଜା ରୂପେ ଆଧୁନିକ ଧରାକୋଟ ରାଜ୍ୟରେ ଅବସ୍ଥାନ କରୁଥିଲେ ବୋଲି ଐତିହାସିକ ସତ୍ୟନାରାୟଣ ରାଜଗୁରୁ ତାଙ୍କ ଓଡ଼ିଶା ଇତିହାସ ବହିରେ ଉଲ୍ଲେଖ କରିଛନ୍ତି । ପଣ୍ଡିତ ଗୋପବନ୍ଧୁ ବିଦ୍ୟା-ଭୂଷଣଙ୍କ ଲେଖାକୁ ଅବଲମ୍ବନ କରି ମହାକବି ଶ୍ରୀହର୍ଷ ଓଡ଼ିଶାରେ ଜନ୍ମ ଲାଭ କରି 'ନୈଷଧ ନାମକ' ଏକ ପ୍ରସିଦ୍ଧ ସଂସ୍କୃତ କାବ୍ୟ ରଚନା କରି ଧରାକୋଟର ନଳବଂଶୀୟ ମହାରାଜା ଭୀମସେନଙ୍କୁ କବି ଶ୍ରୀହର୍ଷ ଉପହାର ଦେବା ବିଷୟ ସମ୍ଭବ ବୋଲି ରାଜଗୁରୁ ମହାଶୟ ମତବ୍ୟକ୍ତ କରିଛନ୍ତି । କାରଣ ଭୀମସେନଙ୍କ ରାଜତ୍ୱକାଳ ଓ ଶ୍ରୀହର୍ଷଙ୍କ ଜୀବିତକାଳ ପ୍ରାୟ ସମାନ ଥିବା ଜଣାଯାଏ । ଏହି ବିଷୟରେ ସବିଶେଷ ଗବେଷଣା ଆବଶ୍ୟକ ।

ଦଶମ ଶତାବ୍ଦୀର ତୃତୀୟ ଦଶକରୁ ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଏହି ଖିଣ୍ଡିଗ୍ର ଶୃଙ୍ଗ-ମଣ୍ଡଳର ରାଜାମାନଙ୍କ ରାଜତ୍ୱ ସମ୍ପର୍କରେ ସବିଶେଷ ବିବରଣୀ ନ ମିଳୁଥିଲେ ମଧ୍ୟ ଦ୍ୱାଦଶ ଶତାବ୍ଦୀ ବେଳକୁ ଏହି ଖିଣ୍ଡିଗ୍ର ଶୃଙ୍ଗ-ମଣ୍ଡଳ ଅପଭ୍ରଂଶ ହୋଇ "ଖିଡସିଙ୍ଗି ବା ଗିଦ୍ରିସିଙ୍ଗ" ନାମରେ ପରିଚିତ ହୋଇଥିବା ଜଣାଯାଏ । ଟି. ଜେ. ମାଲଟୋବିଙ୍କ ଗଞ୍ଜାମ ଜିଲ୍ଲା ମେନୁ୍ୟଏଲରୁ ଜଣାଯାଏ ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ "ପାଟ ମଳିକ" ନାମକ ଏକ କନ୍ଧରାଜା ଏହି ଖିଡସିଙ୍ଗି ରାଜ୍ୟରେ ରାଜତ୍ୱ କରିଥିବା ଜଣାଯାଏ । ମୁହାଣ ଓ ଆଧୁନିକ ବଡ଼ଗଡ଼ ମଧ୍ୟରେ ଏହି ପାଟମଳିକର ରାଜଧାନୀ "ପାଟ ମାଣ୍ଡିକା" ଥିଲା, ପାଟ ମଳିକର ଚାରି ପୁତ୍ର ଥିଲେ । ଏହି ଚାରିପୁତ୍ରଙ୍କ ମଧ୍ୟରେ ସିଂହାସନ ପାଇଁ କଳହ ହେବାରୁ ପାଟ ମଳିକ ତାର ଆରାଧ୍ୟଦେବୀ ବଡ଼ଗଡ଼ ସିଦ୍ଧପୁର ନିକଟରେ ଥିବା ବାରାହୀଙ୍କ ନିକଟରେ ସମସ୍ତ ବିଷୟ ଜଣାଇ ଗୁହାରିଆ ପଡ଼ିଲା । ବାରାହୀ କନ୍ଧ ରାଜାଙ୍କୁ ସ୍ୱପ୍ନାଦେଶ ଦେଲେ ଆସନ୍ତା କାଲି ପ୍ରାତଃକାଳରେ ପଶ୍ଚିମ ଦିଗରୁ ଯେଉଁ ରାଜପୁତ୍ର

ଘୋଡ଼ା ଚଢ଼ି ଏକ ଶୁକ୍ଳ ବାରହାର ଶିକାର ଉଦ୍ଦେଶ୍ୟରେ ଅନୁଧାବନ କରି ଆସି ଏଠାରେ ପହଞ୍ଚିବ ସେ ହେବ ଏ ରାଜ୍ୟର ରାଜା—ତୁ ତାଙ୍କୁ ଏ ରାଜ୍ୟର ଭାର ଅର୍ପଣ କରିଦେବୁ । ସତକୁ ସତ ତା ପରଦିନ ପ୍ରାତଃକାଳରେ ଶୋଭାଚନ୍ଦ୍ର ସିଂହ ନାମକ ଜଣେ ରାଜପୁତ ଅଶ୍ୱପୃଷ୍ଠରେ ଆରୋହଣ କରି ଧନୁଶର ଧରି ଏକ ଶୁକ୍ଳ ବାରହାର ଅନୁଧାବନ କରି ଆସୁଥିବାର ଦେଖାଗଲା । ଶୁକ୍ଳ ବାରହା ପାଟମାଣ୍ଡିକାରେ ପହଞ୍ଚିବା ପରେ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲା । ଶୋଭାଚନ୍ଦ୍ର ସିଂହ ସେଠାରେ ଅଟକି ରହିଲେ । ଏହା ଦେଖି ପାଟମଲ୍ଲିକ ଭାବିଲା—ତାର ସ୍ୱପ୍ନ ସାର୍ଥକ ହୋଇଛି । ଏହା ଦେବୀଙ୍କ ନିର୍ଦ୍ଦେଶ ଭଳି ସେ ତାର ପୁତ୍ରମାନଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇଲା । ସେ ଓ ତାର ପୁଅମାନେ ଶୋଭାଚନ୍ଦ୍ର ସିଂହଙ୍କୁ ରାଜା ରୂପେ ଅଭିଷେକ କରାଇଲେ । ରାଜ୍ୟଭାର ଶୋଭାଚନ୍ଦ୍ର ସିଂହଙ୍କୁ ଅର୍ପଣ କରି ପାଟ ମଲ୍ଲିକ ରାଜାଙ୍କୁ ଅନୁରୋଧ କରିଥିଲା ଯେ—ତାଙ୍କର ଉତ୍ତରାଧିକାରୀମାନେ ଯେତେବେଳେ ନୂତନରେ ରାଜପଦରେ ଅଭିଷିକ୍ତ ହେଉଥିବେ ସେତେବେଳେ ପାଟ ମଲ୍ଲିକର ବଂଶଧରମାନେ ରାଜ ମସ୍ତକରେ ରାଜମୁକୁଟ ବାନ୍ଧି ତିଳକ ଲଗାଇ ଦେଉଥିବେ । ରାଜା ଏଥିରେ ସ୍ୱୀକୃତି ପ୍ରଦାନ କରିଥିଲେ । ଏଣୁ ଏ ପର୍ଯ୍ୟନ୍ତ ଖିଡ଼ସିଙ୍ଗ ରାଜ୍ୟର ମୂଳପୀଠ ବଡ଼ଗଡ଼ରେ ବିଧାନ ଅଛି—ରାଜା ନୂତନରେ ଗାଦି ଆରୋହଣ କଲାବେଳେ ପାଟମାଣ୍ଡିକାର ପାଟ ମଲ୍ଲିକର ଉତ୍ତରାଧିକାରୀ ଶାଢ଼ି ପାଏ ଓ ରାଜାଙ୍କ ମସ୍ତକରେ ପଗଡ଼ି ବାନ୍ଧେ ।

କେତେ ଐତିହାସିକ ଉକ୍ତ କିମ୍ବଦନ୍ତୀ ପ୍ରତି ଉପହାସ ପ୍ରକାଶ କରି ମତବ୍ୟକ୍ତ କରନ୍ତି ଯେ, ଏତେ ବଡ଼ ବିଶାଳ ରାଜ୍ୟର ଭାର ପାଟ ମଲ୍ଲିକ ଶୋଭାଚନ୍ଦ୍ର ସିଂହଙ୍କୁ କ୍ଷମତା ଓ ଅର୍ଥର ମମତା ତୁଟାଇ ନିଃସ୍ୱାର୍ଥପର ଭାବରେ ଅର୍ପଣ କରିଥିବା ବିଷୟ ବିଶ୍ୱାସ ଯୋଗ୍ୟ ନୁହେଁ । ଶୋଭାଚନ୍ଦ୍ରସିଂହ ପାଟ ମଲ୍ଲିକର ରାଜ୍ୟ ଆକ୍ରମଣ କରି ଓ ପାଟ ମଲ୍ଲିକକୁ ଯୁଦ୍ଧରେ ପରାସ୍ତ କରି ଖିଡ଼ସିଙ୍ଗ ରାଜ୍ୟର ରାଜା ହୋଇଥିବା ଯୁକ୍ତିଯୁକ୍ତ ମନେ ହୁଏ ।

କିନ୍ତୁ ଅଦ୍ୟାପି ଧ୍ୱଜମସ୍ତକରେ ଶାଢ଼ୀ ବନ୍ଧା ପରମ୍ପରାରୁ ସ୍ପଷ୍ଟ ଅନୁମିତ ହୁଏ ପାଟମଳକ ନିଃସ୍ୱାର୍ଥପର ଭାବେ ବନା ଯୁଦ୍ଧରେ ଶୋଭାଚନ୍ଦ୍ର ସିଂହଙ୍କୁ ଦେବୀଙ୍କ ସ୍ୱପ୍ନାଦେଶ ପ୍ରକାରେ ନିଜ ରାଜ୍ୟଭାର ଅର୍ପଣ କରିଥିବା ହେତୁ ସେ କୃତଜ୍ଞତାର ନିଦର୍ଶନ ସ୍ୱରୂପ ପାଟ ମଳକର ଉତ୍ତରାଧିକାରୀମାନେ ରାଜ-ଅଭିଷେକ ଉତ୍ସବ ବେଳେ ଶାଢ଼ୀ ବାନ୍ଧିବା ପ୍ରସ୍ତାବକୁ ବିନାଦ୍ୱିଧାରେ ଗ୍ରହଣ କରିଥିବା ଯୁକ୍ତି ସଙ୍ଗତ ମନେହୁଏ ।

ଏପରି ଏକ ଆଖ୍ୟାନ ବା ତତ୍କାଳୀନ କିମ୍ବଦନ୍ତୀର ଅବତାରଣା କରାଯାଇ ପଞ୍ଚମ ଶତାବ୍ଦୀରେ କଳିଙ୍ଗରେ ଶୈଳୋଦ୍ଭବ ବଂଶର ଉତ୍ପତ୍ତି ବିଷୟରେ କଳିଙ୍ଗ ତଥା ଓଡ଼ିଶା ଇତିହାସରେ ଉଲ୍ଲେଖ କରାଯାଇଛି । ପୂର୍ବେ କଳିଙ୍ଗ ରାଜ୍ୟରେ ପୁଳିନ୍ଦସେନ ନାମକ ଜଣେ ବୀର ପୁରୁଷ ପ୍ରଜାଙ୍କୁ ପାଳନ କରୁଥିଲେ । ଏକଦା ସେ ତାଙ୍କର ଇଷ୍ଟଦେବ ସ୍ୱୟଂଭୂଙ୍କଠାରେ ପ୍ରାର୍ଥନା କରି ଜଣାଇଲେ – "ହେ ପ୍ରଭୁ ! ମୋ ଅନ୍ତେ ଏ ରାଜ୍ୟ ସୁଚାରୁରୂପେ ପାଳନ କରିବାକୁ କିଏ ସମର୍ଥ ହେବ ?" ସ୍ୱୟଂଭୂ ତାଙ୍କୁ ସ୍ୱପ୍ନରେ ଆଦେଶ ଦେଲେ "କାଲି ପ୍ରଭାତରୁ ମହେନ୍ଦ୍ରାଚଳରେ ଶିଖର ଦେଶରେ ଗୋଟିଏ ଶିଳାଖଣ୍ଡ ଭେଦକରି ଜଣେ ବୀର ଯୁବକ ଦେଖାଦେବେ – ସେ ଏ ରାଜ୍ୟ ପରିପାଳନ କରିବେ" । ପ୍ରଭୁଙ୍କ ଆଦେଶ ଅନୁସାରେ ଗୋଟିଏ ଶିଳାଖଣ୍ଡରୁ ଜଣେ ସୁନ୍ଦର ଯୁବକ ଅବତରଣ କଲେ ତାଙ୍କ ନାମ ହେଲା ଶୈଳୋଦ୍ଭବ, ତାଙ୍କଠାରୁ ସେ ବଂଶ 'ଶୈଳୋଦ୍ଭବ' ନାମ ଧାରଣ କଲା । ଏହି ବଂଶରେ 'ଅରଣଭୀତ' ଶ୍ରୀ ମାଧବ ବର୍ମା ପ୍ରଭୃତି ଜାତ ହୋଇ କଙ୍ଗୋଦରେ ନିଜ ବାସ ସ୍ଥାନ ନିର୍ମାଣ କରି ରାଜକାର୍ଯ୍ୟ ପରିଚାଳନା କରିଥିଲେ । ଏହି ବିଷୟ 'ବୁଗୁଡ଼ା' ତାମ୍ରଶାସନରେ ଉଲ୍ଲେଖ ଥିବା ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଓଡ଼ିଶା ଇତିହାସରୁ ଜଣାଯାଏ ।

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ପ୍ରାଚୀନ ଯୁଗରେ ରାଜ୍ୟ ସୁଶାସନରେ କିଛି ବିଶୃଙ୍ଖଳା ଦେଖାଦେଲେ କିମ୍ବା ରାଜାମାନେ ଅପୁତ୍ରିକ ହେଲେ ତନ୍ତ୍ର-

କାଳୀନ ରାଜାମାନେ ସେମାନଙ୍କର ଉତ୍ତରାଧିକାରୀ ବାଛିବା ପାଇଁ ସ୍ୱସ୍ୱ ଇଷ୍ଟଦେବ ଓ ଦେବୀଙ୍କ ନିର୍ଦ୍ଦେଶାନୁସାରେ ଯୋଗ୍ୟ ବ୍ୟକ୍ତିଙ୍କ ହସ୍ତରେ ରାଜ୍ୟ-ଭାର ଅର୍ପଣ କରୁଥିଲେ । ଏଣୁ ଶାସକ ପାଟମଲିକ ଶୋଭାଚନ୍ଦ୍ର ସିଂହଙ୍କ ହସ୍ତରେ ଅକୁଣ୍ଠିତ ଭାବରେ ନିଜ ରାଜ୍ୟ ଭାର ଅର୍ପଣ କରିଥିବା ବିଷୟରେ ସନ୍ଦେହ ପ୍ରକାଶ କରିଯିବା ଉଚିତ ମନେ ହୁଏନାହିଁ ।

ଟି. ଜେ. ମାଲଟୋବିଙ୍କ ଗଞ୍ଜାମ ମେନୁ୍ୟଏଲରୁ ଜଣାଯାଏ ଶୋଭାଚନ୍ଦ୍ର-୧୧୭୮ ଖ୍ରୀଷ୍ଟାବ୍ଦରୁ ୧୨୦୭ ଖ୍ରୀ: ଯାଏ ଖିଡ଼ିସିଙ୍ଗି ରାଜ୍ୟର ପ୍ରଥମ ରାଜା ରୂପେ ଓଡିଶା ରାଜାଙ୍କ ଅନୁଗ୍ରହରୁ ଶାସନ କାର୍ଯ୍ୟ ପରିଚାଳନା କରିଥିଲେ । ସେ ଲେଖିଛନ୍ତି—"The neme of the first Raja of khidisingi was Sobhachandra Sing who is said to have received the Countenance of the king of orissa and ruled over the Country for 39 years"

"A Vadivelu" ଙ୍କ ଲେଖା ଅନୁସାରେ ଶୋଭାଚନ୍ଦ୍ର ସିଂହ ନଳବଂଶରେ ଜନ୍ମ ଗ୍ରହଣ କରିଥିଲେ ହେଁ ନିଜକୁ ସିଂହ ବଂଶ ସମ୍ଭୁତ ବୋଲି ପରିଚୟ ଦେଲେ ଓ ଗଞ୍ଜାମ ଜିଲ୍ଲାରେ ଅବସ୍ଥିତ ଖିଡ଼ିସିଙ୍ଗି ରାଜ୍ୟର ପ୍ରଥମ ଶାସକ ହେଲେ । ଏହି ନଳବଂଶର ରାଜାମାନେ ଅତୀତରେ ଆଧୁନିକ ଫୁଲବାଣୀ ଓ କଳାହାଣ୍ଡି ଜିଲ୍ଲାର ସୀମାନ୍ତ ଅଞ୍ଚଳରେ ବାସକରୁଥିଲେ । କେତେକ ଐତିହାସିକଙ୍କ ମତରେ ଶୋଭାଚନ୍ଦ୍ର ସିଂହ ରାଜପୁତନାର ସବ୍-ଦସ୍ପୀପୁରରୁ କୌଣସି ଯୁଦ୍ଧରେ ସେନାପତି ରୂପେ ଓଡିଶାର ପଶ୍ଚିମାଞ୍ଚଳକୁ ଆସି ଆଉ ନିଜ ରାଜ୍ୟକୁ ଫେରିନଥିଲେ, କିମ୍ବା କୌଣସି ଯୁଦ୍ଧରେ ପରାସ୍ତ ଓ ମର୍ମାହତ ହୋଇ ନିଜ ରାଜ୍ୟକୁ ନଫେରି ଫୁଲବାଣୀ ଜିଲ୍ଲାର ଉତ୍ତର ପଶ୍ଚିମାଞ୍ଚଳରେ ବାସ କରୁଥିଲେ । କାଳକ୍ରମେ ଓଡିଶା ରାଜାଙ୍କ ସାହାଯ୍ୟରେ ନିଜ ବାହୁବଳରେ ପାଟମାଣ୍ଡିକାର ପାଟ ମଲିକକୁ ଯୁଦ୍ଧରେ ପରାସ୍ତ କରି ତାଙ୍କ ରାଜ୍ୟ ଦଖଲ କଲେ । କାଳକ୍ରମେ ଏହି ପାଟମାଣ୍ଡିକା ଖିଡ଼ିସିଙ୍ଗି

ରାଜ୍ୟରେ ପରିଣତ ହେଲା । ପୂର୍ବରେ ହିଞ୍ଜିଳିକା (ହିଞ୍ଜିଳି) ପଶ୍ଚିମରେ କଳାହାଣ୍ଡି, ଜୟପୁର, ଗଡ଼ାପୁର ଦକ୍ଷିଣରେ ଖେମଣ୍ଡୀ ଓ ଉତ୍ତରରେ ଘୁମୁସର ଏହି ଚତୁଃସୀମା ମଧ୍ୟରେ ଥିବା ଭୂଖଣ୍ଡକୁ କୁହାଯାଉଥିଲା ଖିଡିସିଙ୍ଗି ।

ଏହି ନଳବଂଶର ରାଜାମାନେ ପରବର୍ତ୍ତୀ କାଳରେ ନିଜକୁ ସିଂହ-ବଂଶରେ ପରିଚିତ କଲେ ମଧ୍ୟ ପାଟମଲ୍ଲିକ ଦ୍ୱାରା ଆରାଧିତ ହେଉଥିବା ବାଘମ୍ବା ଠାକୁରାଣୀଙ୍କୁ ନିଜର ଇଷ୍ଟଦେବୀ ରୂପେ ଗ୍ରହଣ କରି ପୂଜା ଆରାଧନା କରୁଥିଲେ । ଏହି ବାଘମ୍ବା ଠାକୁରାଣୀଙ୍କ ମୂଳପୀଠ ହେଉଛି ଜରଉ ନଦୀ କୂଳବର୍ତ୍ତୀ ସିଦ୍ଧିପୁର ଗ୍ରାମ । ପୂର୍ବେ ଏହି ବିଶାଳ ଭୂଖଣ୍ଡରେ ଅନ୍ୟାନ୍ୟ କିଛି ପ୍ରସିଦ୍ଧ ଦେବପୀଠ ମଧ୍ୟ ଥିଲା । ଏହି ଦେବୀଙ୍କ ଆକାର ସ୍ତମ୍ଭ ଆକୃତି ଥିଲା । ଏହି ସ୍ତମ୍ଭାକୃତି ଦେବୀଙ୍କ ମୂର୍ତ୍ତି କାଠ ଓ ପାଷାଣରେ ନିର୍ମିତ ହୋଇ-ଥିଲା । ଆସିକାର ଖମ୍ବେଶ୍ୱରୀ ପାଟଣାରେ ଯେପରି ସ୍ତମ୍ଭେଶ୍ୱରୀ ବା ଖମ୍ବେଶ୍ୱରୀ ପୂଜା ପାଉଛନ୍ତି ସେପରି ବଡ଼ଗଡ଼, ସୋରଡ଼ା ଓ ଧରାକୋଟ ଅଞ୍ଚଳରେ କାଠ ଖମ୍ବମାନ ପୂଜା ପାଉଛନ୍ତି । ଅତଏବ ସ୍ତମ୍ଭେଶ୍ୱରୀ ଉପାସକ ନଳବଂଶ ଅବତଂସ ହେଉଛନ୍ତି ଖିଡିସିଙ୍ଗି ରାଜବଂଶ । କିଛି ଦେବତାଙ୍କ ନାମ 'ଖିଡିସିଙ୍ଗି' ବୋଲି କେହି କେହି ମଧ୍ୟ ମତବ୍ୟକ୍ତ କରିଛନ୍ତି ।

ଏହି ରାଜାମାନେ ପ୍ରଥମେ ଆଧୁନିକ ବଡ଼ଗଡ଼ର ବଜ୍ରକୋଟ ଗଡ଼ରେ ରହି ଖିଡିସିଙ୍ଗି ରାଜ୍ୟରେ ରାଜପଣ କରୁଥିଲେ । ପାଟମଲ୍ଲିକ ପରେ ଶୋଭଚନ୍ଦ୍ର ସିଂହ ଏହି ଖିଡିସିଙ୍ଗି ରାଜ୍ୟରେ ରାଜତ୍ୱ କରିଥିବା ବିଷୟ ଆଗରୁ କୁହାଯାଇଛି । ଉକ୍ତ ରାଜବଂଶାବଳୀରୁ ଜଣାଯାଏ ଶୋଭଚନ୍ଦ୍ର ସିଂହଙ୍କ ପରେ ନିମ୍ନରେ ପ୍ରଦତ୍ତ ଅନ୍ୟ 'ଛ'ଜଣ ରାଜା ଏହି ରାଜ୍ୟରେ ରାଜତ୍ୱ କରିଥିଲେ । ଯଥା:—(୧) କୃଷ୍ଣଚନ୍ଦ୍ର ସିଂହ (୨) ରାଘୁସିଂହ (୩) ପ୍ରୀତିସିଂହ (୪) ପଦ୍ମନାଭ ସିଂହ (୫) ବିକ୍ରମସିଂହ (୬) ବଳୀୟାର ସିଂହ । ରାଜା ବଳୀୟାର ସିଂହ ଏହି ବିଶାଳ ରାଜ୍ୟକୁ ଶାସନ କରିବାର ବହୁ ଅସୁବିଧା ଅନୁଭବ କଲେ ତାଙ୍କ ରାଜ୍ୟକୁ ଚାରି ଭାଗରେ ବିଭକ୍ତ କରିଦେଲେ ।

ସେହି ଦିନଠାରୁ ଚାରି ଖିଡ଼ିସିଙ୍ଗି ମଧ୍ୟରୁ ତାଙ୍କର ଜ୍ୟେଷ୍ଠକୁମାର "ଗଙ୍ଗାଧର" **ଯୁବରାଜ ଅବସ୍ଥାରେ ମୃତ୍ୟୁବରଣ କରିଥିବା ହେତୁ ତାଙ୍କ ପୁତ୍ର ଉମଣସିଂହଙ୍କୁ ବଡ଼ଗଡ଼ରେ, ଦ୍ୱିତୀୟ ପୁତ୍ର ହାଡ଼ୁସିଂହଙ୍କୁ** ଧରାକୋଟରେ, **ଦ୍ୱିତୀୟ ପୁତ୍ର** ଷଣ୍ଢ ଧନୁସିଂହଙ୍କୁ ସୋରଡ଼ାରେ ରାଜା କରାଇଲେ ଓ ନିଜେ ସେରଗଡ଼ରେ ନିଜର ଅନ୍ୟ ଏକ ନାବାଳକ ପୁତ୍ର 'ପରଶୁରାମ'ଙ୍କୁ ନେଇ ହୋଇ ରହିଲେ । ଏହି ଖିଡ଼ିସିଙ୍ଗି ରାଜ୍ୟ ବିଭାଗ ବଣ୍ଟନ ହେଲା **୧୪୭୪** ଖ୍ରୀଷ୍ଟାବ୍ଦରେ । ଏହି ବଂଶର ଗୋତ୍ର ହେଉଛି ପାରାଶର । ଏଣୁ ପାରା ମାରିବା ଏହି ବଂଶରେ ନିଷେଧ ।

## ଧରାକୋଟ ରାଜ୍ୟର ଅବସ୍ଥିତି ଓ ନାମକରଣ :—

ହାଡ଼ୁସିଂହ - ରାଜତ୍ୱ (୧୪୭୭ ଖ୍ରୀ ୧୫୪୦) ବଳୀୟାର ସିଂହଙ୍କ ଦ୍ୱାରା ରାଜ୍ୟ ଚାରି ଭାଗରେ ବିଭକ୍ତ ହେବା ପରେ ଦ୍ୱିତୀୟ ପୁତ୍ର ହାଡ଼ୁସିଂହ ଧରାକୋଟ ରାଜ୍ୟରେ ରାଜତ୍ୱ କରିବା ପାଇଁ ପିତାଙ୍କ ଦ୍ୱାରା ଆଦିଷ୍ଟ ହୋଇ ବଡଗଡ଼ରୁ ପ୍ରତ୍ୟେକ ଜାତିରୁ ଗୋଟିଏ ଗୋଟିଏ ପରିବାର ଏପରି ସର୍ବମୋଟ ୧୩ ଗୋଟି ପରିବାର ସହ ଆସି ଋଷିକୁଲ୍ୟାନଦୀର ଉତ୍ତର ଦିଗରେ ଓ ବର୍ତ୍ତମାନ ରାଜବାଟୀରୁ ପ୍ରାୟ ଚାରି କିଲୋମିଟର ଦୂରରେ ଅବସ୍ଥିତ ତାଳପୁଟ ଗ୍ରାମରେ ପ୍ରଥମେ ଦୁର୍ଗ ନିର୍ମାଣ କରି ବସତି ସ୍ଥାପନ କଲେ । ଆଜି ଏହି ସ୍ଥାନରୁ ଗଡ଼ର ଅସ୍ତିତ୍ୱ ଲୋପ ପାଇଛି କିନ୍ତୁ ଗଡ଼ର ଧ୍ୱଂସାବଶେଷ ଅଦ୍ୟାପି ସେଠାରୁ ମିଳୁଛି । ଏହି ଗଡ଼ ନିକଟରେ କିରାଖାଇ ପର୍ବତ ଗୁମ୍ଫାରେ ଏକ ମଠ ବହୁ ପ୍ରାଚୀନ କାଳରୁ ଥିଲା । ଅଦ୍ୟାପି ଏହି ମଠ ଜଣେ ଅବଧୂତ ଜାତୀୟ ବାବାଜୀଙ୍କ ତତ୍ତ୍ୱାବଧାନରେ ଅଛି । ପୂର୍ବେ ଏଠା ବାବାଜୀ ତାଳପଟରେ ପ୍ରସ୍ତୁତ କୌପୀନକୁ ନିଜର ଅଙ୍ଗବାସ କରିଥାନ୍ତି । ଏଣୁ ବାବାଜୀ ନିଜ ଅଧୀନରେ ରଖିଥିବା ଅଞ୍ଚଳକୁ ତାଳପୁଟ କୁହାଯାଉଥିଲା । ଏହି 'ତାଳପଟ' ଶବ୍ଦରୁ ଅପଭ୍ରଂଶ ହୋଇ ଆଜି ଏହି ଅଞ୍ଚଳ 'ତାଳପୁଟ' ନାମରେ ସରକାରୀ ବନ୍ଦୋବସ୍ତ କାଗଜରେ ଲିପିବଦ୍ଧ ହୋଇ ରହିଛି । ଅତୀତରେ ସୁନ୍ଦର ଦାସ ନାମକ ଏକ ବାବାଜୀ ବହୁ ଅଲୌକିକ କାର୍ଯ୍ୟ ସମ୍ପାଦନ କରି-

ଥିବା ଜଣାଯାଏ । ଏହି ମଠ ନିକଟରେ ବଜେ ହୋଇଥିବା ପାଶ୍ଚ ପାଷାଣୀ ଠାକୁରାଣୀ ରାଜାଙ୍କର ପ୍ରଧାନ ଆରାଧ୍ୟାଦେବୀ ଥିଲେ । ଏହାର ଅନତି ଦୂରରେ ସାହସପୁର ଚକବନ୍ଦୀ ଭିତରେ ବଜେ ହୋଇଥିବା ସ୍ୱୟଂଭୂ ଲୋକନାଥ-ମହାପ୍ରଭୁ ରାଜାଙ୍କ ଦ୍ୱାରା ଆରାଧିତ ହେଉଥିଲେ ।

ପଞ୍ଚଦଶ ଶତାବ୍ଦୀରେ ଏହି ଅଞ୍ଚଳ ଘନଜଙ୍ଗଲ ଦ୍ୱାରା ଆବୃତ୍ତ ଥିଲା । ଥରେ ରାଜା ହାଡ଼ୁସିଂହ ମୃଗୟା କରିବା ନିମନ୍ତେ ନିଜର ବେଣ୍ଟ କୁକୁରକୁ ଅନ୍ୟ ଶିକାରୀଙ୍କ ଆଗରେ ମୃଗର ଅନୁସନ୍ଧାନରେ ଛାଡ଼ି ନିଜେ ସେମାନଙ୍କ ପଥ ଅନୁସରଣ କରି ଯାଉଥିଲେ । ରାଜା ହଠାତ୍ ଦେଖିଲେ ତାଙ୍କର ସାହସୀ କୁକୁରକୁ ବଣରେ ଏକ ଶଶକ ମାଡ଼ି ବସିଛି । ରାଜା ଏହା ଦେଖି ଆଶ୍ଚର୍ଯ୍ୟ ହୋଇ ମନେ ମନେ ଭାବିଲେ ଏହି ସ୍ଥାନ ନିଶ୍ଚୟ ବୀର ଭୂମି ହୋଇଥିବ । ଏହା ଭାବି ସେ କିଛି ଦୂର ଅଗ୍ରସର ହେବା ପରେ 'ଧବ୍ରା' ଓ 'ମାଳା' ନାମକ ଦୁଇଜଣ ଦୁର୍ଦ୍ଧର୍ଷ ଶବର ସର୍ଦ୍ଦାରଙ୍କୁ ସେଠାରେ ଦେଖି କରାଖାଇଠାରୁ ନିଜର ଦୁର୍ଗ ଉଠାଇ ଆଣି ଶବର ଦସ୍ୟୁଙ୍କ ବାସସ୍ଥାନ ଶୁକଆ ପର୍ବତ ପାଦଦେଶରେ ତାଙ୍କର ଗଡ଼ ନିର୍ମାଣ କରି ରହିବା ପାଇଁ ନିଜର ମନୋଭାବ ପ୍ରକାଶ କଲେ । କିନ୍ତୁ ଶବର ଭ୍ରାତା ଦସ୍ୟୁ ରାଜାଙ୍କ ପ୍ରସ୍ତାବରେ ଅମଙ୍ଗ ହେବା ହେତୁ ପ୍ରବଳ ପ୍ରତାପୀ ହାଡ଼ୁସିଂହ ଏହି ଦୁଇଭାଇଙ୍କ ସହ ଯୁଦ୍ଧ କରି ଯୁଦ୍ଧରେ ପରାସ୍ତ ଓ ନିହତ କରି ନିଜର ଗଡ଼ ଏ ଅଞ୍ଚଳରେ ସ୍ଥାପନ କଲେ । କଥିତ ଅଛି ଯେ, ମୁମୂର୍ଷୁ ଅବସ୍ଥାରେ 'ଧବ୍ରା' ଶବରର ଅନ୍ତିମ ଅନୁରୋଧ କ୍ରମେ ରାଜା ନିଜ ରାଜ୍ୟର ନାମ ଧବ୍ରା ନାମରେ ନାମିତ କରି 'ଧବ୍ରାକୋଠ' ରଖିଲେ । ଧବ୍ରାର ଅନ୍ୟ ଏକ ଅନୁରୋଧ ଥିଲା — ଏହି ବଂଶର ରାଜାମାନେ ରାଜଗାଦି ଆରୋହଣ କଲାବେଳେ ତାଙ୍କ ବଂଶର (ଧବ୍ରା ବଂଶର) କୌଣସି ବ୍ୟକ୍ତି ରାଜାଙ୍କ ମୁଣ୍ଡରେ ଶିରୋପା ବାନ୍ଧିବେ ପୁଣି ନିଜ ଭାଇ 'ମାଳା'ର ସ୍ମୃତି ରକ୍ଷା କରିବେ । ରାଜା ଧବ୍ରା ଶବରର ଅନୁରୋଧକୁ ରକ୍ଷା କରିଥିଲେ । ତେଣୁ ସେହି ଦିନଠାରୁ ଆଜଯାଏ ଧବ୍ରାକୋଠରେ ବିଧାନ ଅଛି—କୌଣସି ରାଜା ଧବ୍ରାକୋଠ ସିଂହାସନରେ ନୂତନରେ ଅଭିଷିକ୍ତ ହେଲେ ଧବ୍ରାବଂଶରେ

କୌଣସି ବ୍ୟକ୍ତି ରାଜାଙ୍କ ମଥାରେ ଶାଢ଼ୀ ବାନ୍ଧିଦିଏ, 'ମାଳାର' ସ୍ମୃତି ରକ୍ଷା କରିବା ପାଇଁ ଧରାକୋଟଗଡ଼ ନିକଟରେ ଏକ 'ବିରାଟ ପୁଷ୍କରିଣୀ ଖନନ କରି "ନେଳିଆ ବନ୍ଧ" ନାମରେ ନାମିତ କଲେ । ଏହି ଶବରର ଭ୍ରାତା ଦିପୁ ବାସକରୁଥିବା ସ୍ଥାନଟି ଶୃଙ୍ଖଳିଆ ପର୍ବତ ମଧ୍ୟସ୍ଥଳରେ ଅଦ୍ୟାପି ଶୌରାପଲ୍ଲୀ ନାମରେ ଆଖ୍ୟାତ ରହିଛି । କୃତଜ୍ଞତାର ନିଦର୍ଶନ ସ୍ୱରୂପ ପ୍ରତିବର୍ଷ କାର୍ତ୍ତିକ ଦୀପାବଳୀ ଅମାବାସ୍ୟା ଦିନ ଧରା ଶବରର ଶ୍ରାଦ୍ଧ ଉଦ୍ଦେଶ୍ୟରେ ରାଜବଂଶ ପକ୍ଷରୁ ଏଠାରେ ସନ୍ଧ୍ୟାରେ ଦୀପଦାନ କରାଯାଉଛି ।

ଆସିକାଠାରୁ ୧୩ କିଲୋମିଟର ପଶ୍ଚିମରେ ଧରାକୋଟଗଡ଼ ଘନ ଜଙ୍ଗଲ ଆବୃତ ୨୦୦୦ ଫୁଟ ଉଚ୍ଚତା ବିଶିଷ୍ଟ ଶୃଙ୍ଖଳିଆ ପର୍ବତ ପାଦ-ଦେଶରେ ଅବସ୍ଥିତ । ଗଡ଼ର ତିନି ଦିଗରେ ପର୍ବତ ଅବସ୍ଥିତ ଓ ଗୋଟିଏ ଦିଗ ପରିଖା ଦ୍ୱାରା ଆବୃତ ଥିଲା । ବର୍ତ୍ତମାନ ସୁଦ୍ଧା ପରିଖାର କେତେକ ଅଂଶ ଦୁର୍ଗକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବା ପାଇଁ ମୂକ ସାକ୍ଷୀ ରୂପେ ରହିଛି । ଧରାକୋଟ ରାଜ୍ୟଗଠନ ସମୟରେ ଏହାର ସଠିକ୍ କ୍ଷେତ୍ରଫଳ, ଗ୍ରାମ ସଂଖ୍ୟା ଓ ଚତୁଃସୀମା ପ୍ରଭୃତି ଜଣାନଥିଲେ ସୁଦ୍ଧା ଟି. ଜେ. ମାଲଟୋବିଙ୍କ ଲେଖାରୁ ଜଣାଯାଏ । ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଏହାର ଆୟତନ ୧୪କୋଶ ବା ୧୨୫ ବର୍ଗମାଇଲ ଥିଲା । ଏହାର ମୋଟ ଗ୍ରାମ ସଂଖ୍ୟା ୧୮୮ ଓ ଏହାର ମୋଟ ଜନସଂଖ୍ୟା ୩୧୬୯୧ ଥିଲା । ସମଗ୍ର ରାଜ୍ୟ ୩ ଗୋଟି ମୁଠା ବା ସବ୍-ଡିଭିଜନରେ ବିଭକ୍ତ ହୋଇ ରହିଥିଲା । ଜାହାଡ଼ା ମୁଠାରେ ୮୫ ଗୋଟି ଗ୍ରାମ, କମାଗଡ଼ ମୁଠାରେ ୩୭ଟି ଗ୍ରାମ ଓ ସହସ୍ରାଙ୍ଗ ମୁଠାରେ ୬୬ ଗୋଟି ଗ୍ରାମ ଥିଲା । ଏହି ରାଜ୍ୟର ପୂର୍ବରେ ପିତଳର ପୂର୍ବଖଣ୍ଡ, ରାମଚନ୍ଦ୍ରପୁର, ପଶ୍ଚିମରେ ନରଣପୁର, କଲିଚିଗିରି ଓ ସିଂଘିପୁର, ଦକ୍ଷିଣରେ କୁଲାଗଡ଼ ଓ ଉତ୍ତରରେ ଝାଡ଼ବନ୍ଧ, ଦିଗୀ କମାଗଡ଼ ପ୍ରଭୃତି ଅବସ୍ଥିତ । ଏହି ରାଜ୍ୟର ମଧ୍ୟ ଭାଗରେ ପବିତ୍ର ଋଷିକୁଲ୍ୟା ନଦୀ ପ୍ରବାହିତ ହୋଇ ରାଜ୍ୟକୁ ସୁଜଳା, ସୁଫଳା ଓ ଶସ୍ୟ ଶ୍ୟାମଳା କରିଅଛି । ସେ ସମୟରେ ରାଜ୍ୟର ସରକାରଙ୍କୁ ପେସ୍‌କସ ଦେଉଥିଲା ୪ ୨୯୯୬୫.୫.୭ ପାହୁଲା ।

ଏହି ଦୁର୍ଗର ଦୁଇକିଲୋମିଟର ଦୂରରେ ଏ ଅଞ୍ଚଳର ପ୍ରସିଦ୍ଧ ଗ୍ରାମ ଓ ବାଣିଜ୍ୟର କେନ୍ଦ୍ରସ୍ଥଳ ମୁଣ୍ଡମରାଇ ଗ୍ରାମ ଧରାକୋଟର ପ୍ରାଚୀନ ଐତିହ୍ୟକୁ ସୂଚାଇ ଦିଏ । ଖିଡିସିଙ୍ଗି ରାଜ୍ୟ ବିଭାଗ ବଣ୍ଟନ ବେଳେ ଘୁମୁସରର ରାଜା ପୀତାମ୍ବର ଭଞ୍ଜ ଦେଓ ଖିଡିସିଙ୍ଗି ଅନ୍ତର୍ଗତ ଧରାକୋଟର କେତେକ ଅଞ୍ଚଳ ଉପରେ ନିଜର ଦାବୀ ସାବ୍ୟସ୍ତ କରିଥିବାରୁ ଧରାକୋଟ ଓ ଘୁମୁସର ମଧ୍ୟରେ ପ୍ରବଳ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧର ନିହତ ସୈନ୍ୟମାନଙ୍କ ଶିର ମୁଣ୍ଡର ସମାବେଶ ମୁଣ୍ଡମରାଇ ଗ୍ରାମର ନାମକରଣକୁ ସୂଚାଇ ଦେଉଛି । ଏହି ଯୁଦ୍ଧରେ ହାଡ଼ୁସିଂହଙ୍କୁ ତାଙ୍କର ପ୍ରବଳ ପ୍ରତାପୀ କନିଷ୍ଠ ଭ୍ରାତା ଧନୁସିଂହ ( ସୋରଡ଼ାର ରାଜା ) ସାହାଯ୍ୟ କରି ବହୁ ଭଞ୍ଜସେନାଙ୍କୁ ପ୍ରତିହତ କରି ଯୁଦ୍ଧରେ ଜୟ ଲାଭ କରିଥିବା ହେତୁ ମୁଣ୍ଡମରାଇ ନିକଟସ୍ଥ ଧନୁସିଂହ ଡ଼ମିରି ତାଙ୍କର ସ୍ମୃତି ବହନ କରି ଯୁଦ୍ଧର ମୂକସାକ୍ଷୀ ହୋଇ ରହିଛି ।

ହାଡ଼ୁସିଂହ ଯେପରି ବୀର ସେପରି ଧର୍ମ ପ୍ରାଣ ମଧ୍ୟ ଥିଲେ । ଦେବତା ଓ ବ୍ରାହ୍ମଣ ମାନଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତିଥିଲା । ସେ ରାଜ୍ୟର ବହୁ ଅନାବାଦୀ ଜମିକୁ ଆବାଦ ଯୋଗ୍ୟ କରି ଓ ଜମିରୁ ଜଙ୍ଗଲ ସଫାକରି ବହୁ ଗ୍ରାମ ବସାଇଥିଲେ । ରାଜ୍ୟ ବାହାରୁ ବହୁ ବୈଦିକ ବ୍ରାହ୍ମଣମାନଙ୍କୁ ଆଣାଇ ସେମାନଙ୍କ ପ୍ରତିପୋଷଣ ନିମନ୍ତେ ବହୁ ନିଷ୍କର ଜମି ଦାନ କରିଥିଲେ ଓ କେତେକ ସ୍ଥାନରେ ମନ୍ଦିର ନିର୍ମାଣ କରି ଦେବାଦେବୀଙ୍କୁ ବିଜେ କରାଇ-ଥିଲେ । ଜଗନ୍ନାଥଙ୍କ ପ୍ରତି ତାଙ୍କର ଅଟଳ ଭକ୍ତିଥିଲା । ଏଣୁ ୧୪୮୦ ଖ୍ରୀଷ୍ଟାବ୍ଦରେ ବ୍ରାହ୍ମଣ ପଣ୍ଡିତ ମାନଙ୍କୁ ଧରି ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ପୁରୀଯାତ୍ରା କରିଥିଲେ । ସେ ପ୍ରତି ନିତ୍ୟ ପ୍ରାତଃ ଓ ସନ୍ଧ୍ୟା ସମୟରେ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ମନ୍ଦିରକୁ ଯାଉଥିଲେ । ସେ ସମୟରେ ଓଡ଼ିଶାର ଗଜପତି ରାଜା ପୁରୁଷୋତ୍ତମ ଦେବଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ଗଜପତି ରାଜା ହାଡ଼ୁସିଂହଙ୍କ ସାଧୁତା, ନମ୍ରତା, ଧର୍ମାନୁରାଗିତା ଜିଜ୍ଞାସୁ ମନୋଭାବ ତଥା ଜଗନ୍ନାଥଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତିଭାବ ଦେଖି ତାଙ୍କୁ ରହିବା ପାଇଁ ପୃଥକ୍ ବସା ଦେଇ ପ୍ରତିନିତ୍ୟ ଭୋଜନ ପ୍ରକାଶେ

ମହାପ୍ରସାଦ ଖଣ୍ଡି ଥିଲେ । ରାଜନୀତି ଶିକ୍ଷା କରିବା ପାଇଁ ସେ ଗଜପତିଙ୍କ ଦରବାରକୁ ପ୍ରତିଦିନ ଯାଉଥିଲେ । ସେ ପୁରୀରେ ତିନିମାସ ରହି ରଥଯାତ୍ରା ଦେଖି ଓଡ଼ିଶା ରାଜାଙ୍କ ଅନୁମତି ନେଇ ନିଜ ରାଜ୍ୟକୁ ଫେରିଥିଲେ । ରାଜ୍ୟରେ କିଛି କାଳ ଅତିବାହିତ କରିବା ପରେ ପୁନର୍ବାର ଓଡ଼ିଶା ରାଜା ପ୍ରତାପରୁଦ୍ର-ଦେବଙ୍କୁ ଦର୍ଶନ କରିବା ପାଇଁ ୧୫୧୫ ଖ୍ରୀଷ୍ଟାବ୍ଦରେ ପୁରୀ ଯାତ୍ରା କରିଥିଲେ । ଗଜପତି ତାଙ୍କର ଅମାୟିକ ବ୍ୟବହାର, ରାଧାକୃଷ୍ଣଙ୍କଠାରେ ତାଙ୍କର ଅଚଳା ଭକ୍ତି ଓ ବୈଷ୍ଣବୋଚିତ ଗୁଣ ଦେଖି ତାଙ୍କୁ ସମ୍ମାନ ପ୍ରଦର୍ଶନ କରି, ସତ୍ସଙ୍ଗ ଉଦ୍ଦେଶ୍ୟରେ ପୁରୀରେ କିଛିଦିନ ରହିବା ପାଇଁ ଅନୁରୋଧ କରିଥିଲେ । ଏହି ଅବସରରେ ରାଜା ଜଗନ୍ନାଥଙ୍କ ଦର୍ଶନ ସମୟରେ ଜଗନ୍ନାଥ ଦାସଙ୍କ ସହିତ ସାକ୍ଷାତ କରି ବ୍ରାହ୍ମଣ ପଣ୍ଡିତ ମାନଙ୍କ ଦ୍ୱାରା ଭାଗବତର ଓଡ଼ିଆ ଅନୁବାଦଟି ଲେଖାଇ ଆଣିଥିଲେ ଓ ଶ୍ରୀ ଚୈତନ୍ୟଦେବଙ୍କ ଦର୍ଶନ ପାଇ ମହାଆନନ୍ଦରେ ତାଙ୍କ ଠାରୁ ବୈଷ୍ଣବ ଧର୍ମ ସମ୍ପର୍କରେ ବହୁ ବିଷୟ ଶିକ୍ଷା ଲାଭ କରି ସ୍ୱ ରାଜଧାନୀକୁ ଫେରିଥିଲେ ।

ପୁରୀରୁ ଫେରିବା ପରେ ଦେବାର୍ଚ୍ଚନ ପରେ ଓ ସନ୍ଧ୍ୟାରେ ରାଜ-ନଗରରେ ଜଗନ୍ନାଥ ଦାସଙ୍କ ଭାଗବତ ପାରାୟଣର ବ୍ୟବସ୍ଥା କରିଥିଲେ । ସେ ସମୟରେ ସଂସ୍କୃତ ବାଲ୍ମୀକି ରାମାୟଣର କଥାବସ୍ତୁ ସଂସ୍କୃତ ଅନଭିଜ୍ଞ ଲୋକଙ୍କପକ୍ଷରେ ବୁଝିବା କଷ୍ଟକର ହେଉଥିଲା । ବଳରାମ ଦାସଙ୍କ ପୂର୍ବରୁ ଉତ୍କଳର ଅନ୍ୟ କୌଣସି କବି ଓଡ଼ିଆ ଭାଷାରେ ରାମାୟଣର ଅନୁବାଦ କରିନଥିଲେ । ବଳରାମ ଦାସ ସର୍ବ ପ୍ରଥମେ ରାମାୟଣର ଅନୁବାଦ କରି ଗ୍ରନ୍ଥର ନାମ 'ଜଗମୋହନ' ରାମାୟଣ ରଖିଥିଲେ । ପୁରୀରେ ଅବସ୍ଥାନ କାଳରେ ଏହି ରାମାୟଣର ବିଷୟବସ୍ତୁ ଓ ଭାଷା ଶ୍ରବଣ କରି ରାଜା ନିଜକୁ ଧନ୍ୟ ମନେ କରୁଥିଲେ । ଏଣୁ ରାମାୟଣର ବିଷୟ ବସ୍ତୁକୁ ସର୍ବ ସାଧାରଣଙ୍କ ଭିତରେ ପ୍ରଚାର କରି ଲୋକଙ୍କୁ ନୈତିକ, ଆଧ୍ୟାତ୍ମିକ ଶିକ୍ଷା ପ୍ରତି ଆକୃଷ୍ଟ କରିବା ଲାଗି ପୁରୀର ଜଣେ ବ୍ରାହ୍ମଣଙ୍କ ଦ୍ୱାରା ଏହି ରାମାୟଣର ଏକ ହସ୍ତ ଲେଖା ନକଲ କରି ଧରାକୋଟକୁ ଆଣିଥିଲେ । ସେହି ଦିନ ଠାରୁ

ରାଜଗୃହରେ ପ୍ରାତଃକାଳରେ ଭାଗବତ ଓ ସାୟଂକାଳରେ ରାମାୟଣ ପାଠ କରାଇ ଉପସ୍ଥିତ ସୁଧୀବର୍ଗଙ୍କୁ ଓ ଭକ୍ତମାନଙ୍କୁ ରାମକୃଷ୍ଣଚରିତାମୃତ ପାନ କରାଇ ଅମିୟ ଆନନ୍ଦ ଉପଲବ୍ଧି କରୁଥିଲେ । ଯେଉଁ ବ୍ରାହ୍ମଣ ଉକ୍ତ ଗ୍ରନ୍ଥ ଦ୍ୱୟ ପାଠ କରୁଥିଲେ ତାଙ୍କୁ 'ପାଠ୍ୟ' ବୋଲି ଅଭିହିତ କଲେ । ରାଜା ଏହି ପାଠ୍ୟ ବ୍ରାହ୍ମଣଙ୍କୁ ତାଙ୍କ ପୁରୋହିତ କାମରେ ମଧ୍ୟ ନିଯୁକ୍ତ କରିଥିଲେ । ଯେଉଁ ସମୟରେ ଜଗନ୍ନାଥଙ୍କ ଓଡ଼ିଆ ଭାଗବତକୁ ବ୍ରାହ୍ମଣ ପଣ୍ଡିତମାନେ "ତେଲି-ଭାଗବତ" ଆଖ୍ୟା ଦେଇ ତାହା ପାଠ କରିବାକୁ ଘୃଣାବୋଧ କରୁଥିଲେ ରାଜା ସେହି ସମୟରେ ଉକ୍ତ ଭାଗବତ ଗ୍ରନ୍ଥକୁ ପାଠକରି ଓ କରାଇ ଓଡ଼ିଆ ଭାଷାରେ ଅନୁବାଦିତ ଧର୍ମଗ୍ରନ୍ଥ ଗୁଡ଼ିକୁ ପ୍ରୋତ୍ସାହନ ଦେଇ ନିଜ ମାତୃଭାଷା ପ୍ରୀତିର ଜ୍ୱଳନ୍ତ ନିଦର୍ଶନ ଦେଇଥିଲେ ।

ପ୍ରଜାମାନଙ୍କ ଆର୍ଥିକ ଉନ୍ନତି ପାଇଁ କୃଷି ଓ ଉଦ୍ୟାନର ବିକାଶ ପାଇଁ ଦୃଷ୍ଟି ଦେଇଥିଲେ । ରାଜ୍ୟରେ ବହୁ ଫଳ ଉଦ୍ୟାନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଜଳସେଚନ ଓ ପାନୀୟ ଉଦ୍ଦେଶ୍ୟରେ ବହୁ କୂପ, ପୁଷ୍କରିଣୀ ଓ ଖନନ କରିଥିଲେ ।

ସେ "ବାଘେଲ" ବଂଶର ରାଜକନ୍ୟାଙ୍କୁ ବିବାହ କରିଥିଲେ । ଏହାଙ୍କ ଔରସରୁ ପାଞ୍ଚଗୋଟି ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ଯଥା :—ପ୍ରଥମ ପୁତ୍ର ରାୟସିଂହ, ଦ୍ୱିତୀୟ ପୁତ୍ର ନିଧିସିଂହ, ତୃତୀୟ ପୁତ୍ର ବିଶ୍ୱନାଥ ସିଂହ, ଚତୁର୍ଥ-ପୁତ୍ର ଗୋବର୍ଦ୍ଧନ ସିଂହ ଓ ପଞ୍ଚମ ପୁତ୍ର ହରିସିଂହ । ଏହାଙ୍କ ଜ୍ୟେଷ୍ଠ ପୁତ୍ର ରାୟସିଂହ ଧୁମ୍ରସର ରାଜବଂଶରେ ବିବାହ କରିଥିଲେ ଓ ଅନ୍ୟ ଚାରିପୁତ୍ରଙ୍କୁ ଚୌହାନ ରାଜବଂଶରେ କନ୍ୟାମାନଙ୍କ ସହିତ ବିବାହ କରାଇଥିଲେ ।

ଆଜି ହାଡ଼ୁ ସିଂହ ନାହାଁନ୍ତି କିନ୍ତୁ ତାଙ୍କର ପ୍ରଜାନୁରଞ୍ଜନତା, ଅସୀମ ସାହସିକତା ବୀରତ୍ୱ, ଆଧ୍ୟାତ୍ମିକତା, ଦେବତା ବ୍ରାହ୍ମଣଙ୍କ ପ୍ରତି ପ୍ରଗାଢ଼

ଭକ୍ତ ଭାବ ତଥା ଧରାକୋଟ ରାଜ୍ୟର ଗଠନ କର୍ତ୍ତା ଭାବେ ଏ ରାଜ୍ୟବାସୀଙ୍କ ହୃଦୟରେ ଉଜ୍ଜୀବିତ ହୋଇ ରହିଛନ୍ତି ।

**ରାୟ ସିଂହ**–(୧୫୯୧ - ୧୬୦୨ ଖ୍ରୀ)

ହାଡ଼ୁ ସିଂହଙ୍କ ମୃତ୍ୟୁ ପରେ ତାଙ୍କର ଜ୍ୟେଷ୍ଠ ପୁତ୍ର ରାୟସିଂହ ଧରାକୋଟ ସିଂହାସନାରୋହଣ କଲେ । ରାୟସିଂହଙ୍କ ଅନ୍ୟ ଦୁଇ ଭାଇ ଏକ ମନ ଓ ଏକ ପ୍ରାଣରେ ରାଜାଙ୍କୁ ଶାସନକାର୍ଯ୍ୟ ପରିଚାଳନା କରିବାରେ ସାହାଯ୍ୟ କଲେ । ସେ ସମୟରେ ଲୋକଙ୍କ ପ୍ରଧାନ ଜୀବିକା ଥିଲା କୃଷି । ଏଣୁ କୃଷିଜାତ ଜିନିଷ ପ୍ରଚୁର ପରିମାଣରେ ଉତ୍ପାଦନ କରିବା ପାଇଁ ଧରାକୋଟର ଏକ ପ୍ରଧାନ ଗ୍ରାମ ଜାହାଡା ନିକଟରେ ଏକ ବୃହତ୍ ଜଳାଶୟ ଖନନ କରିଥିଲେ ଯାହା ଆଜି ଅନନ୍ତ ହ୍ରଦ ବା ଜାହାଡ଼ା ହିଜ ନାମରେ ପରିଚିତ । ଏହି ହିଜରୁ କୃଷି ଉପଯୋଗୀ ଜମିରେ ଜଳସେଚନର ବ୍ୟବସ୍ଥା କରିଥିଲେ । ଏହି ଗ୍ରାମ ପାର୍ଶ୍ଵରେ ପ୍ରବାହିତ ହେଉଥିବା ଋଷିକୁଲ୍ୟା ନଦୀରୁ ଏକ ନାଳ ଖୋଳାଇ ରାଜ୍ୟର ଏକ ବୃହତ୍ ଗ୍ରାମ ମଙ୍ଗଳପୁର ଦେଇ ସୁକୁନ୍ଦା ସହିତ ସଂଯୋଗ କରିଥିଲେ । ଏହି ଦଶକିଲୋମିଟର ଦୀର୍ଘ ବିଶିଷ୍ଟ ନାଳ ଦ୍ଵାରା ଆସିକା ପର୍ଯ୍ୟନ୍ତ ଲାଗି ରହିଥିବା ପ୍ରାୟ ୩୦ ଖଣ୍ଡ ଗ୍ରାମର ଜମିରେ ଜଳସେଚନର ବ୍ୟବସ୍ଥା କରିଥିଲେ । ଅଦ୍ୟାପି ଏହା ମଙ୍ଗଳପୁର ନାଳ ରୂପେ ଖ୍ୟାତି ଲାଭ କରିଛି ।

ଏହି ପୁଣ୍ୟ ଶ୍ଳୋକ ରାଜା ପୁରୀ ଗଜପତି ରାଜାଙ୍କ ଅନୁକରଣରେ ବହୁ ମହମାୟ କୀର୍ତ୍ତି ଓ ବ୍ରାହ୍ମଣଶାସନ ଦାନ କରିଛନ୍ତି । ଷୋଡ଼ଶ ଶତାବ୍ଦୀର ଶେଷ ଦଶକରେ ତାଲୁକାର ପୂର୍ବ ପ୍ରାନ୍ତରେ ଥିବା ଜନପଦ ପିତଳ ନିକଟରେ ବିରାଟ ଜଙ୍ଗଲ ସଫାକରି ନିଜ ନାମରେ ଏକ ବ୍ରାହ୍ମଣ ଶାସନ ବସାଇ ବ୍ରାହ୍ମଣ ମାନଙ୍କ ଭରଣପୋଷଣ ପାଇଁ ବର୍ପୁର ଗ୍ରାମରେ ଥିବା ୭୬୦ ଭରଣ ଜମି ଦାନ କରିଥିଲେ । ଏହି ଜମି ୧୩ ଜଣ ଅଥର୍ବବେଦୀୟ ବ୍ରାହ୍ମଣ ଓ ଜଣେ ଯଜୁର୍ବେଦୀୟ ବ୍ରାହ୍ମଣଙ୍କୁ ଦାନ ଦିଆଯାଇ ଥିଲା । ଏହି ଶାସନଟି

ଅଦ୍ୟାପି ପିତଳ ରାୟସିଂହପୁର ନାମରେ ଖ୍ୟାତି ଲାଭ କରିଅଛି । ଏହି ଗ୍ରାମର ପୂର୍ବ ପ୍ରାନ୍ତରେ ଥିବା ପିତଳ ଜନପଦଟି ସେ ସମୟରେ ଧରାକୋଟ ଜମିଦାରୀର ଅନ୍ତର୍ଗତ ଥିଲା । ବର୍ତ୍ତମାନ ଏହି ଗ୍ରାମଟି ୧୪ ଗୋଟି ସାହିକୁ ନେଇ ଗଠିତ ଏଥିରୁ ବର୍ତ୍ତମାନ ୫ ଗୋଟି ସାହି ଧରାକୋଟର ଅନ୍ତର୍ଗତ ଓ ଅନ୍ୟ ୯ ଗୋଟି ସାହି ପୂର୍ବ ଖଣ୍ଡର । ଏହି ଗ୍ରାମର ଋଷିକୁଲ୍ୟା ନଦୀର ଦକ୍ଷିଣତଟରେ ତନ୍ତ୍ର ପ୍ରାଧାନ୍ୟ ଶ୍ରୀଶ୍ରୀ ଉତ୍ତରେଶ୍ୱର ଶୈବ ପୀଠ ଅବସ୍ଥିତ । ବଭିନ୍ନ ଦାନ ଲିପିରୁ ଜଣାଯାଏ ଏହି ଦେବତା ଓ ଏହି କୀର୍ତ୍ତି ଧରାକୋଟ ରାଜା ରାୟସିଂହଙ୍କ ଦ୍ୱାରା କରାଯାଇଥିଲା । ସେହି ସମୟରୁ ଏଯାଏଁ ଧରାକୋଟର କୌଣସି ରାଜା ପିତଳ ପରିଦର୍ଶନରେ ଆସିଲେ ଏହି ପୀଠରେ ପୂଜା ଅର୍ଚ୍ଚନା କରି ଆସୁଛନ୍ତି । ଧରାକୋଟ ରାଜାମାନେ ଏହି ଦେବତାଙ୍କ ଭୋଗ ଯାନଯାତ୍ରା ପାଇଁ ନିଜ ରାଜ୍ୟ ଅନ୍ତର୍ଗତ ଗ୍ରାମରୁ ବହୁ ଭୂସମ୍ପତ୍ତି ଦାନ କରିଛନ୍ତି ।

ଏହା ଏକ ଅଭିନବ ଶୈବପୀଠ । ଏଭଳି ଏକ ଶୈବପୀଠ ଉତ୍କଳରେ ଅନ୍ୟତ୍ର ଦୃଷ୍ଟିଗୋଚର ହୁଏ ନାହିଁ । ଏହି ପୀଠ ତନ୍ତ୍ର ମତେ ବିପରୀତ ରତିକ୍ରିୟାର ଏକ ଉତ୍କୃଷ୍ଟ ନମୁନା । ଲିଙ୍ଗ ଉପରେ ଶକ୍ତି । ସବୁଠାରେ ଲିଙ୍ଗର ବଳୟକୁ ଘେରି ଶକ୍ତି ରହିଥାଏ । କିନ୍ତୁ ଏହି ପୀଠ ସମ୍ପୂର୍ଣ୍ଣ ଭିନ୍ନ ଭାବରେ ନିର୍ମାଣ କରାଯାଇଛି । ତନ୍ତ୍ର ଭକ୍ତି ମତେ କାଳୀପୀଠ, ଶ୍ୟାମାପୀଠ, ଦକ୍ଷିଣାମୂର୍ତ୍ତି ପୀଠ, ଉଗ୍ରତାରା ପୀଠ ମାନଙ୍କରେ ମହାଶକ୍ତିଙ୍କ ପାଦ ତଳେ ଶାୟିତ ଶିବଙ୍କ ର ଲିଙ୍ଗ ମହାମାୟାଙ୍କ ଯୋନି ସ୍ପର୍ଶ କରିଥିବାର କେଉଁଠି କେଉଁଠି ଥିଲାପରି ଏହି ପୀଠ ମଧ୍ୟ ସେହିପରି ବୋଲି ଅନୁମିତ ହୁଏ । ଜନ ଶ୍ରୁତିରୁ ଜଣାଯାଏ ଏହି ପୀଠରେ ରାୟସିଂହପୁରରେ ଥିବା ତନ୍ତ୍ର ବିଦ୍ୟାରେ ପାରଙ୍ଗମ ଅଥର୍ବବେଦୀ ବ୍ରାହ୍ମଣମାନଙ୍କ ଦ୍ୱାରା ଧରାକୋଟ ରାଜବଂଶର ରାଜାମାନେ ନିଜର ନିରଙ୍କୁଶ ଶାସନ ଓ ପ୍ରତିପତ୍ତି ବଜାଏ ରଖି ସମସ୍ତ ବିପତ୍ତିରୁ ଉଦ୍ଧାର ପାଇବା ନିମିତ୍ତ ବହୁ ଆଭିଚାରିକ କର୍ମ କରୁଥିଲେ ।

ସେ ପିତଳର ଅନନ୍ତ ଦୂରରେ ଅନ୍ୟ ଏକ ବ୍ରାହ୍ମଣ ଶାସନ ବସାଇ ଯଜୁର୍ବେଦୀୟ ପାଢ଼ୀୟ ବ୍ରାହ୍ମଣ ମାନଙ୍କୁ ଜମିଦାନ କରି ଶାସନର ନାମ ଦେଇଥିଲେ 'ସୁଭଦ୍ରା ଦେଇପୁର' । ଏତଦ୍ ବ୍ୟତୀତ ରାଜା ମହୋଦୟ ଋଷିକୁଲ୍ୟା ନଦୀର ଉତ୍ତର ତୀରରେ ଏକ ବ୍ରାହ୍ମଣଶାସନ ଦାନ କରି ଏହାକୁ "ଖଣ୍ଡଦୋଳ ରଘୁସିଂହପୁର" ନାମରେ ନାମିତ କରିଥିଲେ । ଗଞ୍ଜାମରୁ ମିଳିଥିବା ଏକ ତାମ୍ରପଟ୍ଟାରୁ ଜଣାଯାଏ ରାଜା ରଘୁସିଂହ ପୁରୀ ନିଳାଦ୍ରିପୁର-ଶାସନ ନିବାସୀ ଶମ୍ଭୁକର ଭରଦ୍ୱାଜ ଗୋତ୍ରୀୟ ବ୍ରାହ୍ମଣ ଶ୍ରୀ ବଳଭଦ୍ର ମିଶ୍ରଙ୍କୁ ତା ୪-୧-୧୬୦୨ ରେ ମକର ସାତ ସୋମବାର ମାଘ ମାସରେ ଗ୍ରହଣ ସମୟରେ ଏହି ଉଦୟମୂର୍ତ୍ତୀ ଶାସନ ଦାନ କରିଥିଲେ । ଏହି ଶାସନ ଦାନାଧ୍ୟକ୍ଷଙ୍କ ସମେତ ଅନ୍ୟ ୧୮ ଜଣ ବ୍ରାହ୍ମଣଙ୍କୁ ଏକହଜାର ଭରଣ ଏକ ଚକଡ ଭୂମି ଦାନ ଦିଆଯାଇଥିଲା । ଏହି ଗ୍ରାମ ନିକଟରେ ଋଷିକୁଲ୍ୟା ନଦୀର ଉତ୍ତର ତୀରରେ କପିଳେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ । ଏହି ମହାଦେବଙ୍କ ଭୋଗରାଗ ପାଇଁ ମଧ୍ୟ ରାଜା ଭୂସମ୍ପତ୍ତି ଦାନ କରିଛନ୍ତି ।

ରାଜାଙ୍କ ସାନ ମଉସିଆ ଭାଇ ଗୋବର୍ଦ୍ଧନ ସିଂହ ରାଜାଙ୍କ ମନ୍ତ୍ରୀ ତଥା ରାଜାଙ୍କ ଅନୁପସ୍ଥିତିରେ ରାଜକାର୍ଯ୍ୟ ପରିଚାଳନା କରୁଥିବା ହେତୁ ତାଙ୍କ କାର୍ଯ୍ୟରେ ସନ୍ତୋଷ ପ୍ରକାଶ କରି ତାଙ୍କ ନାମରେ ଋଷିକୁଲ୍ୟା ନଦୀର ଉତ୍ତର ତୀରରେ ଗୋବର୍ଦ୍ଧନପୁର ନାମକ ଏକ ଶାସନ ପ୍ରତିଷ୍ଠା କରି ଗ୍ରାମରଦାନାଧ୍ୟକ୍ଷ ସ୍ୱର୍ଗୀୟ ହରିସେବକ ପଣ୍ଡାଯୋଷୀଙ୍କୁ "ନୂଆପଲ୍ଲୀ" ଗ୍ରାମରେ ୮୦୦ ଭରଣ ବ୍ରହ୍ମଦାୟ ଲନାମ ଜମି ଦାନ କରିଥିଲେ । ଏହି ଗ୍ରାମ ନିକଟରେ ନଦୀର ଉତ୍ତର ତୀରରେ ଧରାକୋଟର ପ୍ରସିଦ୍ଧ ଶୈବମନ୍ଦିର ଅବସ୍ଥିତ । କିମ୍ବଦନ୍ତୀରୁ ଜଣାଯାଏ ରାମଚନ୍ଦ୍ର ବନବାସ ସମୟରେ ମୁକ୍ତେଶ୍ୱରଙ୍କ ସ୍ଥାବର ଲିଙ୍ଗଙ୍କୁ ପ୍ରତିଷ୍ଠା କରି ପୂଜା କରିଥିଲେ । ଏହି ମହାପ୍ରଭୁଙ୍କ ପାଇଁ ରାଜା ଏକ ସୁନ୍ଦର ସୁଦୃଢ଼ ଓ ଉଚ୍ଚ ମନ୍ଦିର ନିର୍ମାଣ କରିଥିଲେ । ଧରାକୋଟ ରାଜ୍ୟ ଗଠନ ପ୍ରାରମ୍ଭରୁ ଏଠା ରାଜାମାନେ ମୁକ୍ତେଶ୍ୱରଙ୍କୁ ତାଙ୍କର ଅନ୍ୟତମ ଆରାଧ୍ୟଦେବତା ରୂପେ ମାନି ମହାପ୍ରଭୁଙ୍କ ଭୋଗଭୋଗ ଓ ଯାନି ଯାତ୍ରା ପାଇଁ ପ୍ରଚୁର ଭୂସମ୍ପତ୍ତି

ଖାଞ୍ଜିଥିଲେ । ପ୍ରତିବର୍ଷ ଶିବରାତ୍ରି ଦିନ ରାତ୍ରରେ ଏଠାରେ ହରିହରଙ୍କ ଭେଟ ଯାତ୍ରା ମହାଆଡ଼ମ୍ବର ସହକାରେ ପାଳିତ ହୁଏ । ଏହି ଉତ୍ସବ ଦିନ ରାଜ-ପ୍ରାସାଦରୁ ବରାଟ ଶୋଭାଯାତ୍ରାରେ ମଦନମୋହନଙ୍କ ( ବିଷ୍ଣୁ ) ବିଜେ ପ୍ରତିମା ମୁକ୍ତେଶ୍ୱରଙ୍କ ମନ୍ଦିର ନିକଟକୁ ଆସନ୍ତି ଓ ଏହି ମନ୍ଦିରରୁ ମୁକ୍ତେଶ୍ୱରଙ୍କ ବିଜେ ପ୍ରତିମା "ହର"ଙ୍କୁ ପଟୁଆରରେ ବାଜା କରାଇ ମନ୍ଦିର ପ୍ରାଙ୍ଗଣ ବାହାରେ ହରି ଓ ହରଙ୍କୁ ଭେଟ କରାଯାଏ । ଏ ଉପଲକ୍ଷ୍ୟେ ଏକ ବଡ଼ଯାତ୍ରା ଏଠାରେ ଅନୁଷ୍ଠିତ ହୁଏ ।

ଏହି ମନ୍ଦିର ପ୍ରାଙ୍ଗଣରେ ଶ୍ରୀରାମଙ୍କ ଭକ୍ତ ବୀରହନୁମାନଙ୍କ ଏକ ମୂର୍ତ୍ତି ପୂଜା ପାଉଅଛନ୍ତି । ଏହା ବ୍ୟତୀତ ମନ୍ଦିର ପ୍ରାଙ୍ଗଣରେ ଏକ କ୍ଷୁଦ୍ର ମନ୍ଦିର ଭିତରେ "ବ୍ରହ୍ମଅସ୍ଥି"ଙ୍କୁ ମଧ୍ୟ ପୂଜା ଓ ଅର୍ଚ୍ଚନା କରାଯାଏ ପ୍ରବାଦ-ଅଛି — ଏକଦା ଧରାକୋଟ ରାଜ୍ୟ ଅନ୍ତର୍ଗତ ଗୋଟିଏ ବ୍ରାହ୍ମଣ ପରିବାରରେ ଜଣେ ଅଜଣା ସନ୍ୟାସୀ ଅତିଥି ହୋଇ ଗୋଟିଏ ରାତି ଅତିବାହିତ କରିଥିଲେ । ସନ୍ୟାସୀ ଗୃହରେ ଶୋଇଥିବା ଅବସ୍ଥାରେ ଅର୍ଦ୍ଧ ରାତ୍ରରେ ବ୍ରାହ୍ମଣ ଗୃହିଣୀ ଏକ ପୈଶାଚିକ କର୍ମରେ ପ୍ରବୃତ୍ତ ଥିବା ଦେଖି ଗୃହ ସ୍ୱାମୀଙ୍କ ଦୃଷ୍ଟି ତାହାଁ ଆରଦନ ଆକର୍ଷଣ କରିଥିଲେ । ଏହି ମତ ପ୍ରକୃତ କଥା ସ୍ୱାମୀ ସ୍ତ୍ରୀଙ୍କୁ ପଚାରିବାରେ ସ୍ତ୍ରୀ ଖୁବ୍ ରାଗି ସ୍ୱାମୀଙ୍କୁ ହତ୍ୟାକରି ତାଙ୍କ ମାଂସ ଖାଇବା ପାଇଁ ଧମକ ଦେଲେ ସ୍ୱାମୀ ଭୟଭୀତ ହୋଇ ରାଜା ରାମସିଂହଙ୍କ ଶରଣାପନ୍ନ ହେଲେ । ରାଜା ଓ ମନ୍ତ୍ରୀ ସ୍ତ୍ରୀ ଓ ପୁରୁଷଙ୍କୁ ପୃଥକ୍ ଗୃହରେ ରାତ୍ର ରହିବା ବନ୍ଦୋବସ୍ତ କରି ତାହାଁଆରଦନ ଉଭୟଙ୍କ କଥା ବିଚାର କରିବାକୁ କହିଲେ । ରାତ୍ରରେ ଉଭୟ ଗୃହ ବନ୍ଦ ରଖି ରାତ୍ର ଜଗି ରହିବା ପାଇଁ ପ୍ରହରୀକୁ ନିର୍ଦ୍ଦେଶ ଦେଲେ । ରାତ୍ର ପାଇବା ପରେ ରାଜା ଦ୍ୱାର ଜଗାଳୀକୁ ଡ଼ାକି ଦ୍ୱାର ଖୋଲି ଉଭୟ ସ୍ତ୍ରୀ ପୁରୁଷଙ୍କୁ ତାଙ୍କ ନିକଟକୁ ଆଣିବାକୁ ଆଦେଶ ଦେଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଦ୍ୱାର ଖୋଲିବା ପରେ ଉଭୟ ଗୃହ ଶୂନ୍ୟ ଥିବାର ଦେଖାଗଲା । କିନ୍ତୁ ବ୍ରାହ୍ମଣ ରହିଥିବା ଗୃହରେ କେତେକ ରକ୍ତାକ୍ତ ଅସ୍ଥି ପଡ଼ିଥିବା ଲକ୍ଷ୍ୟ କରାଗଲା । ରାଜା ଏହା ଦେଖି ନିଜକୁ ପରୋକ୍ଷ ଭାବରେ

ବ୍ରହ୍ମ ହତ୍ୟା ଦୋଷରେ ନିଜକୁ ଦୋଷୀ ବୋଲି ମନେ କଲେ । ଏହି ବ୍ରହ୍ମ-ହତ୍ୟା ଜନିତ ପାପରୁ ମୁକ୍ତ ପାଇବା ପାଇଁ ପଣ୍ଡିତମାନଙ୍କ ପରାମର୍ଶ ଅନୁ-ସାରେ ପ୍ରାୟଶ୍ଚିତ୍ତ ସ୍ୱରୂପ ମୁକ୍ତେଶ୍ୱରଙ୍କ ମନ୍ଦିର ପ୍ରାଙ୍ଗଣରେ ଏକ ମନ୍ଦିର ନିର୍ମାଣ କରି ବ୍ରହ୍ମଅସ୍ଥିକୁ ରଖି ବ୍ରହ୍ମେଶ୍ୱର ନାମରେ ପୂଜା କରିବାର ବ୍ୟବସ୍ଥା କଲେ । ଅଦ୍ୟାପି ଦୈନିକ ମୁକ୍ତେଶ୍ୱର ମହାପ୍ରଭୁଙ୍କ ଭୋଗ ପାଇଁ ପ୍ରସ୍ତୁତ ହୋଇଥିବା ଅନ୍ନ ବ୍ୟଞ୍ଜନରୁ କିଛି ଅଂଶ ଏହି ମନ୍ଦିରକୁ ଅଣାଯାଇ ଏହି ବ୍ରହ୍ମଅସ୍ଥିଙ୍କୁ ପୂଜା କରାଯାଉଛି । ଏହି ବ୍ରହ୍ମହତ୍ୟା ଜନିତ ପାପରୁ ମୁକ୍ତ ପାଇବା ଉଦ୍ଦେଶ୍ୟରେ ରାଜା ବ୍ରହ୍ମତର ନାମରେ କେତେକ ଭୂମି ଦାମୋଦର ପଲ୍ଲୀ ଗ୍ରାମରେ ବ୍ରାହ୍ମଣଙ୍କୁ ଦାନ କରିଛନ୍ତି । ରାୟସିଂହ ଓ ତାଙ୍କ ଅନୁଜ ଗୋବର୍ଦ୍ଧନ ସିଂହ ଅତ୍ୟନ୍ତ ନିଷ୍ଠାପର ଶିବ ଭକ୍ତ ଥିଲେ । ମୁକ୍ତେଶ୍ୱରଙ୍କ ଶକ୍ତି ରୂପେ କନକଦୁର୍ଗାଙ୍କ ପ୍ରତିଷ୍ଠା କରାଇ ଗୋବର୍ଦ୍ଧନପୁର ଶାସନ ହୋତା ବଂଶର ଜଣେ ଧର୍ମପ୍ରାଣ, ଶକ୍ତି ଉପାସକ ବ୍ରାହ୍ମଣଙ୍କ ଗୃହରେ ରଖାଇ ପୂଜା ବିଧି କରାଇବାର ବ୍ୟବସ୍ଥା କରିଥିଲେ । ଏହି ବ୍ରାହ୍ମଣଙ୍କୁ ନିଜ ପୁରୋହିତ କାମରେ ମଧ୍ୟ ନିଯୁକ୍ତ କରିଥିଲେ । ପ୍ରତିବର୍ଷ ଆଶ୍ୱିନ ମାସରେ ଶାରଦୀୟ ଷୋଡଶ ଦିନାତ୍ମକପୂଜା ଅନୁଷ୍ଠିତ କରିବା ପାଇଁ କନକଦୁର୍ଗାଙ୍କୁ ଗୋବର୍ଦ୍ଧନ ପୁରରୁ ରାଜବାଟୀକୁ ବିଜେ କରାଇ ମହାସମାରୋହରେ ପୂଜା ଅନୁଷ୍ଠିତ ହେଉଥିଲା । ଅନ୍ୟାନ୍ୟ ରାଜବାଟୀରେ ଶାକ୍ତ ପୂଜାରେ ଦେବୀଙ୍କ ନିକଟରେ ପଶୁବଳୀ ଦେବାପରେ ଏହି ପୀଠରେ ତାହା ସମ୍ପୂର୍ଣ୍ଣ ରୂପେ ନିଷିଦ୍ଧ କରାଯାଇ କେବଳ ଅନୁକଳ୍ପ ବିଧିରେ ପୂଜା ଅନୁଷ୍ଠିତ ହେଉଥିଲା । ପୁଣି ପୂଜା ସମୟରେ ଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରାଯାଉଥିବା ସମସ୍ତ ନୈବେଦ୍ୟ ପୂଜା ସାମଗ୍ରୀ ଦେବୀଙ୍କ ସମ୍ମୁଖରେ ରଖାନଯାଇ ପୂଜକ ବ୍ରାହ୍ମଣଙ୍କ ପଶ୍ଚାତ୍ ଭାଗରେ ରଖାଯାଇ ସମର୍ପଣ କରାଯାଉଥିଲା । ଉକ୍ତ ପରମ୍ପରା ଅଦ୍ୟାପି ଏଠାରେ ରହିଛି ।

ମୁକ୍ତେଶ୍ୱରଙ୍କ ମନ୍ଦିର ବ୍ୟତୀତ ସାହସପୁର ଗ୍ରାମ ନିକଟରେ ବିଜେ ହୋଇଥିବା ପ୍ରସିଦ୍ଧ ଓ ପ୍ରତ୍ୟକ୍ଷ ସ୍ୱୟଂ ଭୂଲିଙ୍ଗ ଲୋକନାଥ ମହାପ୍ରଭୁଙ୍କ

ଭୋଗ ପାଇଁ ୧୫୯୧ ଖ୍ରୀଷ୍ଟାବ୍ଦରେ ୫୪ ଭରଣ ଜମି ଦାନ କରିଥିବା ବିଷୟ ଦେବୋତ୍ତର ଇନାମ ସମ୍ପର୍କୀୟ ସରକାରୀ କାଗଜପତ୍ରରୁ ଜଣାଯାଏ । ପୁରୀ ଲୋକନାଥଙ୍କ ପରେ ଏହି ଲିଙ୍ଗ ବର୍ଷର ଛମାସ ଜଳରେ ବୁଡି ରହିଥାନ୍ତି । ଧରାକୋଟର ପ୍ରଥମ ରାଜା ହାଡ଼ି ସିଂହଙ୍କ ପ୍ରଥମ ଦୁର୍ଗ ଏହି ମହାପ୍ରଭୁଙ୍କ ନିକଟରେ ଥିଲା ଏଣୁ ତାଙ୍କ ଅମଳରୁ ରାଜପୂଜିତ ଦେବତା ରୂପେ ପ୍ରତିଷ୍ଠା ଲାଭ କରିଛନ୍ତି ।

ରାଜା ଅତ୍ୟନ୍ତ ଧର୍ମ ପରାୟଣ ଥିଲେ । ସେ ପ୍ରତିଦିନ ଭାଗବତ ଓ ରାମାୟଣ ପାରାୟଣ କରୁଥିଲେ । ସେ ବ୍ରାହ୍ମଣ ପଣ୍ଡିତମାନଙ୍କୁ ସଙ୍ଗରେ ଧରି ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରି ଗଜପତି ମୁକୁନ୍ଦଦେବଙ୍କ ସହ ସାକ୍ଷାତ କରିଥିଲେ । କିମ୍ବଦନ୍ତୀରୁ ଜଣାଯାଏ ପୁରୀରେ ଅବସ୍ଥାନ କରୁଥିବା ସମୟରେ ଶ୍ରୀ ଚୈତନ୍ୟ ଦେବଙ୍କ ଅନେକ ପ୍ରିୟ ଶିଷ୍ୟ 'ଭ୍ରମରଦାସ'ଙ୍କୁ ନିଜର ଗୁରୁ ପଦରେ ବରଣ କଲେ ପୁରୀକ୍ଷେତ୍ରରୁ ନିଜ ରାଜ୍ୟକୁ ଆଣି ପୁରୁଷୋତ୍ତମ ଗ୍ରାମରେ ଗୃହ ନିର୍ମାଣ କରି ତାଙ୍କୁ ରଖାଇ ଭରଣପୋଷଣ ପାଇଁ ପ୍ରଚୁର ଭୂସମ୍ପତ୍ତି ଦାନ କରିଥିଲେ ।

ସେ ଦୀର୍ଘ ୭୨ ବର୍ଷ ରାଜତ୍ୱ କରି ପ୍ରଜାବର୍ଗଙ୍କର ବହୁ ହିତକର କାର୍ଯ୍ୟକରି ଚିର ସ୍ମରଣୀୟ ହୋଇ ପାରିଛନ୍ତି ।

**ନାରାୟଣ ସିଂହ** ( ୧୭୦୩ ଖ୍ରୀ—୧୭୪୭ ଖ୍ରୀ )

ରାୟସିଂହଙ୍କ ସ୍ୱର୍ଗାରୋହଣ ପରେ ତାଙ୍କର ଏକମାତ୍ର ପୁତ୍ର ନାରାୟଣ ସିଂହ ଧରାକୋଟଧିପତି ପଦରେ ଅଭିଷିକ୍ତ ହେଲେ । ନାରାୟଣ ସିଂହ ତାଙ୍କର ଅସୀମ ବୀରତ୍ୱ ଓ ପ୍ରଜାନୁରଞ୍ଜନ ଶାସନ ଯୋଗୁଁ ତଦାନନ୍ତନ ଗଞ୍ଜାମର ରାଜାମାନଙ୍କ ମଧ୍ୟରେ ଏକ ଗୌରବମୟ ଆସନ ଲାଭ କରିଥିଲେ । ସେ ନିଜେ ଅଶ୍ୱ ଓ ଗଜାରୋହଣ କରି ରାଜ୍ୟର ଘନ ଜଙ୍ଗଲ ଆଚ୍ଛାଦିତ ଗ୍ରାମ ଗୁଡିକୁ ପରିଭ୍ରମଣ କରି ପ୍ରଜାମାନଙ୍କ ଦୁଃଖ ଓ ଦୁର୍ଦ୍ଦଶା ମୋଚନ

କରିବା ପାଇଁ ଯତ୍ନ କରୁଥିଲେ । ସେ ଗୁମୁସର ରାଜାଙ୍କ କବଳରୁ ଧରାକୋଟର ଉତ୍ତର ପୂର୍ବାଞ୍ଚଳରେ ଥିବା ସିଦ୍ଧନଦ, ଅସୁରେଇପଲ୍ଲୀ ଓ ବାଦଗଡ ପ୍ରଭୃତି ଗ୍ରାମ ଗୁଡ଼ିକୁ ମୁକ୍ତ କରି ଏଠାରେ ବସତି ସ୍ଥାପନ କରିଥିବା ଭଞ୍ଜ ସାମନ୍ତ ମାନଙ୍କୁ ବିତାଡ଼ିତ କରିଥିଲେ । ଗୁମୁସର ରାଜା ଏହା ଜାଣି ନାରାୟଣ ସିଂହଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ କିନ୍ତୁ ନାରାୟଣ ସିଂହଙ୍କ ଅମାପ ବୀରତ୍ୱ କଥା ଶୁଣି ଯୁଦ୍ଧ ଭୂମିରୁ ଫେରିଯାଇ ରାଜାଙ୍କ ସହିତ ସନ୍ଧି ସ୍ଥାପନ କଲେ । ଏହି ସନ୍ଧି ଅନୁସାରେ ବାଦଗଡ଼ ନିକଟସ୍ଥ କାଙ୍କଣ ଦେବୀଙ୍କ ପାହାଡ଼କୁ ଉଭୟ ରାଜ୍ୟର ସୀମା ନିର୍ଦ୍ଧାରଣ କରାଯାଇଥିଲା ।

ରାଜା ନାରାୟଣ ସିଂହ ବୀର, ସୁଶାସକ, ଦାନଶୀଳ ଓ ପରମ ବୈଷ୍ଣବ ଥିଲେ । ସେ ନିଜ ନାମରେ ନାରାୟଣପୁର ଶାସନ ୧୬୭୩ ଖ୍ରୀଷ୍ଟାବ୍ଦରେ ପ୍ରଧାନ ଦାନାଧ୍ୟକ୍ଷ ଗଦାଧର ଓ ତାଙ୍କୁ ଦାନ ଦେଇଥିଲେ । ଏହି ଗ୍ରାମଟି ଦ୍ୱାଦଶ ଅଂଶୀଦାରଙ୍କ ଭିତରେ ବିଭକ୍ତ ହୋଇଥିଲା । ଏହି ଶାସନଟି ଋଷିକୁଲ୍ୟା ନଦୀର ଉତ୍ତର ତୀରରେ ଅବସ୍ଥିତ । ଗ୍ରାମର ବସ୍ତି ଓ କୋଷ୍ଠ ଅନୁଷ୍ଠାନ ପରିଚାଳନା ପାଇଁ ୧୦୫ ଭରଣ ଜମି ଦାନ କରାଯାଇଥିଲା ଓ ବ୍ରାହ୍ମଣ ମାନଙ୍କ ଭରଣପୋଷଣ ପାଇଁ ରାଜ୍ୟର ବିଭିନ୍ନ ଗ୍ରାମରେ ଖଣ୍ଡିଆ ଇନାମ ଜମି ଦାନ କରାଯାଇଥିଲା । ଋଷିକୁଲ୍ୟା ନଦୀର ସ୍ରୋତ ଉତ୍ତରକୁ ପରିବର୍ତ୍ତନ ହେବା ଫଳରେ ଅଧିକାଂଶ ଜମି ନଦୀ ଗର୍ଭରେ ଲୀନ ହୋଇଗଲା । ଏହି ଗ୍ରାମର ପୀଠେଶ୍ୱର ଘାଟରେ ଋଷିକୁଲ୍ୟା ନଦୀ ତଟରେ ଶ୍ରୀ ବୈଦ୍ୟନାଥ ମହାପ୍ରଭୁଙ୍କ ମନ୍ଦିର ଥିଲା । କାଳକ୍ରମେ ନଦୀ ଅତଡ଼ା ଖାଇବା ଫଳରେ ବୈଦ୍ୟନାଥ ମହାପ୍ରଭୁଙ୍କୁ ନଦୀ ଗର୍ଭରୁ ଉଦ୍ଧାର କରାଯାଇ ଏକ ନୂତନ ମନ୍ଦିରରେ ଅବସ୍ଥାପିତ କରାଯାଇ ଯଥାବିଧି ପୂଜାର ବ୍ୟବସ୍ଥା କରାଗଲା । କିନ୍ତୁ ପରବର୍ତ୍ତୀ କାଳରେ ରାଜା ଜଗନ୍ନାଥ ସିଂହ ଦେଓଙ୍କ ସମୟରେ ଏହି ଶିବ ମନ୍ଦିର ପଡ଼ୋଶୀ ଶାସନ ତଳୋତ୍ତମାଦେଈପୁର ଚକବନ୍ଦୀରେ ବନ୍ଦୋବସ୍ତ ରେକାର୍ଡ଼ରେ ଅନ୍ତର୍ଭୁକ୍ତ ହେବା ହେତୁ ବୈଦ୍ୟନାଥ-ମହାପ୍ରଭୁଙ୍କୁ ଉପରୋକ୍ତ ଶାସନର ବୋଲି ଗ୍ରହଣ କରାଯାଇ ମହାପ୍ରଭୁଙ୍କ

ଭୋଗ, ରାଗ, ଯାନଯାତ୍ରା ପ୍ରଭୃତିର ଦାୟିତ୍ୱ ତତ୍କାଳୀନ ମାଦେଲପୁର ଶାସନ ବାସୀଙ୍କ ଉପରେ ନ୍ୟସ୍ତ କରିଥିଲେ । ନାରାୟଣପୁର ଶାସନ ବାସୀଙ୍କ ପୂଜା ଅର୍ଚ୍ଚନା ପାଇଁ ଜଗମୋହନ ଗ୍ରାମ ଚକବନ୍ଦୀରେ ନୂତନ ଶିବଲିଙ୍ଗ ସ୍ଥାପନ କରାଯାଇ "ଶ୍ରୀ ବଜେ ବୈଦ୍ୟନାଥ" ମହାପ୍ରଭୁ ନାମରେ ନାମିତ କରାଯାଇ ଯାନଯାତ୍ରାର ଭାର ନାରାୟଣପୁର ଶାସନ ବାସୀଙ୍କୁ ଅର୍ପଣ କରିଥିଲେ । ଏହି ନୂତନ ଲିଙ୍ଗ ପ୍ରତିଷ୍ଠା ଊନବିଂଶ ଶତାବ୍ଦୀର ପ୍ରଥମ ଦଶକରେ ହୋଇଥିଲା । ଏହି ବଜେ ବୈଦ୍ୟନାଥଙ୍କ ପୀଠରେ ଏକ ସ୍ୱତନ୍ତ୍ର ମନ୍ଦିରରେ ତ୍ରିପୁର ସୁନ୍ଦରୀ ବାଳା ପୂଜା ପାଉଛନ୍ତି ଏହା ଏକ ପ୍ରସିଦ୍ଧ ଶାକ୍ତପୀଠ ଅଟେ । ଶାସନ ବସତି କାଳରୁ ଶ୍ରୀବୈଦ୍ୟନାଥଙ୍କ ବଜେ ପ୍ରତିମା ଅଦ୍ୟାପି ନାରାୟଣପୁର ଶାସନରେ ପୂଜା ପାଇ ଆସୁଛନ୍ତି ।

ରାଜା ଅତ୍ୟନ୍ତ ଧର୍ମପରାୟଣ ଥିଲେ । ପ୍ରତିଦିନ ବ୍ରାହ୍ମଣ ଓ ଗରିବ ଲୋକଙ୍କୁ ଅନ୍ନବସ୍ତ୍ର ଦାନକରି ଯୋଗଣକୁ ବଜେ ହେଉଥିଲେ । ସେ ଚୌହାନ ରାଜବଂଶରେ ବିବାହ ହୋଇଥିଲେ ! ତାଙ୍କର ଏକମାତ୍ର ପୁଅ ଥିଲା । ତାଙ୍କର ନାମ ପୁରୁଷୋତ୍ତମ ଦେଓ । ଦୀର୍ଘ ୪୦ ବର୍ଷ ରାଜତ୍ୱ କରି ସେ ମାନବଲୀଳା ସମ୍ବରଣ କରିଥିଲେ ।

## ପୁରୁଷୋତ୍ତମ ସିଂହ (୧୭୬୮ ଖ୍ରୀ –୧୭୯୯ ଖ୍ରୀ)

ନାରାୟଣ ସିଂହ ଦେଓଙ୍କ ପରେ ପୁରୁଷୋତ୍ତମ ସିଂହ ଧରାକୋଟ ସିଂହାସନାରୋହଣ କଲେ । ସେ ଚନ୍ଦର ରାଜବଂଶରେ 'ଶକୁନ୍ତଳା ନାମୀ' ଏକ ରାଜକନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କ ଔରସରୁ ରାମଚନ୍ଦ୍ର ସିଂହ ଜନ୍ମ ଗ୍ରହଣ କରିଥିଲେ । ସେ ରାଜା ହେବାପରେ ନିଜ ପିତୃ ପିତାମହଙ୍କ ଜ୍ଞାତିତ ଭ୍ରାତୃବୃନ୍ଦ ଓ ଅନ୍ୟାନ୍ୟ ଅନ୍ତର ସାମନ୍ତ ପୁତ୍ର ମାନଙ୍କ ପାଇଁ ସ୍ୱତନ୍ତ୍ର ଗୃହ ନିର୍ମାଣ କରି ସେମାନଙ୍କର ଗ୍ରାସାଚ୍ଛାଦନ ପାଇଁ ପ୍ରଚୁର ଭୂସମ୍ପତ୍ତି ଖଞ୍ଜି ଦେଲେ । ପ୍ରଜାମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ରାଜ୍ୟରୁ ସ୍ୱେଚ୍ଛାଚାର ଦୂର କରି ସୁଶାସକ ବ୍ୟବସ୍ଥାକୁ ଦୃଢ଼କରିବାକୁ କେତେକ ପଦକ୍ଷେପ ନେଲେ । ରାଜାନଜେ

ରାଜ୍ୟର ସର୍ବମୟ କର୍ତ୍ତା ହେଲେ ମଧ ଗଣତାନ୍ତ୍ରିକ ବିଧି ବ୍ୟବସ୍ଥା ଅବଲମ୍ବନ କରି ପଣ୍ଡିତ ମୁଖିଆ ପ୍ରଜା ଓ ସାମନ୍ତ ମାନଙ୍କ ପରାମର୍ଶରେ ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ସେ ପ୍ରତ୍ୟେକ ବଡ଼ ବଡ଼ ଗ୍ରାମରେ ଜଣେ ଲେଖାଏଁ ଦଳ ବେହେରା ଓ ଜଗୁଆଳ ରଖାଇଲେ ଗ୍ରାମର ଆୟ ବ୍ୟୟ ବୁଝି ରାଜାଙ୍କୁ ଖବର ଦେବାକୁ ଚାରି ପାଞ୍ଚଖଣ୍ଡ ଗ୍ରାମକୁ ମିଶାଇ ଜଣେ ଲେଖାଏ ପାଞ୍ଜିଆ କରଣ ରଖିଲେ । ଶତ୍ରୁ କବଳରୁ ବିଶେଷତଃ ମରହଟ୍ଟା ଓ ପଠାଣମାନଙ୍କ ଆକ୍ରମଣ ଓ ଲୁଟ ପାଟ ଉପଦ୍ରବରୁ ପ୍ରଜାମାନଙ୍କୁ ରକ୍ଷାକରିବା ପାଇଁ ରାଜ୍ୟର ସୀମାନ୍ତବର୍ତ୍ତୀ ସ୍ଥାନରେ ପାଇକମାନଙ୍କୁ ନିଯୁକ୍ତ କରି ଏମାନଙ୍କ ଉପରେ ନାୟକ ଓ ସର୍ଦ୍ଦାର ମାନଙ୍କୁ ନିଯୁକ୍ତ କରି ଏମାନଙ୍କୁ ଫରି, ଖଣ୍ଡା, ଛୁରି, କଟୁରି ଓ ଠେଙ୍ଗା ଯୋଗାଇ ଯୁଦ୍ଧ ବିଦ୍ୟାରେ ତାଲିମ ଦେବା ବ୍ୟବସ୍ଥା କଲେ ।

ପ୍ରଜାମାନଙ୍କ ସୁବିଧା ସକାଶେ ପ୍ରତି ବଡ଼ ଗ୍ରାମରେ କମାର, ବଢ଼େଇ, ଧୋବା ଭଣ୍ଡାରି ଓ କୁମ୍ଭାର ଜାତିର ଲୋକଙ୍କୁ ରଖି ଗ୍ରାମବାସୀଙ୍କ ସେବା କରିବା ପାଇଁ ସେମାନଙ୍କୁ ନୌକର ଇନାମ ଦେଇଥିଲେ । କୃଷିର ଉନ୍ନତି କରି କୃଷିଜାତ ଦ୍ରବ୍ୟର ଉତ୍ପାଦନ ବଢ଼ାଇବା ପାଇଁ ମହିଷ, ଗାଈ ଓ ଛେଳି କିଣି ଗୌଡ଼ ମାନଙ୍କ ଦ୍ଵାରା କୁଆର କରାଇଲେ । ତା'ରି ଫଳରେ ଜମିରେ ଜୈବିକ ଖତ ଓ ଗୋବର ଖତ ପ୍ରୟୋଗ କରି ଜମିର ଉର୍ବରା ଶକ୍ତିକୁ ବଢ଼ାଇଲେ । ଜମିରେ ଜଳସେଚନ ପାଇଁ ପଣି ବନ୍ଧ, ହରିପୁର ଓ ଶ୍ରଦ୍ଧାପୁର ପ୍ରଭୃତି ବଡ଼ ବଡ଼ ଗ୍ରାମରେ ବନ୍ଧ ଖୋଳି ଓ ପର୍ବତ ପାଣିକୁ ଅଟକାଇବା ପାଇଁ ବଡ଼ ବଡ଼ ମାଟି ବନ୍ଧ ନିର୍ମାଣ କଲେ । ତାଙ୍କ ସମୟରେ ମଦ୍ରାସ ରାଜାଙ୍କ ସହିତ ନରେନ୍ଦ୍ରପୁର ଗ୍ରାମ ଅଧିକାର ନେଇ ବିବାଦ ଉପୁଜିଲା । ରାଜା ସଶସ୍ତ୍ର ସୈନ୍ୟମାନଙ୍କ ଦ୍ଵାରା ନରେନ୍ଦ୍ରପୁର ଅଧିକାର କରି ପୋଡ଼ଙ୍ଗି ଗ୍ରାମ ପର୍ଯ୍ୟନ୍ତ ନିଜର ଅଶ୍ଵାରୋହୀ ସୈନ୍ୟଙ୍କ ସହ ଅଗ୍ରସର ହେଲେ । ଇତ୍ୟବସରରେ ମଦ୍ରାସ ରାଜା ପୋଡ଼ଙ୍ଗି ଆସି ଧରାକୋଟ ରାଜାଙ୍କ ସହ ସନ୍ଧି ସ୍ଥାପନ କଲେ । ସେହି ଦିନଠାରୁ ପୋଡ଼ଙ୍ଗିର ଅର୍ଦ୍ଧାଂଶ ଧରାକୋଟର ଅନ୍ତର୍ଭୁକ୍ତ ହେଲା ଓ

ଅପର ଅର୍ଦ୍ଧାଂଶ ମହୁରୀ ରାଜ୍ୟରେ ମିଶି ରହିଲା । ରାଜ୍ୟ ଜୟର ସ୍ମାରକ ସ୍ୱରୂପ "କାଶୀପୁର" 'ନରେନ୍ଦ୍ରପୁର'ରେ ଥିବା ସମସ୍ତ ଜମି ସର୍ଦ୍ଦାର, ମହାରଥୀ ନାୟକ ଓ ପାଇକ ମାନଙ୍କୁ ଇନାମ ସ୍ୱରୂପ ଦାନ କରି ଦେଇଦେଲେ । ତାଙ୍କର ଅପୂର୍ବ ବିକ୍ରମବଳ ଓ ସାହସ ଯୋଗୁଁ କୃଷ୍ଣସିଂହ ତାଙ୍କ ବଂଶ ପରିଚୟ ପ୍ରସଙ୍ଗରେ ପୁରୁଷୋତ୍ତମ ଦେଓଙ୍କ ବିଷୟରେ ନିମ୍ନୋକ୍ତ ଦୁଇପଦ ଉଲ୍ଲେଖ କରିଛନ୍ତି—

"ନାରାୟଣ ସିଂହ ନରପତିଙ୍କ ସୁତ
ପୁରୁଷୋତ୍ତମ ସିଂହ ନୃପତି ବିଖ୍ୟାତ"

ରାଜା ପୁରୁଷୋତ୍ତମ ରାଜ୍ୟର ବହୁ ଭୂସମ୍ପତ୍ତି ବ୍ରାହ୍ମଣ ଓ ଦେବତା ମାନଙ୍କୁ ଦାନ କରିଥିଲେ । ସେ ଉତ୍କଳ ନୃପତିଙ୍କ ପଦାଙ୍କ ଅନୁସରଣ କରି ଜ୍ଞାନବନ୍ତ ବୁଦ୍ଧିମାନ ଓ ମନ୍ତ୍ରଣା ବିଶାରଦ ବ୍ରାହ୍ମଣମାନଙ୍କୁ ପୁରୀରୁ ଅଣାଇ ତିନିଗୋଟି ବ୍ରାହ୍ମଣ ଶାସନ ଦାନ କରିଥିଲେ । ଏହି ଶାସନ ଗୁଡିକ ଓ ତାଙ୍କ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ରାଜାମାନେ ପ୍ରତିଷ୍ଠା କରିଥିବା ଶାସନ ଗୁଡ଼ିକ ସମଗ୍ର ଧରାକୋଟର ବିଦ୍ୟାମୟ ଜ୍ଞାନ କେନ୍ଦ୍ର ଥିଲା ।

ଶାସନର ସ୍ଥାନ ନିରୂପଣ ବିଷୟରେ କବି ଉମ୍ବିମଦେବ ଜୀବଦେବ ଭକ୍ତ ଭାଗବତରେ ଲେଖିଛନ୍ତି " ଯାଗାନ୍ୱଧାୟି ବିବଧା ନପି ଶାସନାନଂ " । ସେ ସମୟରେ ଏହି ଶାସନ ବାସୀଙ୍କୁ ରାଜାମାନେ ଦୁଇପ୍ରକାର ଜମି ଦାନ କରୁଥିଲେ । ଏକ ଚକଡ଼ା ଦାନ, ଦୁଇ ଖଣ୍ଡିଆଦାନ । ଚକଡ଼ାଶାସନ ଦାନ ପୂର୍ବରୁ ରାଜା ଏକ ଯଜ୍ଞ କରୁଥିଲେ । ଏହି ଯଜ୍ଞ ଶେଷରେ ଯାଗକୁଣ୍ଡସ୍ଥ ଚତୁର୍ପାର୍ଶ୍ୱ ଜମି ପଦା, ତୋଟା, ନାଳ, ଲଟା ଆଦି ସମଦୂରତ୍ୱ ମଧ୍ୟରେ ଧାର୍ଯ୍ୟ ସଂଖ୍ୟକ କେତେ ଜଣ ବ୍ରାହ୍ମଣଙ୍କୁ ଦାନ କରାଯାଏ । ରାଜା ଏହି ଗ୍ରାମ ଗୃହ, ଜମି, ଭୂମି ଆଦି ସମସ୍ତ ନିର୍ମାଣ କରାଇ ଦାନାଧ୍ୟକ୍ଷଙ୍କୁ ଦାନପତ୍ର ଲେଖି ସମର୍ପଣ କରନ୍ତି । ଗ୍ରାମରେ ଗୃହ, ମଣ୍ଡପ, କନ୍ଧ, ବିକନ୍ଧ, ସ୍ଥାୟୀ, ଉପସ୍ଥାୟୀ, କୀଣ୍ଡ, ଚତୁଃପାଠୀ, ମନ୍ଦିର, ପୁଷ୍କରିଣୀ, ଯୋଡ଼, ବାଗବଗିଚା ସମିତି ଭବନ

ଆଦ ଶାସ୍ତ୍ରୀୟ ବଗୃର ଯେପର ଗଠନ କରାଯାଏ । ଏହି ଶାସନ ଭୂମିରେ କର ବା ଖଜଣା ଆଦୌ ନଥାଏ । ବିଶେଷ କରି ଶାସନ ବା ଗ୍ରାମ ପ୍ରତିଷ୍ଠା ଯେପର ବାସ୍ତୁବିଦ୍ୟାର ନିୟମାଧୀନ ପ୍ରଣାଳୀ ଅନ୍ୟତ୍ର କ୍ୱଚିତ୍ ଦେଖାଯାଏ । ଶାସନର ନିୟମାନୁଯାୟୀ ଏକ ବଖର ଘର ୭ ହାତ ୬ ଅଙ୍ଗୁଳ ଅର୍ଥାତ୍ ପ୍ରାୟ ୧୧ ଫୁଟ । ଏହି ଶାସନ ସାଧାରଣତଃ ଉତ୍ତର ଓ ଦକ୍ଷିଣ ଦୁଇ ସାହିରେ ବିଭକ୍ତ ହୋଇଥିଲା । ଗ୍ରାମର ଉତ୍ତର ସାହିର ଏକ ମଧ୍ୟବର୍ତ୍ତୀ ସ୍ଥଳରେ ଦାନାଧ୍ୟକ୍ଷଙ୍କ ଘର ରହିଥିଲା । ଗୃହ ସମ୍ମୁଖରେ ଦେଢ଼ବଖର ଓସାରର ଚତୁଃକୋଣ ମଣ୍ଡପ । ମଣ୍ଡପର ପୂର୍ବ ଦିଗରେ ଶାଳଗ୍ରାମ ଶିଳାନ୍ୟାସ କରାଯାଉଥିଲା । ଯଜ୍ଞ-ଯୂପ ସମ୍ମାନିତ ଭାବେ ରକ୍ଷା କରାଯାଉଥିଲା । ସେଇଠି ଯାଗ ଶେଷରେ ରାଜା ତାମ୍ର ଶାସନକୁ ଆସୀମାନ୍ତ ଭୂଭାଗ, ଗଛ, ମାଛ, ନିଧି, ନିଖାତ ସହିତେ ସର୍ବ ରାଜସ୍ୱ ଭୋଗିବାକୁ ଯାବଚନ୍ଦ୍ରାର୍କେ ଦାନାଧ୍ୟକ୍ଷଙ୍କ ହସ୍ତରେ ଅର୍ପଣ କରୁଥିଲେ । ଏହି ମଣ୍ଡପ କାଳ କାଳ ଧରି ସମ୍ମାନିତ ବିଦ୍ୱାନ୍ ବ୍ୟକ୍ତିଙ୍କର ସଭାସ୍ଥଳୀ ହୋଇଥିଲା । ପ୍ରମାଦରେ ମଧ୍ୟ ଏହି ମଣ୍ଡପରେ ବ୍ୟସନ ନିଷିଦ୍ଧ ଥିଲା । ଏହି ପୁଣ୍ୟ ଭୂମିର ଦାଣ୍ଡ ନଡ଼ିଆ ଗଛ ଦ୍ୱାରା ସୁଶୀତଳ ରହୁ-ଥିଲା । ଧ୍ୟାନ, ମନନ, ବେଦାଧ୍ୟୟନ ଓ ଶାସ୍ତ୍ରାଲୋଚନା ପାଇଁ ଏହା ପ୍ରଶସ୍ତ ଥିଲା ।

ରାଜ୍ୟରେ ପଣ୍ଡିତ, ଜ୍ଞାନୀ, ଧାର୍ମିକ ବ୍ୟକ୍ତିଙ୍କ ବ୍ୟତୀତ ରାଜ୍ୟର ଉନ୍ନତି ସୁଦୂର ପରାହତ ଭାବି ସେ ନିଜ ନାମରେ ଏକ ଶାସନ ଋଷିକୁଲ୍ୟା ନଦୀର ଉତ୍ତର ବାଙ୍କ ଗଙ୍ଗାପୁର ନିକଟରେ ଜଣେ କୁଳୀନ, ବୈଦିକ, ଧର୍ମନିଷ୍ଠ, ଆତ୍ରେୟ ଗୋତ୍ରଜ ଶ୍ରୀନିବାସ ରଥଙ୍କୁ ଦାନାଧ୍ୟକ୍ଷ ରୂପେ ବରଣ କରି ପ୍ରାୟ ୧୩୬୯ ଭରଣ ଏକ ଚକଡ଼ା ଭୂମି ୧୬୭୩ ଖ୍ରୀଷ୍ଟାବ୍ଦରେ ଦାନ କରିଥିଲେ । ଏହି କୃଷୋପଯୋଗୀ ଜମି ବ୍ୟତୀତ ଗ୍ରାମ ବସ୍ତି ପାଇଁ ୬୦ ଭରଣ, ପଥ ୧୦ ଭରଣ, ବନ୍ଧ ୭ ଭରଣ ଓ ନାଳ ପାଇଁ ୨୦ ଭରଣ ଜମି ଦାନ କରି-ଥିଲେ । ଉଲ୍ଲିଖିତ ବିଷୟ ୧୮୭୨ ଖ୍ରୀଷ୍ଟାବ୍ଦରେ ପ୍ରସ୍ତୁତ କରାଯାଇଥିବା ସରକାରୀ ବନ୍ଦୋବସ୍ତ ନଥିପତ୍ରରୁ ଜଣାଯାଏ । ଏହି ଶାସନଟି ଦାନାଧ୍ୟକ୍ଷଙ୍କ

ବ୍ୟତୀତ ଅନ୍ୟ ୧୪ ଜଣ ଶ୍ରୋତ୍ରୀୟ ବ୍ରାହ୍ମଣଙ୍କୁ ଦାନ କରାଯାଇ ଶାସନର ନାମ ଗଙ୍ଗାପୁର ଓରଫ ପୁରୁଷୋତ୍ତମପୁର ନାମରେ ନାମିତ କରାଗଲା ।

ଏହି ଗ୍ରାମ ନିକଟରେ ସ୍ୱୟମ୍ଭୁ ଚନ୍ଦ୍ରକଳେଶ୍ୱରଙ୍କ ପ୍ରସିଦ୍ଧ ମନ୍ଦିର ଅବସ୍ଥିତ । ଚନ୍ଦ୍ରକଳେଶ୍ୱରଙ୍କ ମହିମା ଯୋଗୁଁ ଗଞ୍ଜାମ ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ବହୁ ଭକ୍ତ କାର୍ତ୍ତିକ, ମାଘ ଓ ବୈଶାଖ ମାସର ସୋମବାର ଓ ପୂର୍ଣ୍ଣିମୀକୁ ଦର୍ଶନକୁ ଆସନ୍ତି । ଅଧିକାଂଶ ସମୟରେ ଭକ୍ତମାନେ ବହୁଦିନ ଅଧିଆ ପଡ଼ି ନିଜର ମନସ୍କାମନା ପୂରଣ କରିବାରେ ଶମ୍ଭୁଙ୍କ କୃପାରୁ ସକ୍ଷମ ହୋଇଥାନ୍ତି । ଏହି ଠାକୁରଙ୍କ ସମ୍ପର୍କରେ ଏକ କିମ୍ବଦନ୍ତୀ ଅଛି । ପୂର୍ବେ ଏ ଅଞ୍ଚଳ ଘୋର ଅରଣ୍ୟରେ ପୂର୍ଣ୍ଣଥିଲା । ଗୋରୁ ଗାଈଙ୍କ ଚରଣ ଭୂମିଥିଲା । ଥରେ ଏକ ଦୁଧିଆଳୀଗାଈର ଖୁରା ବାଜିବାରୁ ପ୍ରୋଥିତ ଚନ୍ଦ୍ରକଳେଶ୍ୱରଙ୍କ ଲିଙ୍ଗ ଦୃଶ୍ୟ ହେଲା । ମହାପ୍ରଭୁଙ୍କ ସ୍ୱପ୍ନାଦେଶରେ ଏହାଙ୍କ ମନ୍ଦିର ନିର୍ମିତ ହେଲା । ଅଦ୍ୟାପି ଲିଙ୍ଗ ଉପରେ କ୍ଷୀଣ ଗାଈଖୁରାର ଚିହ୍ନ ପରିଲକ୍ଷିତ ହୁଏ । ଧରାକୋଟର ରାଜାମାନେ ପ୍ରତି କାର୍ତ୍ତିକ ମାସ ଓ ଅନ୍ୟାନ୍ୟ ଯାନିଯାତ୍ରା ସମୟରେ ଏଠାକୁ ନିଜେ ହୋଇ ଶମ୍ଭୁଙ୍କ ପୂଜା ଆରାଧନା କରିଥାନ୍ତି । ଶମ୍ଭୁଙ୍କ ଭୋଗରାଗ ପାଇଁ ରାଜା ପୁରୁଷୋତ୍ତମଦେବ, ଶାସନବାସୀ ଓ ରାଜ୍ୟର ବହୁ ଭକ୍ତ ଭୂମି ଦାନ କରିଛନ୍ତି ।

ଉପରୋକ୍ତ ଶାସନ ବ୍ୟତୀତ ସେ ନିଜ ମାତା ତିଳୋତ୍ତମାଦେଇଙ୍କ ନାମରେ ଅନ୍ୟ ଏକ ଶାସନ ମଧ୍ୟ ୧୬୭୭ ଖ୍ରୀଷ୍ଟାବ୍ଦରେ ଋଷିକୁଲ୍ୟା ନଦୀର ଉତ୍ତର ତୀରରେ ପ୍ରତିଷ୍ଠା କରିଥିଲେ । ଏହି ଦାନ 'ଖଣ୍ଡିଶିଆ' ଦାନ ରୂପେ ପରିଗଣିତ । ବର୍ତ୍ତମାନ ନଦୀ ତଟରେ ଗ୍ରାମର ସୁଶୋଭିତ ବୈଦ୍ୟନାଥ ମହାପ୍ରଭୁଙ୍କ ମନ୍ଦିର ଅବସ୍ଥିତ । ଏହି ମନ୍ଦିର ନିକଟରେ ଏକ ମନୋରମ ମନ୍ଦିରରେ ବିକଟକାୟ ଏକ ବିରାଟ କାଳୀମୂର୍ତ୍ତି ପୂଜା ପାଉଛନ୍ତି । ଆମ୍ବ, ପନସ, ଚମ୍ପା, ବକୁଳ ପ୍ରଭୃତି ବୃକ୍ଷ ସମୂହ ସ୍ଥାନର ପ୍ରାକୃତିକ ଶୋଭାକୁ ପରିବର୍ଦ୍ଧନ କରିପାରିଛି ।

ସେ ନିଜର ପିତାମହ ରାୟସିଂହ ଓ ତାଙ୍କର ଅନ୍ୟ ଗୃଣ ଭାଇଙ୍କ ଏକାନ୍ତ କର୍ମନିଷ୍ଠା, ପରସ୍ପର ସହଯୋଗିତା ଯୋଗୁଁ ରାଜ୍ୟର ସାମୂହିକ ଉନ୍ନତି ହୋଇଥିବା ଉପଲବ୍ଧି କରି ସେମାନଙ୍କ ସ୍ମୃତି ରକ୍ଷା ପାଇଁ ଦିବ୍ୟ-ସିଂହ ଦେବଙ୍କ ୩ ଅଙ୍କ ବୈଶାଖ ଶୁକ୍ଳ ୧୫ ସୋମବାର ଦିନ ସର୍ବ-କବିଚନ୍ଦ୍ରଙ୍କୁ ପଞ୍ଚସିଂହପୁର (ଖାଟିଗୁଡ଼ା) ଗ୍ରାମ ତା ୧୨—୫—୧୭୭୯ରେ ଦାନ କରିଥିଲେ । ଏହି ଶାସନ ଋଷିକୂଲ୍ୟା ନଦୀର ଦକ୍ଷିଣ ତୀରରେ ଅବସ୍ଥିତ । ଏହି ଏକ ଚକଡି ବ୍ରହ୍ମୋତ୍ତର ଦାନ ପ୍ରାୟ ୮୦୦ ଭରଣ ହେବ । ଏହି ଶାସନର ପଶ୍ଚିମ ମୁଣ୍ଡରେ ଓ ମୁଣ୍ଡମରାଇ ଗ୍ରାମର ପୂର୍ବ ଦିଗରେ ପ୍ରସିଦ୍ଧ ନୀଳକଣ୍ଠେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ । ଏହି ମହାପ୍ରଭୁଙ୍କ ବିରାଟ, ସୁବିସ୍ତୃତ ଓ ସୁଦୃଢ଼ ମନ୍ଦିର ଏହି ଗ୍ରାମର ଦାନାଧ୍ୟକ୍ଷଙ୍କ ବଂଶଧର ତଥା ମକଦମ ସ୍ୱର୍ଗୀୟ ନୀଳକଣ୍ଠେକର ପଟ୍ଟଜ୍ୟୋତିର୍ଦ୍ଦୀଙ୍କ ଦ୍ୱାରା ଊନବିଂଶ ଶତାବ୍ଦୀର ଶେଷ ଦଶକରେ ନିର୍ମିତ ହୋଇଛି ।

ରାଜା ନିଜର ଇଷ୍ଟଦେବୀ ଶ୍ରୀ ସିଦ୍ଧକୋଠାରୀ ଓ କନକ ଦୁର୍ଗାଙ୍କ ବଡ଼ ଭକ୍ତ ଥିଲେ । ବହୁକାଳ ପର୍ଯ୍ୟନ୍ତ ସେ ପୁତ୍ର ସନ୍ତାନ ଲାଭରୁ ବଞ୍ଚିତ ଥିଲେ । ଦେବୀଙ୍କ କୃପାରୁ ତାଙ୍କର ଦୁଇପୁତ୍ର ଜନ୍ମ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ ରାମଚନ୍ଦ୍ର ବଡ଼ ଓ ନୃସିଂହ ସାନ ।

ବ୍ରତଙ୍କ ମଧ୍ୟେ ଏକାଦଶୀ
ବୃକ୍ଷଙ୍କ ମଧ୍ୟେ ମୁଁ ତୁଳସୀ

ଏହି ବାକ୍ୟରେ ତାଙ୍କର ପ୍ରଗାଢ଼ ଭକ୍ତି ଓ ବିଶ୍ୱାସ ଥିଲା । ସେ ଉଭୟ ଶିବ ଓ ବିଷ୍ଣୁଙ୍କର ମଧ୍ୟ ପରମ ଭକ୍ତଥିଲେ । ଏଣୁ ଏକାଦଶୀ ବ୍ରତ ବାରବର୍ଷ ପର୍ଯ୍ୟନ୍ତ କରି ଏହି ବ୍ରତର ଉଦ୍‌ଯାପନ ପୁରୀ କ୍ଷେତ୍ରରେ କରି ବେଢ଼ା ଭିତରେ ଦାନ ଓ ବ୍ରାହ୍ମଣ ଭୋଜନର ବ୍ୟବସ୍ଥା କରିଥିଲେ । ତାଙ୍କର ଏହି ଭକ୍ତି ଭାବରେ ପ୍ରୀତହୋଇ ପୁରୀର ତଦାନିନ୍ତନ ରାଜା ବଳଭଦ୍ର ଦେବ ରାଜାଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଥିଲେ ।

ସେ ପରମ ଧାର୍ମିକ ଥିଲେ ଓ ଓଡ଼ିଆ ଧର୍ମ ସାହିତ୍ୟ ପ୍ରତି ତାଙ୍କର ପ୍ରଗାଢ଼ ଅନୁରାଗ ଥିଲା । ଏଣୁ ତାଙ୍କ ଦ୍ୱାରା ପ୍ରୋତ୍ସାହିତ ହୋଇ ମଙ୍ଗଳପୁରର ବୈଷ୍ଣବ କବି କାହ୍ନୁ ଦାସ ରାଜାଙ୍କୁ ରାମରସାମୃତ ପାନ କରାଇବା ପାଇଁ ଓଡ଼ିଆରେ ଏକ କ୍ଷୁଦ୍ର ରାମାୟଣ ରଚନା କରିଥିଲେ । ରାଜା ନିଜର ଶୌର୍ଯ୍ୟ, ବୀର୍ଯ୍ୟ, ଦାନଶୀଳତା ଓ ଧର୍ମାନୁରାଗିତା ଯୋଗୁଁ ଧରାକୋଟ ଇତିହାସରେ ଚିରସ୍ମରଣୀୟ ହୋଇ ରହିଛନ୍ତି ।

## କାହ୍ନୁ ଦାସ

ଧରାକୋଟ ରାଜ୍ୟ ଅନ୍ତର୍ଗତ ଋଷିକୁଲ୍ୟାର ଉତ୍ତରପାର୍ଶ୍ୱବର୍ତ୍ତୀ ମଙ୍ଗଳପୁର ଗ୍ରାମରେ ଏକ ବ୍ରାହ୍ମଣ ପରିବାରରେ କାହ୍ନୁ ଦାସ ୧୭୬୮ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ତାହାଙ୍କ ପିତାଙ୍କ ନାମ ରଘୁନାଥ ମହାପାତ୍ର । କିମ୍ବଦନ୍ତୀରୁ ଜଣାଯାଏ ତାଙ୍କର ପୂର୍ବ ପୁରୁଷଗଣ ପରମ୍ପରା କ୍ରମେ ଧରାକୋଟ ରାଜା ମାନଙ୍କର ପାତ୍ର ମନ୍ତ୍ରୀ ଥିଲେ । କବିଙ୍କ ଜୀବନକାଳ ଭିତରେ ଧରାକୋଟରେ ପ୍ରବଳ ପ୍ରତାପୀ ଦାନବୀର ରାଜା ପୁରୁଷୋତ୍ତମ ସିଂହ ଓ ଧର୍ମବୀର ରାଜା ରାମଚନ୍ଦ୍ର ସିଂହ ରାଜତ୍ୱ କରୁଥିଲେ ।

ତାଙ୍କର ପ୍ରକୃତ ନାମ କାହ୍ନୁଚରଣ ମହାପାତ୍ର କିନ୍ତୁ ବୈଷ୍ଣବୋଚିତ ପରମ୍ପରା ରକ୍ଷାକର ପରବର୍ତ୍ତୀ କାଳରେ ନିଜକୁ କାହ୍ନୁ ଦାସ ନାମରେ ଅଭିହିତ କରିଥିଲେ । ସେ ଆବାଲ୍ୟରୁ ବୁଦ୍ଧିମାନ ଓ କବିତା ପ୍ରିୟ ଥିଲେ । ବାଲ୍ୟକାଳରୁ ଧର୍ମରେ ତାଙ୍କର ମତି ଥିଲା । ଏଣୁ ବାଲ୍ୟକାଳରୁ ରାମାୟଣ ଓ ମହାଭାରତ ପଠନ ଓ ଶ୍ରବଣରେ ଆଗ୍ରହ ପ୍ରକାଶ କରୁଥିଲେ । ଏଣୁ ଯୁବାବସ୍ଥାରେ ସେ ନବାକ୍ଷରୀ ପଦ୍ୟରେ "ଶ୍ରୀ ରାମରସାମୃତ ସିନ୍ଧୁ ରାମାୟଣ" ନାମକ ଏକ ଗ୍ରନ୍ଥ ସଂକ୍ଷେପରେ ଲେଖିଯାଇଛନ୍ତି । ଏହି ଗ୍ରନ୍ଥଟି ୧୦୮ ଗୋଟି ଅଧ୍ୟାୟରେ ସମ୍ପୂର୍ଣ୍ଣ ହୋଇଛି ଏବଂ ପ୍ରତି ଅଧ୍ୟାୟ ୧୦୮ ପଦରେ ଲିଖିତ ହୋଇଛି । କବି ପୁରାଣ ପଠନ, ଜପ ଇତ୍ୟାଦି ବିଧି ପ୍ରତି ଦୃଷ୍ଟି ରଖି ଗ୍ରନ୍ଥ

ରଚନା କରିଥିବା ବୋଧହୁଏ । ପୁସ୍ତକ ରଚନା ବେଳକୁ କବିଙ୍କୁ ୩୦ ବର୍ଷ ହୋଇଥିଲା । ସେ ପ୍ରଥମ ବିବ୍ୟସିଂହଙ୍କ ୧୩ ଅଙ୍କରେ ଅର୍ଥାତ୍ ୧୬୯୯ ଖ୍ରୀଷ୍ଟାବ୍ଦରେ ତାଙ୍କ ରଚନା ଶେଷ କରିଥିବା ବିଷୟ କବି ପ୍ରକାଶ କରିଛନ୍ତି । ଏହି ଗ୍ରନ୍ଥଟି ୧୯୩୦ ଖ୍ରୀଷ୍ଟାବ୍ଦରେ କଟକ ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ହୋଇଥିଲା । କବି ତାଙ୍କ ଜନ୍ମ ଓ ବଂଶ ପରିଚୟ ସମ୍ବନ୍ଧରେ ରାମାୟଣରେ ନିମ୍ନମତେ ଉଲ୍ଲେଖ କରିଛନ୍ତି ।

ନରେନ୍ଦ୍ର ମୁକୁନ୍ଦଦେବଙ୍କ - କୁଶଳ ପଞ୍ଚବିଂଶ ଅଙ୍କ
ଶ୍ରାବଣ ମାସାଦ୍ୟ ପକ୍ଷରେ - ଏକାଦଶମୀ ରବିବାରେ
ରଜନୀ ସପ୍ତଦଣ୍ଡପୂର୍ଣ୍ଣେ - ମୋର ଜନମ ଶୁଭ ଲଗ୍ନେ
ସେ ରଘୁନାଥ ମହାପାତ୍ର - ବ୍ରାହ୍ମଣ ବଂଶରେ ପବିତ୍ର
ନୀଳାଦ୍ରୀ ପଶ୍ଚିମ ପାଶର - ଉତ୍କଳ ଦେଶେ ଜନ୍ମ ମୋର
ରାଜ୍ୟର ଧରାକୋଟ ନାମ - ମଙ୍ଗଳପୁର ଗ୍ରାମ ନାମ
ରାଜ୍ୟର ଅଟଇ ସେ ପାଟ - ଗ୍ରାମ ମାନଙ୍କରେ ସେ ଶ୍ରେଷ୍ଠ

× × × ×

ତ୍ରିବଂଶ ଅବିଦ ବୟସ - କାଳରେ ଏଗ୍ରନ୍ଥ ପ୍ରକାଶ
କଳି ସଂସାର ଜନହିତେ - ଶୁଣି ହରଷ ସର୍ବଚିତ୍ତେ

କବି ଏହି ଗ୍ରନ୍ଥରେ ଓଡ଼ିଶାର ଲୋକ ପ୍ରିୟ ବାଣୀକୁ ନିଜ କାବ୍ୟର ଛନ୍ଦ ରୂପେ ବ୍ୟବହାର କରିଥିବାରୁ ଓ ସର୍ବସାଧାରଣ ଲୋକପ୍ରିୟ ଭାଷାରେ ଲେଖିଥିବାରୁ ଗ୍ରନ୍ଥଟି ବିଶେଷ ଲୋକପ୍ରିୟ ହୋଇପାରିଛି । ସାରଳାଦାସ ଓ ପଞ୍ଚସଖା ଯୁଗର କବିମାନଙ୍କୁ ଛାଡ଼ିଦେଲେ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଓଡ଼ିଆ ସାହିତ୍ୟରେ ବିଶେଷ କାବ୍ୟ କବିତା ଲେଖାଯାଇ ନଥିଲା । ଯେଉଁ କେତେକ କାବ୍ୟ କବିତା ଲେଖା ଯାଇଥିଲା ତାହା ରାଧାକୃଷ୍ଣଙ୍କ ପ୍ରେମ

ସମ୍ପର୍କିତ ଥିଲା । ସେ ସମୟରେ ପାଣ୍ଡିତ୍ୟର ପରାକାଷ୍ଠା ନିରୂପଣ ପାଇଁ ରାମାୟଣରେ ଜ୍ଞାନ ଲାଭ କରିବା ଏକ ଅପରିହାର୍ଯ୍ୟ ଅଙ୍ଗରୂପେ ବିବେଚିତ ହେଉଥିଲା । ଓଡ଼ିଆ ବା ପ୍ରାକୃତ ଭାଷାର ଆଦର ମଧ୍ୟ ଖୁବ୍ କମ୍ ଥିଲା । ସଂସ୍କୃତ ଭାଷାର ପୃଷ୍ଠପୋଷକ ରାଜନ୍ୟ ଥିଲା । ପ୍ରାକୃତ ଭାଷା ପଢ଼ିବା ପାଇଁ ଲୋକେ ଘୃଣା କରୁଥିଲେ । ତଥାପି ସେ ସ୍ୱତଃ ପ୍ରବୃତ୍ତ ଭାବେ ନୂତନ ସୃଷ୍ଟିର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଦେଶୀୟ ଭାଷାରେ ନୂତନ ଆଦର୍ଶ ରଖି-ଯିବା ପାଇଁ ମନ ବଳାଇଲେ । ତାଙ୍କ କୃତିତ୍ୱ ପରବର୍ତ୍ତୀ ସମୟରେ ବହୁ କୃତି କବି ଓଡ଼ିଆ ଲେଖକଙ୍କୁ ସ୍ୱ ପ୍ରାନ୍ତୀୟ ଭାଷାରେ ଉଚ୍ଚକୋଟିର ଗ୍ରନ୍ଥ ଲେଖିବାକୁ ପ୍ରେରଣା ଦେଇଥିଲା, ଏଥିରେ ସନ୍ଦେହ ନାହିଁ ।

କବିଙ୍କର ଉଭୟ ଓଡ଼ିଆ ଓ ସଂସ୍କୃତ ଭାଷାରେ ପାଣ୍ଡିତ୍ୟ ଥିଲା । ସେ ରାମଚନ୍ଦ୍ରଙ୍କ ଅପାର ମହିମା ଓ ପ୍ରସାଦରୁ ଏହି ରଚନା କରିଥିବା ବିଷୟ ତାଙ୍କ *କାବ୍ୟରେ ଉଲ୍ଲେଖ କରିଛନ୍ତି । ସେ ବାଲ୍ମୀକି ମହର୍ଷିଙ୍କ ସଂସ୍କୃତ ରାମାୟଣର ଅବିକଳ ଅନୁବାଦ କରିନାହାଁନ୍ତି । ମୂଳ ରାମାୟଣର ବିଶିଷ୍ଟ ବିଷୟ ଗୁଡ଼ିକୁ ଅବତାରଣା କରିଥିଲେହେଁ ବିଭିନ୍ନ ଚରିତ୍ର, ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା, ସାମାଜିକ ଚିତ୍ର ଓ ଭାବପ୍ରକାଶରେ ନିଜ ମାତୃଭାଷାର ମୌଳିକତା ରକ୍ଷାକରି ପାରିଛନ୍ତି ।

ତାଙ୍କ କବିତ୍ୱ ଶକ୍ତିର ସ୍ଫୁର୍ତ୍ତି ସମ୍ବନ୍ଧରେ ଦୈବୀ ଶକ୍ତିର ଅବତାରଣା ଶୁଣାଯାଏ । କବି ଜଣେ ପରମ ବୈଷ୍ଣବ ଥିଲେ । ସେ ରାମଙ୍କ ପରମ ଭକ୍ତ ଥିବା ହେତୁ ତାଙ୍କ ନାମ ଶ୍ରବଣ ଓ କୀର୍ତ୍ତନରେ ଅତ୍ୟନ୍ତ ପୁଲକିତ ହୋଇ ଉଠୁଥିଲେ ଓ ରାମଚନ୍ଦ୍ର ତାଙ୍କ ହୃଦୟରେ ବସି ଯାହା କହୁଥିଲେ ସେ ତାହା ଲେଖୁଥିଲେ ବୋଲି ଉଲ୍ଲେଖ କରିଛନ୍ତି ।

କେବଳ ଏତେ ମହାଭାଗ୍ୟ — ରାମଙ୍କୁ ମୋର ଅତି ଶ୍ଳାଘ୍ୟ
ଏଣୁ ମୋ ହୃଦେ ରାମ ବସି — ନିଜ ମହିମା ପରକାଶି

ମୋହର ନୁହଇ ଆୟତ୍ତ — ଯାହା କହିଲେ ମୋତେ ନାଥ
ମୁଁ ତାହା ଅନୁଭବ କରି — ରଚିଲି ସୁପ୍ରବନ୍ଧ କଣ୍ଠ ।

ଷୋଡ଼ଶ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ସାରଳା ଦାସଙ୍କ ବିଲଙ୍କା-ରାମାୟଣ, ବଳରାମ ଦାସଙ୍କ ଜଗମୋହନ ରାମାୟଣ ବ୍ୟତୀତ ଅନ୍ୟ କୌଣସି ଲେଖକ ରାମ ନାମର ମାହାତ୍ମ୍ୟ ପ୍ରଚାର କରି ରାମ ଭକ୍ତିର ଧାରାର ସ୍ରୋତକୁ ପ୍ରଖର କରି ନାହାଁନ୍ତି । କବି ମହେଶ୍ୱର ଦାସ ଟିକା ରାମାୟଣ ଜଗମୋହନ ରାମାୟଣ ଅବଲମ୍ବନରେ ରଚନା କରିଥିଲେ । ତାଙ୍କର ଶିଷ୍ୟ ହଳଧର ଦାସ ୧୬୮୨ ଖ୍ରୀଷ୍ଟାବ୍ଦରେ ଅଧ୍ୟାତ୍ମ ରାମାୟଣ ଅନୁବାଦ କରିଥିଲେ । ଘୁମୁସର ରାଜା ଧନଞ୍ଜୟ ଭଞ୍ଜ ରଘୁନାଥ ବିଳାସ ନାମକ ଏକ ଉପାଦେୟ ରାମ କାବ୍ୟ ଲେଖିବା ଦ୍ୱାରା ଓଡ଼ିଶାରେ ରାମ ଭକ୍ତି ଧାରା ଗତିଶୀଳ ହୋଇଥିଲା ।

କାହ୍ନୁ ଦାସ ବଳରାମ ଦାସଙ୍କ ଜଗମୋହନ ରାମାୟଣର ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କ ରାମାୟଣ ରଚନା କରିଥିବା ବିଷୟ ଉତ୍ତରାକାଣ୍ଡରୁ ଆଭାଷ ମିଳେ । ଉକ୍ତ ଗ୍ରନ୍ଥ ପାଠକଲେ ପ୍ରତିପନ୍ନ ହୁଏ ସେ ଜଣେ ସ୍ୱଦେଶା-ନୁରାଗୀ ଥିଲେ ଓ ସେ ଦେଶୀୟ ଭାଷାରେ ପୁରାଣ ଲେଖିବାର ପ୍ରୟୋଜନୀୟତା ଉତ୍ତମ ରୂପେ ଉପଲବ୍‌ଧି କରି ପାରିଥିଲେ । ଏହି ଗ୍ରନ୍ଥରେ ସେ ଲେଖିଛନ୍ତି-

ଯାହା ସେ ବଳରାମ ଦାସ — ପ୍ରାକୃତ କଲେକ ପ୍ରକାଶ
ଆଦି ଅଯୋଧ୍ୟା ଆରଣ୍ୟକ — ସୁନ୍ଦର କିଷ୍କିନ୍ଧ୍ୟା ବିଲଙ୍କ
ଉତ୍ତରକାଣ୍ଡ ଏ ସପତ — ଖଣ୍ଡ ଏ ଅପୂର୍ବ ଚରିତ
ଗୁପତେ ଲିଭା ହେବ ବୋଲି — ମୁଁ ଏହା ଏକ ଖଣ୍ଡ କଲି ।

ସେ ଜଣେ ଉଚ୍ଚକୋଟିର ଭକ୍ତ କବି ଥିଲେହେଁ, ନିଜର କବି ସୁଲଭ ସୌଜନ୍ୟ ରକ୍ଷା କରି ନିଜକୁ ଅପଣ୍ଡିତ, ମୂର୍ଖ ଓ ଅଯଶୀ ବୋଲି କହି ନିଜର ସାଧୁତା, ସରଳତା ଓ ବିନମ୍ରତାର ପରିଚୟ ଦେଇଛନ୍ତି ।

ଯଥା :—ବ୍ରାହ୍ମଣ କୁଳେ ଜନ୍ମ ହୋଇ – ପାଠ ପଠନେ ମୋର ନାହିଁ
ଜନ୍ମରୁ ସାଧୁ ସଙ୍ଗ ନାହିଁ —ବିଷ୍ଣୁରେ ଭକ୍ତି ମୋର କାହିଁ
ମୁଁ ମୂଢ଼ ବାଳବଧୂ ଭାବ – ଶୁଦ୍ଧ ଅଶୁଦ୍ଧ ଯେବେ ହେବ
ସେ ଦୋଷ ନଧରିବ ମୋରେ – ଏତିକ ମାଗୁଣି ମୋହରେ ।

ଭକ୍ତ କବିଙ୍କ ଦୃଷ୍ଟିରେ ରାମଚନ୍ଦ୍ର, କୃଷ୍ଣଚନ୍ଦ୍ର, ଜଗନ୍ନାଥ ଓ ବଳଭଦ୍ର ପ୍ରଭୃତି ଅଭିନ୍ନ ଥିଲେ । ପୁରୀ କ୍ଷେତ୍ରରେ ବିଜେ ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରି କବି ଜଗନ୍ନାଥଙ୍କର ମଧ୍ୟ ପରମ ଭକ୍ତ ରୂପେ ନିଜକୁ ପରିଚିତ କରାଇବା ସଙ୍ଗେସଙ୍ଗେ ନିଜ ଉତ୍କଳୀୟତାର ପରିଚୟ ଦେଇଛନ୍ତି । ନିମ୍ନୋକ୍ତ କେତୋଟି ପଦରୁ ତାହା ଜଣାଯାଏ :–

କ୍ଷେତ୍ରାଧି ଶ୍ରୀ ପୁରୁଷୋତ୍ତମ — ମଣ୍ଡଳ ସର୍ବ ତୀର୍ଥ ନାମ
ଲବଣ କ୍ଷୀର ନଦୀ ତଟ ତଟ – କଳପବଟ ତା ନିକଟ
ନୀଳ ଶିଖର ଶିଖେ ବିଜେ — ଦେବାଧିଦେବ ଦେବରାଜେ
ଶ୍ରୀ ଜଗନ୍ନାଥ କୃଷ୍ଣଚନ୍ଦ୍ର — ଶ୍ରୀମୁଖ ନିନ୍ଦେ ପୂର୍ଣ୍ଣଚନ୍ଦ୍ର ।
ସଙ୍ଗେ ଅଗ୍ରଜ ବଳରାମ — ମହିମା ବର୍ଣ୍ଣିନେ କେଶମ
ରେବତୀକାନ୍ତ ସୁପ୍ରସନ୍ନ — ଭକ୍ତେ କରନ୍ତି ମୋକ୍ଷ ଦାନ
ସୁଭଦ୍ରା ବରନ ହରିଦ୍ର – ବଦନ ଶରଦର ଚନ୍ଦ୍ର ।

ଏହି ଛନ୍ଦରେ ଶିବ ପ୍ରବକ୍ତା ଓ ପାର୍ବତୀ ଶ୍ରୋତା ଅଟନ୍ତି । ଦିନେ କପିଳାସରେ ପଞ୍ଚାନନ ରାମ ନାମ ଭଜନା କରୁଥିବା ଦେଖି ପାର୍ବତୀ ତାର କାରଣ ପତିଙ୍କୁ ପଚାରିବାରୁ ଶିବ ରାମାବତାରର କାରଣ ପାର୍ବତୀଙ୍କୁ କହିଲେ । ବାଲ୍ମୀକି ରାମାୟଣ ପରି କବିଙ୍କ ରାମାୟଣରେ କାଣ୍ଡ ସଂଖ୍ୟା ଓ କାଣ୍ଡ ନାମ ଅନୁକ୍ରମଣିକା ଠିକ୍ ରଖିଛନ୍ତି । ପ୍ରତ୍ୟେକ କାଣ୍ଡର ସାରକଥାକୁ ଅବଲମ୍ବନ କରି କବି ତାଙ୍କ ରାମାୟଣ ଲେଖିଛନ୍ତି । ତାଙ୍କ ରାମାୟଣରେ

ପ୍ରଚଳିତ ବାସ୍ତବ ବିଷୟର ବହୁ ବର୍ଣ୍ଣନା ଓ ଆଲୋଚନା ଥିବାରୁ ଓ ସେଗୁଡ଼ିକ ଅତ୍ୟନ୍ତ ସରଳ ଭାଷାରେ ଲିଖିତ ହୋଇଥିବାରୁ ଧାର୍ମିକ ଜନତା ଏହା ବାରମ୍ବାର ପାଠକରି ରାମରସାମୃତ ପାନ କରି ଅଶେଷ ଆନନ୍ଦ ଅନୁଭବ କରୁଛନ୍ତି । ମୂଳ ଗ୍ରନ୍ଥର କେତେକ ବିଷୟ ତ୍ୟାଗକରି କବି ଅନ୍ୟ ପୁରାଣରୁ କେତେକ ପ୍ରସଙ୍ଗ ଏହି ପୁରାଣରେ ବର୍ଣ୍ଣନା କରିଛନ୍ତି । ଗଙ୍ଗାଙ୍କ ପୃଥିବୀରେ ଅବତରଣ ପ୍ରସଙ୍ଗରେ ଗଙ୍ଗାଙ୍କୁ "ଐରାବତ ହସ୍ତୀ" ରମଣ ପ୍ରାର୍ଥନା କରିବା ପରେ ନିଜେ ଗଙ୍ଗାସ୍ରୋତରେ ଭସିଯାଇ ଏକ ସ୍ଥାନରେ କୂଳରେ ଲଗିଲେ । ଏହି ସ୍ଥାନଟିର ନାମ ହସ୍ତିନାପୁର ହେଲା । ଏହି ବିଷୟ ମୂଳ ରାମାୟଣରେ ନାହିଁ । କବି ନିଜ ରାମାୟଣରେ ସମାଜର ଚିତ୍ର ଅଙ୍କନ କରିବାକୁ ଯାଇ ସ୍ୱସମ ସାମୟିକ ଯୁଗ ଓ ସ୍ୱଦେଶ ସମାଜର ଚିତ୍ରକୁ ଅଙ୍କନ କରିଛନ୍ତି ।

କଳିଯୁଗରେ କ୍ଷତ୍ରୀୟ ଓ ବ୍ରାହ୍ମଣ ବହୁକୁଟୁମ୍ବୀ ହେବା ପୂର୍ବ ଜନ୍ମ ପାପର ଫଳ ବୋଲି ସେ ଉଲ୍ଲେଖ କରିଛନ୍ତି । ଯାହା ସଂସ୍କୃତ ରାମାୟଣରେ ନାହିଁ । ସୁନ୍ଦରାକାଣ୍ଡରେ ରାମ ଓ ବିଭୀଷଣ କଥୋପକଥନରେ ବିଭୀଷଣ ତୁଣ୍ଡରେ ଏହା କୁହାଯାଇଛି ।

ଯେବେଟି ଶ୍ରୀରାମ ଛାମୁରେ - କପଟ ଥିବ ମୋ ହୃଦରେ
କଳି ଯୁଗରେ ହେବି ନୃପ - ବହୁ କୁଟୁମ୍ବୀ ମୂଢ଼ ବିପ୍ର ।

ବନବାସ ସମୟରେ ରାମଚନ୍ଦ୍ର ଓ ସୀତା ଦଶରଥଙ୍କ ମୃତ୍ୟୁପରେ ଗୟାରେ ପିଣ୍ଡଦାନ କରିବା ପରେ ବ୍ରାହ୍ମଣମାନେ ବହୁ ଦକ୍ଷିଣା ମାଗିବା, ବାଟ ଓଗାଳିବା ଓ ରାମଚନ୍ଦ୍ର ଜଣେ ତାପସୀ ଥିବା ହେତୁ ବହୁ ଦକ୍ଷିଣା ଦେବା ପାଇଁ ନିଜର ଅସାମର୍ଥ୍ୟ ପ୍ରକାଶ କରିବା ସତ୍ତ୍ୱେ ବ୍ରାହ୍ମଣମାନେ ରାମଚନ୍ଦ୍ର ଓ ସୀତାଙ୍କ ପଛେ ପଛେ ବହୁ ଦୂରଯାଏ ଅନୁଗମନ କରି ପରିଶେଷରେ ସୀତାଙ୍କ ପଣତ କାନି ଭିଡ଼ି ଧରି ଦକ୍ଷିଣା ମାଗିବା ଚିତ୍ର ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି । ଏହି ଯୁଗରେ ଭାରତ ତଥା ଓଡ଼ିଶାର ବହୁ

ତୀର୍ଥରେ ପଣ୍ଡା ଓ ବ୍ରାହ୍ମଣମାନେ ବହୁ ତୀର୍ଥଯାତ୍ରୀଙ୍କୁ ଦକ୍ଷିଣା ପାଇଁ ବହୁ ହଇରଣ ହରକତ କରିବାର ଏକ ବାସ୍ତବ ଚିତ୍ର ଦେଇଛନ୍ତି । ଦକ୍ଷିଣା ପାଇଁ ତୀର୍ଥ ବ୍ରାହ୍ମଣମାନଙ୍କ ପ୍ରତି ରାମଚନ୍ଦ୍ର ଗଭୀର କ୍ଷୋଭ ପ୍ରକାଶ କରି ଅଭିଶାପ ବର୍ଷଣ କରିଛନ୍ତି । ଯଥା :–

ମୁଁ ଯେତେ କାଳ ଯାଇଁଥିବି—ଏ ଟେଥୁଁ କ୍ଷେତ୍ରେ ନ ଆସିବ
ଏ ଦେଶେ ମୃତ୍ୟୁ ଯେ ଲଭିବ – ଗର୍ଦ୍ଦଭ ଜନ୍ମ ସେହୁ ହେବ
ଏ ବିପ୍ରେ ଚଣ୍ଡାଳ ସମାନ —ଯେତେ ଅର୍ଜିଲେ ହେବେ ହୀନ ।

ଏତଦ୍ ବ୍ୟତୀତ କବି ବିବାହ ସମୟରେ ସୀତାଙ୍କର ବେଶ ବର୍ଣ୍ଣନା ଓ ବିବାହ ବର୍ଣ୍ଣନା ଉତ୍ସବ ପ୍ରଭୃତି ଚିତ୍ରଣ କରିବା ବେଳେ ଓଡ଼ିଶାର ସମସାମୟିକ ଧର୍ମୀକ ସଂପ୍ରଦାୟର ବେଶ ବିନ୍ୟାସ ଓ ଚଳଣିର ବର୍ଣ୍ଣନା ସୁନ୍ଦର ଭାବେ କରିଛନ୍ତି । ଦଶରଥ କନ୍ୟା ଦେଖିବା ଆଗରୁ ସୀତାଙ୍କୁ ବେଶ କରିବା ପାଇଁ ତାଙ୍କ ମାତା ଓ ସଖୀମାନେ ଅଗୁରୁ, ଚନ୍ଦ୍ର ସହିତ କସ୍ତୁରୀ ମିଶାଇ କେଶରେ ଲଗାଇଛନ୍ତି ଓ ଝୀନବସ୍ତ୍ରରେ ଶ୍ରୀ ଅଙ୍ଗକୁ ପୋଛି ଚକ୍ଷୁରେ କଜ୍ଜ୍ୱଳ ମଥାରେ ଚନ୍ଦନ ଓ ସିନ୍ଦୂରବିନ୍ଦୁ ଲଗାଇଛନ୍ତି । କବରୀକୁ ଅତି ଯତ୍ନରେ ଖୋସି ନାସାରେ ଗଜମୋତି, ଗଳାରେ ଅଷ୍ଟରତ୍ନମାଳ, ବାହୁ ଯୁଗଳରେ ତାଡ଼ ଓ ସୁବର୍ଣ୍ଣ ଶିକୁଳୀ, ମଣିବନ୍ଧରେ ଚୁଡ଼ି କଟିରେ ମେଖଳା, ପାଦରେ ନୂପୁର ପ୍ରଭୃତି ଦେଇ ସୀତାଙ୍କ ବେଶକୁ ଜଣେ ଖାଣ୍ଟି ଓଡ଼ିଆଣୀ ଭାବରେ ସଜାଇଛନ୍ତି । ପୁଣି ଏକ ପଞ୍ଚବସ୍ତ୍ର ଉପଭୋଗ ଦେଇ କରରେ ତମ୍ବୁଳ ଓ ଗୁବାକ ଦେଇ ସଲଜେ ଅଧୋମୁଖୀ ହୋଇ ଜନକଙ୍କ ଆଗରେ କନ୍ୟା ଦେଖା ପାଇଁ ଉଭା କରାଇଛନ୍ତି । ଏହି ବେଶ ବର୍ଣ୍ଣନା ଓ ଚଳଣି ନିମ୍ନୋକ୍ତ କତିପୟ ପଂକ୍ତିରୁ ଜଣାଯାଏ ।

ଯଥା :—

ଲଲାଟେ ସୁଗନ୍ଧ ଚନ୍ଦନ - ତିଳକ ଜନ ମନୋରମ
ସିନ୍ଦୂର ବିନ୍ଦୁ ତହିଁ ମଧ୍ୟେ - ରବି କି ଚନ୍ଦ୍ର ବୋଲେ ଭାବେ

ନୟନେ କଜ୍ଜ୍ୱଳେ ରଚିଲେ- ମଧୁପ ଯେସନେ କମଳେ
ନାସାରେ ଗଜ ମୋତି ଶୋଭା - ଚନ୍ଦ୍ରେ କାନ୍ତିକ ପୁଞ୍ଜ ଲୋଭା
ବାହୁ ଯୁଗଳେ ତାଡ଼ ଦେଲେ - ସୁବର୍ଣ୍ଣ ଶିକୁଳ ମଣ୍ଡିଲେ
ପାଟେକ ଉପଯୋଗ କଲେ - କରେ ତଣ୍ଡୁଳ ଫଳ ଦେଲେ ।

କବିଙ୍କ ରଚନା ଶୈଳୀ ମଧ୍ୟ ଉଚ୍ଚକୋଟିର ଅଟେ । କବି ଉପ-ଧାମିଳନକୁ ମୁଖ୍ୟ ଭାବରେ ଗ୍ରହଣ କରିନଥିଲେ ମଧ୍ୟ ବହୁ ସ୍ଥାନରେ ଏହାର ଦୃଷ୍ଟାନ୍ତ ଜଣାଯାଏ । ସେ ତାଙ୍କ ଲେଖାରେ ବହୁ ପ୍ରାଚୀନ ଖାଣ୍ଟି ଓଡ଼ିଆ ଶବ୍ଦ ପ୍ରୟୋଗ କରିଛନ୍ତି । ଯଥା :—'କନାବାଡ଼ି ଅର୍ଥରେ ଟେଗା' କୁଡଆ ଅର୍ଥରେ 'ମଢ଼ିଆ' 'ଗାଇ' ଉଜାଣି, ନୁହମି, କହଣା, ଶୁଣିଧି, ଭଞ୍ଜ ଇତ୍ୟାଦି ।

ଭାରତୀୟ ସାହିତ୍ୟ ମାନଙ୍କ ମଧ୍ୟରେ ପୁରାଣର ମହତ୍ତ୍ୱ ବେଶି । ଭାରତର ସଭ୍ୟତା ଓ ସଂସ୍କୃତିକୁ ଜନସାଧାରଣଙ୍କ ମଧ୍ୟରେ ପ୍ରଚାର କରିବା ପାଇଁ ପୁରାଣ ବିଶେଷ ସହାୟକ ଅଟେ । ଏହି ଦୃଷ୍ଟିରୁ ବିଚାର କଲେ ଗ୍ରନ୍ଥଟି ଶ୍ରେଷ୍ଠ ହେଲେ ମଧ୍ୟ ଦାର୍ଶନିକ ତତ୍ତ୍ୱ ବିଶ୍ଳେଷଣ, ପୌରାଣିକ ଚରିତ୍ର ବର୍ଣ୍ଣନା ପ୍ରକୃତି ଚିତ୍ରଣ ସର୍ବୋପରି ଓଡିଶାର ସାମାଜିକ ଚିତ୍ର, ପରମ୍ପରା ଓ ବେଶ ବର୍ଣ୍ଣନାରେ କବି କୃତିତ୍ୱ ଦେଖାଇ ପାରିଛନ୍ତି । ଭାଷାର ସରଳତା ଓ ଅଳଙ୍କାରିକ ଶବ୍ଦର ପ୍ରୟୋଗ ତାଙ୍କ ଲେଖାର ବିଶେଷତ୍ୱ । ଏଣୁ ତାଙ୍କ ପୁରାଣ ଓଡିଆ ସାହିତ୍ୟ ଭଣ୍ଡାରର ଏକ ଅମୂଲ୍ୟ ରତ୍ନ କହିଲେ ଅତ୍ୟୁକ୍ତି ହେବନାହିଁ ।

## ରାମଚନ୍ଦ୍ର ସିଂହ ଦେଓ –(୧୭୦୦—୧୭୩୧ ଖ୍ରୀ)

ପୁରୁଷୋତ୍ତମ ସିଂହ ଦେଓଙ୍କ ପରେ ତାଙ୍କର ଜ୍ୟେଷ୍ଠ ପୁତ୍ର ରାମଚନ୍ଦ୍ର ସିଂହ ଧରାକୋଟ ସିଂହାସନ ଆରୋହଣ କରିଥିଲେ । ସେ ତାଙ୍କର କନିଷ୍ଠ ଭାଇ ନୃସିଂହ ଦେଓଙ୍କ ଭରଣପୋଷଣ ପାଇଁ ୩ ଖଣ୍ଡି ଗ୍ରାମ ଦେଇ-ଥିଲେ । ସେ ଚୌହାନ ରାଜ ବଂଶରେ କୃଷ୍ଣା ଦେବୀ ନାମକ ଏକ କନ୍ୟାର

ପାଣିଗ୍ରହଣ କରିଥିଲେ ଓ ରାଜା ନୃସିଂହ ଦେଓଙ୍କୁ ମଧ୍ୟ ଚୌହାନ ବଂଶରେ ବିବାହ କରାଇଥିଲେ । ରାମଚନ୍ଦ୍ର ତାଙ୍କର ବୀରତ୍ୱ ଓ ପାଣ୍ଡିତ୍ୟ ଯୋଗୁଁ ଗଞ୍ଜାମ ମଣ୍ଡଳରେ ବିଶେଷ ଖ୍ୟାତି ଲାଭ କରିଥିଲେ । ଏହାଙ୍କ ସମୟରେ ବଡ଼ଗଡ଼ ଓ ଭଞ୍ଜ ରାଜାଙ୍କ ସହିତ ରାଜ୍ୟର ସୀମା ନିରୂପଣ ନେଇ ସଂଘର୍ଷ ଉପୁଜିଲା । ଏଣୁ ରାଜା ରାମଚନ୍ଦ୍ର ପ୍ରଜାମାନଙ୍କୁ ଯୁଦ୍ଧ କୌଶଳ ଶିକ୍ଷାଦେଇ ସେମାନଙ୍କୁ ବିଭିନ୍ନ ଯୁଦ୍ଧ ଉପକରଣ ନଳୀ, ଗୁଳି, ଧନୁଶର ଓ ଖଣ୍ଡା ଯୋଗାଇ ଦେଲେ । ସେ ସମୟରେ ଧରାକୋଟଗଡ ଶ୍ରୀ କୋଠାରୀ ଦେବୀଙ୍କ ନିକଟରେ ଥିବା କାଠକୁପ ଧରାକୋଟ ଓ ବଡ଼ଗଡ଼ର ସନ୍ଧି ଥିଲା । ଏହି ସୀମାନ୍ତ ଅଂଚଳରେ ଧରାକୋଟ ରାଜା ଶିକାର କରୁଥିବା ସମୟରେ ବଡ଼ଗଡ଼ ରାଜା ଜଗନ୍ନାଥ ସିଂହ ଏହାର ପ୍ରତିବାଦ କରି ଧରାକୋଟ ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ବଡ଼ଗଡ଼ ରାଜା ବେଠୁଆର ନିକଟରେ ସୈନ୍ୟ ଶିବିର ପକାଇଲେ । ରାଜା ଓ ରାଜଭ୍ରାତା ସାମନ୍ତମାନଙ୍କ ସହିତ ଯୁଦ୍ଧ ଭୂମିକୁ ଯାଇ ବେଠୁଆରଗଡ଼ ଓ ଶିବିର ଘେରାଉ କରି ଶତ୍ରୁପକ୍ଷର ବହୁ ସୈନ୍ୟଙ୍କୁ ନିହତ କଲେ । ଯୁଦ୍ଧରେ ବଡ଼ଗଡ଼ ରାଜା ପରାସ୍ତ ହୋଇ ରାମଚନ୍ଦ୍ରଙ୍କର ଶରଣାପନ୍ନ ହୋଇ ସନ୍ଧି ସ୍ଥାପନ କଲେ । ଏହି ସନ୍ଧି ଚୁକ୍ତି ଅନୁସାରେ ବଡ଼ଗଡ଼ ରାଜା ବାହାରମୁଠାକୁ ଧରାକୋଟ ରାଜାଙ୍କ ଅଧୀନକୁ ଛାଡ଼ିଦେଲେ । ପୁଣି କାଠକୁପ ପରିବର୍ତ୍ତେ କାଠଗଡ଼ା ଗ୍ରାମ ସନ୍ଧି କଲେ । ସନ୍ଧି ସ୍ଥଳରେ କସେଇକଣ୍ଟା ହାଣି କସେଇ ଗ୍ରାମ ବସାଇବାକୁ ଆଦେଶ ଦେଇ ନିଜ ରାଜ୍ୟ ବଡଗଡକୁ ଫେରିଲେ । ଅଦ୍ୟାପି ଏହି ବିଜୟର ସ୍ମାରକ ସ୍ୱରୂପ ବେଠୁଆର ଗ୍ରାମବାସୀ ଶାରଦୀୟ ଦେବୀପୂଜା ସମୟରେ ଧରାକୋଟ ରାଜବାଟୀରୁ 'ପାଟଖଣ୍ଡା' ନିଜ ଗ୍ରାମକୁ ପଟୁଆର ସହ ନେଇ ପୂଜା କରି ଦଶହରା ଦିନ ଉକ୍ତ ଖଣ୍ଡାକୁ ଫେରସ୍ତ କରନ୍ତି । ଏହି ବିଜୟୋତ୍ସବ ପାଳନ କରିବା ପାଇଁ ରାଜା ତାଙ୍କର ଇଷ୍ଟଦେବୀ ସିଦ୍ଧକୋଠାରୀ ଠାକୁରାଣୀଙ୍କ ନିକଟରେ ହୋମ, ଦାନ ଓ ଚଣ୍ଡିପାଠ ସହ ବିରାଟ ଭୋଜି କରି ବ୍ରାହ୍ମଣ ଓ ସୈନ୍ୟ ସାମନ୍ତଙ୍କୁ ଆପ୍ୟାୟିତ କରିଥିଲେ । ସେ ଶତ୍ରୁ ରାଜ୍ୟ ରାଜାମାନଙ୍କ ସହ ଯୁଦ୍ଧରେ ବ୍ୟାପୃତ ରହି ସେମାନଙ୍କୁ ପରାସ୍ତ କରି ନିଜ ରାଜ୍ୟର ସନ୍ଧି ଓ ସୀମାନ୍ତ ଠିକ୍

ଘବେ ରକ୍ଷା କରିଥିଲେ । ଏଣୁ ଶତ୍ରୁମାନେ ଏହାଙ୍କୁ ଭୟ କରୁଥିଲେ ଏବଂ ସ୍ୱଜନ ଅର୍ଥାତ୍ ପ୍ରଜାମାନେ ଏହାଙ୍କୁ ଅତ୍ୟନ୍ତ ଆଦର କରୁଥିଲେ । ଏଣୁ ଘୁମୁସର ସିଂହାସନ ଲଭ ପାଇଁ ବିଦ୍ରୋହ ଚାଲିଥିବା ସମୟରେ ଗୋବିନ୍ଦ-ଭଞ୍ଜଙ୍କ ପୁତ୍ର ଧନ ଭଞ୍ଜ, ନୀଳକଣ୍ଠ ଭଞ୍ଜ ଓ ତତ୍ପୁତ୍ର ପୁତ୍ର କବିବର ଉପେନ୍ଦ୍ର-ଭଞ୍ଜ କିଛି କାଳ ରାମଚନ୍ଦ୍ର ସିଂହଙ୍କ ଆଶ୍ରୟ ଲଭକରି ଧରାକୋଟରେ ବାସ-କରିଥିଲେ । ଏହାଙ୍କ ବଳ, ବିକ୍ରମ ଓ ପରାକ୍ରମ ବିଷୟ ଉଲ୍ଲେଖ କରିବାକୁ ଯାଇ କୃଷ୍ଣସିଂହ ମହାଭାରତ ଆଦି ପର୍ବରେ ଲେଖିଛନ୍ତି ।

ଶୂର ପଣେ ତାଙ୍କ ସମାନ ଏକା ସେହି
ଅର୍ଜିଲେ ସ୍ୱକଳ ଦେଖାଇ ପରମହି
ଭଜିଲେ ତାଙ୍କ ପାଦେ ବହୁ ଶତ୍ରୁଜନ
ରଞ୍ଜିଲେ ସ୍ୱଗୁଣରେ ନିଜ ଜନମାନ ।

ଧର୍ମପ୍ରାଣ ରାଜା ସାଂସାରିକ ଝଡ଼ଝଞ୍ଜାରୁ ମୁକ୍ତ ଲଭ କରିବା ପାଇଁ ରାଜ୍ୟ ଭାର ପୁତ୍ରକୁ ଅର୍ପଣ କରି ବ୍ରାହ୍ମଣ ପଣ୍ଡିତମାନଙ୍କ ସହିତ ପୁରୀକ୍ଷେତ୍ରକୁ ବିଜେ କଲେ । ପୁରୀରେ ଅବସ୍ଥାନ ବେଳେ ପ୍ରତିନିତ୍ୟ ଜଗନ୍ନାଥଙ୍କୁ ଦର୍ଶନ କରି ବହୁ ସାଧୁସନ୍ଥ ଓ ସଜ୍ଜନ ମାନଙ୍କ ସାନ୍ନିଧ ଲଭକରି ଧର୍ମ ଚର୍ଚ୍ଚରେ ଦିନ କଟାଉଥିଲେ । ଏହାଙ୍କ ବୈଷ୍ଣବୋଚିତ ଭକ୍ତି ଓ ସାଧୁଜନ ପ୍ରୀତି ଦେଖି ପୁରୀର ତୋଷନାନ ରାଜା ମୁକୁନ୍ଦଦେବ ତାଙ୍କୁ ଯଥୋଚିତ ସମ୍ମାନ ଦେଉ-ଥିଲେ । ରାଜା ସର୍ବଦା ପୁରୀରେ ଶ୍ୱେତଗଙ୍ଗାରେ ସ୍ନାନ ବିଧି ପାଳନ କରୁଥିଲେ । ଦିନେ ଶ୍ୱେତଗଙ୍ଗାରେ ସ୍ନାନ କରୁଥିବା ସମୟରେ ଗୌତମ ଗୋତ୍ରୀୟ ଦୀନବନ୍ଧୁ ମିଶ୍ର ନାମକ ଜଣେ ବୈଦିକ ନିଷ୍ଠାପର ବ୍ରାହ୍ମଣଙ୍କ ସଂସ୍ପର୍ଶରେ ଆସି ତାଙ୍କଠାରୁ ବୈଷ୍ଣବ ଓ ଶୈବଧର୍ମ ବିଷୟରେ ବହୁ ଶିକ୍ଷା ଲଭିକଲେ । ପୁରୀରେ ଥିବା ସମୟରେ ଗୋମାତା ମଠ ମହନ୍ତଙ୍କୁ ଗୁରୁ ପଦରେ ବରଣ କରି ତାଙ୍କଠାରୁ ମନ୍ତ୍ରୋପଦେଶ ଗ୍ରହଣ କରିଥିଲେ । ସେ

ଘାନବନ୍ଧୁ ମିଶ୍ରଙ୍କ ପାଣ୍ଡିତ୍ୟ ଓ ଧର୍ମ ପରାୟଣତାରେ ମୁଗ୍ଧ ହୋଇ ତାଙ୍କୁ ସସମ୍ମାନେ ଧରାକୋଟକୁ ଆଣିବାକୁ ବ୍ୟବସ୍ଥା କଲେ । କିନ୍ତୁ ସେ ଶ୍ରୀକ୍ଷେତ୍ର ଛାଡ଼ି ଧରାକୋଟକୁ ଆସିବା ଅନିଚ୍ଛା ପ୍ରକାଶ କରିବା ହେତୁ ରାଜା ତାଙ୍କ ସୁଯୋଗ୍ୟ ପୁତ୍ର ନରସିଂହ ମିଶ୍ରଙ୍କୁ ସସମ୍ମାନେ ନେଇ ଆସି ଋଷିକୁଲ୍ୟା ନଦୀର ଉତ୍ତର ତଟରେ ଗୃହ ନିର୍ମାଣ କରାଇ ନିଜ ନାମରେ ୧୭୨୦ ଖ୍ରୀଷ୍ଟାବ୍ଦରେ ଏକ ଶାସନ "ରାମଚନ୍ଦ୍ରପୁର" ଦାନ କରିଥିଲେ । ମୁଖ୍ୟ ଦାନାଧକ୍ଷଙ୍କ ବ୍ୟତୀତ ଅନ୍ୟ ସାତଜଣ କୁଳୀନ ଶ୍ରୋତ୍ରୀୟ ବ୍ରାହ୍ମଣ ଏହି ଶାସନରେ ବସତି ସ୍ଥାପନ କଲେ । ବ୍ରାହ୍ମଣଙ୍କ ଭରଣପୋଷଣ ପାଇଁ "କଇଁଠିରା ଗ୍ରାମ" ଦାନ କରି-ଥିଲେ । ଏହି ଶାସନ ଦାନ ସଂପର୍କରେ କୃଷ୍ଣସିଂହ ମହାଭାରତରେ (ସଭାପର୍ବ) ଲେଖିଛନ୍ତି ।

ନିଜ ନାମୁଁଠିରେ ବସାଇ ଶାସନ - ଦେଲେ ଦ୍ୱିଜ ଜନଙ୍କୁ ରତ୍ନ ବସ୍ତ୍ର ଦାନ
ଭକ୍ତିରେ ତ ତାଙ୍କର ରହିଥିଲେ ମନ୍ତ୍ରୀ - ଏଣୁ ରାମେଶ୍ୱର ଦେବଙ୍କୁ କରି ପୂଜା
ବୁଲି ବୁଲି ମହା ତୀର୍ଥଙ୍କେ ଅବରୋଧ - କରିଣ କୃତାର୍ଥ ସେ କଲେ ନିଜଦେହ

ପୁରୀରେ ଅବସ୍ଥିତ ନିଜର ପରମ୍ପରାରୁ ଗଙ୍ଗାମାତା ମଠ ମହନ୍ତ ମହାରାଜାଙ୍କୁ ପୋଲଙ୍ଗି -ନିକଟସ୍ଥ ରାମଚନ୍ଦ୍ରପୁର ( ବୃତ୍ତି ଗ୍ରାମ ବ୍ରହ୍ମପୁର ଓ ଆସିକାରୋଡ଼ ନିକଟରେ ଅବସ୍ଥିତ ) ନିଜ ନାମରେ ନାମିତ କରି ୩୦୦ ଏକର ଜମି ଦାନ କରିଥିଲେ । ଏହା ବ୍ୟତୀତ ପୁରୀର ବଳଭଦ୍ରପୁର ନିବାସୀ ନୀଳାମ୍ବର ଦାସଙ୍କ ଗୁଣ ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତା ୨ ୯ ୧୭୦୧ ଠାରେ କେତେକ ଭୂମି ଦାନ କରିଥିଲେ ପୁଣି ପୁରୀର ଚଇ ରଥଙ୍କୁ ତା ୧୧—୨—୧୭୦୧ ଠାରେ ଚୈତ୍ର ପୂର୍ଣ୍ଣିମା ଚନ୍ଦ୍ରଗ୍ରହଣ ବେଳେ ଭୂମି ଦାନ କରିଥିବା ବିଷୟ ଦୁଇଟି ତାମ୍ରପଟ୍ଟାରୁ ଜଣାଯାଏ ।

ସେ ପଦବ୍ରଜରେ ଭାରତର କୁମାରିକା ଠାରୁ ହିମାଳୟ ମଧ୍ୟରେ ଥିବା ବହୁ ତୀର୍ଥ କ୍ଷେତ୍ର ଯଥା :— ରାମେଶ୍ୱର, ବଦ୍ରୀନାରାୟଣ, ଦ୍ୱାରକା,

ବୃନ୍ଦାବନ,ମଥୁରା ପ୍ରଭୃତି ନିଜ ଗୁରୁଙ୍କୁ ସଙ୍ଗରେ ନେଇ ତୀର୍ଥାଟନ କରିଥିଲେ । ବୃନ୍ଦାବନକୁ ତୀର୍ଥାଟନରେ ଯାଇଥିବା ସମୟରେ ସେଠାରେ ଗୋଟିଏ ଶିବ-ଲିଙ୍ଗ ଦୁଇଫାଳ ହୋଇଥିବାର ଦେଖିଲେ । ସେଥିରୁ ଫାଳେକ ଲିଙ୍ଗ ଆଣି ବୃନ୍ଦାବନଚନ୍ଦ୍ରଙ୍କ ମୂର୍ତ୍ତି ଗଠନ କରି ତାହାଙ୍କୁ ରାଜବାଟୀରେ ବିଜେ କରାଇ ପୂଜାବିଧି କଲେ । ବର୍ତ୍ତମାନ ରାଜବାଟୀରେ ପୂଜା ପାଉଥିବା ବୃନ୍ଦାବନଚନ୍ଦ୍ର ମହାପ୍ରଭୁ ରାଜା ରାମଚନ୍ଦ୍ରଙ୍କ ଦ୍ୱାରା ପ୍ରତିଷ୍ଠିତ । ବୃନ୍ଦାବନଚନ୍ଦ୍ରଙ୍କ ନିକଟରେ ବିଶ୍ୱେଶ୍ୱର ଶିବଲିଙ୍ଗଙ୍କୁ ମଧ୍ୟ ରାଜବାଟୀରେ ପ୍ରତିଷ୍ଠିତ କରିଥିଲେ । ଉଭୟ ଶିବ ଓ ବିଷ୍ଣୁଙ୍କ ଉପାସନା ଏକ ସ୍ଥାନରେ ଅନୁଷ୍ଠିତ କରି ବୈଷ୍ଣବ ଓ ଶୈବ ସମ୍ପ୍ରଦାୟ ଭିତରେ ସମନ୍ୱୟ ଭାବ ଆଣି ପାରିଥିଲେ । ବୃନ୍ଦାବନରୁ ବହୁ ବୈଷ୍ଣବଙ୍କ ସଙ୍ଗରେ ଆସି ରାଜ୍ୟରେ ବଡ଼ମଠ, ସାନମଠ, ଗୌଣିକଆ ମଠ ଓ ତପସ୍ୱୀ ମଠ ପ୍ରଭୃତି ସ୍ଥାପନ କରି ମଠ ଦେବତାଙ୍କ ଭୋଗପାଇଁ ବହୁ ଜମିବାଡ଼ି ଖଞ୍ଜିଥିଲେ । ବୃନ୍ଦାବନ ଚନ୍ଦ୍ରଙ୍କ ଭୋଗରାଗ ପର୍ବ ପର୍ବାଣି ପାଳନ ପାଇଁ କାନଗିରିଡ଼ ଗ୍ରାମରେ ବହୁ ଜମି ଦାନ କରିଥିଲେ ।

ଏହା ବ୍ୟତୀତ ବୃନ୍ଦାବନରୁ ଆଣିଥିବା ଗୋବିନ୍ଦ ଜୀଉଙ୍କୁ ମଙ୍ଗଳ-ପୁରରେ, ଗୋପିନାଥଙ୍କୁ ନରେନ୍ଦ୍ରପୁରରେ, ଜୟମଙ୍ଗଳଙ୍କୁ ବେଠୁଆରରେ ଓ ଶ୍ୟାମସୁନ୍ଦରଙ୍କୁ ବରଡ଼ାବଲରେ ବିଜେ କରାଇ ମନ୍ଦିର ନିର୍ମାଣ କରାଇ ମହାପ୍ରଭୁଙ୍କ ଭୋଗ, ଯାନଯାତ୍ରା ପାଇଁ ପ୍ରଚୁର ଭୂସମ୍ପତ୍ତି ଦାନ କରିଥିଲେ । ମଙ୍ଗଳପୁର ଗୋବିନ୍ଦଜୀଉଙ୍କୁ ୧୬୧୭ ଖ୍ରୀଷ୍ଟାବ୍ଦରେ ୬୦ ଏକର ଜମି ଦାନ କରିଥିବା ସରକାରୀ ରେକର୍ଡ଼ ପତ୍ରରୁ ଜଣାଯାଏ । ବୁରୁପଡ଼ାରେ ବିଜେ ହୋଇଥିବା ଶ୍ରୀ ଜଗନ୍ନାଥଙ୍କ ଭୋଗ ପାଇଁ ମଧ୍ୟ ସେ ବହୁ ଜମି ଖଞ୍ଜିଥିଲେ ।

ରାଜା ରାମଚନ୍ଦ୍ର ଏକାଧାରରେ ସୁଶାସକ, ଅମିତତେଜା, ଧର୍ମଜ୍ଞାନୀ, ବିଷ୍ଣୁ ତଥା ଜଗନ୍ନାଥଙ୍କର ଜଣେ ପରମ ଭକ୍ତଥିଲେ । ସଂସ୍କୃତ ସାହିତ୍ୟରେ, ସଂସ୍କୃତ ଶ୍ଳୋକ ରଚନା କରିବାରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିବା ତାଙ୍କ ରଚିତ ଗୁଣ୍ଡିଚାଷ୍ଟକରୁ ଜଣାଯାଏ । ପୁରୀରେ ଗୁଣ୍ଡିଚାଯାତ୍ରା ଦର୍ଶନରେ,

ତିନି ବିଗ୍ରହଙ୍କୁ ବେଶାରୂଢ଼ ହୋଇଥିବା ଦେଖି କବିଙ୍କ ମନରେ ଯେଉଁ ଅପୂର୍ବ ଆନନ୍ଦ ଓ ଭକ୍ତି ଜାଗ୍ରତ ହୋଇଥିଲା ତାକୁ ଲକ୍ଷ୍ୟ କରି ସେ ଗୁଣ୍ଡିଚାଷ୍ଟକ ରଚନା କରିଥିଲେ । ସେହି ଅଷ୍ଟକରୁ ଦୁଇଟି ଶ୍ଳୋକ ନିମ୍ନରେ ଦିଆଗଲା । ଏହି ଅପ୍ରକାଶିତ ଶ୍ଳୋକ ଗୁଡିକ ତାଳପତ୍ର ଲିଖିତ ବହିରେ ଓଡ଼ିଶା ସାହିତ୍ୟ ମ୍ୟୁଜିଏମରେ ଦେଖିବାକୁ ମିଳେ ।

ସାନନ୍ଦଂ ବିନିବାରୟନ୍ ସ୍ୱବପୁଷା ତାପତ୍ରୟାସ୍ୟା ତପଂ
ବାଦ୍ୟଂ ସାନ୍ଦ୍ର ମନୋଜ୍ଞ ମନ୍ଦ୍ର ନିନଦ ବ୍ୟାଦାନ୍ ମୁହୁର୍ବାଦୟନ୍
ଅମ୍ଭୋବିନ୍ଦୁ ଭିରମ୍ବୁବାହ – ନିବହ – ଶ୍ରୀନନ୍ଦଘୋଷାଗମା
ଧ୍ୟାନଂ ସଞ୍ଚିତ ସୁଷ୍ଠୁ ଯନ୍ତ୍ର କଳତା ମୀକ୍ଷେ କଦା ଗୁଣ୍ଡିଚାଂ ।
ଏକେନ ଧ୍ୱନିନା ରଥାଙ୍ଗ ଜନିତେ ନୈତତ୍ ତ୍ରୈଲୋକ୍ୟାଂଶୁଭଂ
ସାକଲ୍ୟେନ ବିନାଶିତଂ ଲଘୁତୟା ତନ୍ନ ପ୍ରୟାଣୈରଳମ୍
ଇତ୍ୟାଲୋକ୍ୟ ଗତୌ ବିଳମ୍ବିତ ଧିୟୋଽପ୍ୟୁଚ୍ଚୈଃ ସତାମିଚ୍ଛୟା
ଯସ୍ୟାଂ ଯାନ୍ତି ରଥାଜବେନ କଳତାମୀକ୍ଷେ କଦା ଗୁଣ୍ଡିଚାଂ ।

ଅନ୍ୱୟ :—

ରଥାଙ୍ଗ ଜନିତେନ ଏକେନଧ୍ୱନିନା ଲଘୁତୟା ସାକଲ୍ୟେନ
ତ୍ରୈଲୋକ୍ୟାମ ଶୁଭଂ ବିନାଶିତଂ ତତ୍ପ୍ରୟାଣୈଃ ଅଳଂ ଇତି ଆଲୋକ୍ୟ
ଗତୌ (ଗମନ ବିଷୟେ) ଯାତ୍ରାକରଣେ ବିଳମ୍ବିତଧିୟଃ ରଥାଃ
ଅପି ଉଚ୍ଚୈଃ ସତାମ୍ ଇଚ୍ଛୟା ଜବେନ ଯସ୍ୟାଂ (ଯାତ୍ରାୟାଂ)
ଯାନ୍ତି ତାଂ ଗୁଣ୍ଡିଚାଂ କଦାଲକ୍ଷେ

ଅର୍ଥ – ରଥଚକ୍ର ଜନିତ ଏକଧ୍ୱନି ଦ୍ୱାରା ଅନାୟାସରେ ତିନି-ଭୁବନରେ ଅଶୁଭ (ପାପ) ବିନାଶିତ ହୋଇ ପାରିଥିବାରୁ ପୁନରପି ଯାତ୍ରା

କରିବା ବୃଥା । ଏହା ଭାବି ନଜର ଗଡରେ ବିଳମ୍ବ କରୁଥିବା ରଥସ୍ଥ ସାଧୁ ଭକ୍ତମାନଙ୍କର ଆବେଗ ପୂର୍ଣ୍ଣ ଉତ୍କଣ୍ଠା ଅନୁରୋଧ ତଥା ଅଭିପ୍ରାୟ ଯୋଗୁଁ ପୁନରପି ଅତିଶୀଘ୍ର ଗମନ କରୁଛନ୍ତି ।

କବି ଗୁଣ୍ଡିଚା ଯାତ୍ରାର ଠିକଣାଟି ବିବରଣ ଦେଇ ଯେ ଭଳି ଭାଷା ପ୍ରୟୋଗ କରିଛନ୍ତି ତାର ପଟାନ୍ତର ନାହିଁ । ରଥଯାତ୍ରା ସମୟର ବିବିଧ ବାଦ୍ୟ ବାଜଣା ବ୍ରାହ୍ମଣମାନଙ୍କ ଦ୍ୱାରା ମନ୍ତ୍ରୋଚ୍ଚାରଣ, ନନ୍ଦିଘୋଷ ରଥସ୍ଥ ଭଗବାନଙ୍କ ଦର୍ଶନ ସକଳାଭିଷ୍ଟ ପୂର୍ଣ୍ଣକାରୀ ଓ ପତାକାର ଆନ୍ଦୋଳନ ଭକ୍ତମାନଙ୍କ ପ୍ରତି ଆହ୍ୱାନ ବୋଲି ଦର୍ଶାଇଛନ୍ତି ।

ରାଜା ରାମଚନ୍ଦ୍ର ଓ ତାଙ୍କ ଜ୍ୟେଷ୍ଠ ପୁତ୍ର ରାଜା ଜୟସିଂହଙ୍କ ସୁଶାସନ, ପାଣ୍ଡିତ୍ୟ ଓ କବିତ୍ୱରେ ମୁଗ୍ଧ ହୋଇ ଆଠଗଡ଼ର ସ୍ୱର୍ଗୀୟ ବାସୁଦେବ ରଥ ରାଜଗୁରୁ ୧୭୭୦ ଖ୍ରୀଷ୍ଟାବ୍ଦରେ ତାଙ୍କ ଦ୍ୱାରା ରଚିତ "ଗଙ୍ଗବଂଶାନୁଚରିତମ୍" ସଂସ୍କୃତ କାବ୍ୟରେ ଉପରୋକ୍ତ ରାଜା ଦ୍ୱୟଙ୍କ ବିଷୟରେ ଉଲ୍ଲେଖ କରିଛନ୍ତି । କୁନ୍ତଳ ଦେଶ ରାଜକନ୍ୟା ଚନ୍ଦ୍ରପ୍ରଭା ଓଡ଼ିଶାର ମନ୍ତ୍ରୀ ପୁତ୍ର ବିଦ୍ୟାଧରଙ୍କ ଶୁଭବିବାହ ଶ୍ରୀକ୍ଷେତ୍ରରେ ଅନୁଷ୍ଠିତ କରି ଚିଲିକା ହ୍ରଦକୁ ନୌକାରେ ପାର-ହୋଇ ଖଲ୍ଲିକୋଟ, ଆଠଗଡ଼, ଧରାକୋଟ, ଅଶ୍ୱକୁଲ୍ଲା ପାରହୋଇ ଦାଣ୍ଡପହଣ୍ଡି ଦେଇ ବିଜୟନଗରୀ (ଖେମଣ୍ଡି) ରାଜଧାନୀକୁ ଯିବା ଅବସରରେ କବି ଧରାକୋଟ ରାଜ୍ୟ ପିତଳ ଧରାକୋଟ ରାଜାଦ୍ୱୟଙ୍କ ବିଷୟରେ ଉଲ୍ଲେଖ କରିଛନ୍ତି ।

କୃଷ୍ଣସିଂହଙ୍କ ମହାଭାରତରୁ ଜଣାଯାଏ ତାଙ୍କର ଔରସରୁ ତିନିଗୋଟି ପୁତ୍ର ସନ୍ତାନ ଜନ୍ମ ଗ୍ରହଣ କରିଥିଲେ । ସେ କିଛିକାଳ ରାଜତ୍ୱ କରିବା ପରେ ପରେ ରାଜନଗରର ସକଳ ଐଶ୍ୱର୍ଯ୍ୟ ଭୋଗବିଳାସ ତ୍ୟାଗ କରି ଜ୍ୟେଷ୍ଠ ପୁତ୍ର ହସ୍ତରେ ରାଜ୍ୟଭାର ସମର୍ପଣ କରି ଆଧ୍ୟାତ୍ମିକ ଅନ୍ୱେଷଣରେ ତୀର୍ଥଯାତ୍ରାରେ ବାହାରିଲେ । ଏହି ବିଷୟ ରାଜା କୃଷ୍ଣସିଂହ ମହାଭାରତରେ ମଧ୍ୟ ଉଲ୍ଲେଖ କରିଛନ୍ତି —

ବତିଶ ବରଷରେ ଛାଡ଼ି ରାଜ୍ୟଭାର - ଦେଖିଲେ ସେତୁବନ୍ଧ ରାମେଶ୍ୱର
ଗୁରୁଙ୍କୁ ସେହି ନିଜ ସଙ୍ଗତେ ଘେନିଲେ-ପୁରୁଷୋତ୍ତମ କ୍ଷେତ୍ରେ-
ପ୍ରବେଶ ହୋଇଲେ ।

ସେ ନିଜର ଅନ୍ତିମ ଜୀବନ ବୃନ୍ଦାବନରେ ଅତିବାହିତ କରିଥିଲେ । ସେଠାରେ ପ୍ରତିଦିନ ଯମୁନାରେ ସ୍ନାନ ପରେ ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡରେ ବୁଡ଼ୁଥିଲେ ଏବଂ ସର୍ବଦା ଆତ୍ମୋପଲବ୍‌ଧି ଉଦ୍ଦେଶ୍ୟରେ ବୈଷ୍ଣବ ବନ୍ଦାପନା କରି ଈଶ୍ୱର ଚିନ୍ତାରେ ନିମଗ୍ନ ରହୁଥିଲେ । ପିତାଙ୍କର ଏହି ଆଧ୍ୟାତ୍ମିକ ଓ ତାପସ ଜୀବନଯାପନକୁ ଲକ୍ଷ୍ୟ କରି ସ୍ୱୀୟ ସୁଯୋଗ୍ୟ ପୁତ୍ର ଜୟସିଂହ ତାଙ୍କ କ୍ଷେତ୍ର ମାହାତ୍ମ୍ୟରେ ଯାହା ଉଲ୍ଲେଖ କରିଛନ୍ତି ସେଥିରୁ କିଛି ଅଂଶ ପାଠକ ମାନଙ୍କ ଅବଗତି ପାଇଁ ଦିଆଗଲା ।

ଯାପିତା କରି କଉପୀନ – ଗମନ କଲେ ବୃନ୍ଦାବନ
କୃଷ୍ଣାତଟରେ ମହାଜ୍ଞାତା – ଭାବେ ଭେଜିଲେ ଯଜ୍ଞ ସୂତା
ରାସଉତ୍ସବ କାବ୍ୟ କରି – ବୈଷ୍ଣବ ମନ କଲେ ହରି
ଗୁରୁ ଯା ଷଡ଼ ଶାସ୍ତ୍ର କୁହା—ଶ୍ରୀ ନରସିଂହ ପୁଣ୍ୟ ଦେହା
ଭଣଇ ଜୟସିଂହ ରାଜ – ଚରଣେ ଚିନ୍ତଇ ଖଗଧ୍ୱଜ ।

ବୃନ୍ଦାବନରେ ବନ୍ଧୁଚିନ୍ତାରେ ନିମଗ୍ନ ଥିବା ସମୟରେ ତାଙ୍କର ମହାପ୍ରସ୍ଥାଣ ହୋଇଥିଲା । ଆଜି ବୃନ୍ଦାବନର ବୈଷ୍ଣବମାନେ ପଙ୍ଗତ ପୂର୍ବରୁ ରାଜା ରାମଚନ୍ଦ୍ରଙ୍କର ଜୟଗାନ କରିଥାନ୍ତି । ଏହି ବୈଷ୍ଣବ ଧର୍ମାବଲମ୍ବୀ ରାଜର୍ଷିଙ୍କ ଭକ୍ତିକ ଧର୍ମରେ ଅନୁପ୍ରାଣିତ ହୋଇ ଧରାକୋଟରେ ବହୁ ମଠ ମନ୍ଦିର ସ୍ଥାପିତ ହେବା ସଙ୍ଗେ ସଙ୍ଗେ ଧରାକୋଟ ବହୁ ବୈଷ୍ଣବ କବି ଓ ଲେଖକଙ୍କୁ ସୃଷ୍ଟି କରି ପାରିବାରେ ସକ୍ଷମ ହେଲା । ଆଜି ରାମଚନ୍ଦ୍ର ନାହାଁନ୍ତି କିନ୍ତୁ ତାଙ୍କ ଯଶ ଓ କୀର୍ତ୍ତି ଅମରାକ୍ଷରରେ ଲିପିବଦ୍ଧ ହୋଇ ରହିଛି ।

**(ଜୟସିଂହ** ରାଜତ୍ୱ ୧୬୩୨ ଖ୍ରୀ – ୧୬୬୩ ଖ୍ରୀ)

ରାମଚନ୍ଦ୍ରଙ୍କ ଔରସରୁ ସ୍ୱର୍ଣ୍ଣାଦେବୀଙ୍କ ଗର୍ଭରୁ ଯେଉଁ ତିନି ଗୋଟି ପୁତ୍ର ସନ୍ତାନ ଜାତ ହୋଇଥିଲେ ସେମାନଙ୍କ ମଧ୍ୟରୁ ଜ୍ୟେଷ୍ଠ ପୁତ୍ର ଜୟସିଂହ ରାଜପଦରେ ଅଭିଷିକ୍ତ ହେଲେ । ଜୟସିଂହଙ୍କ ଅନ୍ୟ ଦୁଇଭାଇ ହେଉଛନ୍ତି ରାଜେନ୍ଦ୍ର ସିଂହ ଓ ମଳାଦ୍ରି ସିଂହ । ଜୟସିଂହ ତାଙ୍କ ଗୀତା ମାହାତ୍ମ୍ୟରେ ନିଜ ବଂଶର ପରିଚୟ ଦେଇଛନ୍ତି ।

ପୁରୁଷୋତ୍ତମ ଛତ୍ରୋଦ୍ଭବ – ଶ୍ରୀ ରାମଚନ୍ଦ୍ର ନରଦେବ
ତାଙ୍କ କଳତ୍ର ସ୍ୱର୍ଣ୍ଣାଦେବୀ—ଉଦରୁ ଅଟଇ ମୁଁ ସମ୍ଭବ ।

ସେ ମଧ୍ୟ ପିତାଙ୍କ ପରି ବିଖ୍ୟାତ ଓ ପରାକ୍ରମଶାଳୀ ରାଜାଥିଲେ । ଜଣେ ସୁଶାସକ, କବି, ସଙ୍ଗୀତଜ୍ଞ ଓ ଅଧ୍ୟାତ୍ମ୍ୟବାଦୀ ରାଜା ଭାବେ ସେ ସାରା ଚିଲ୍କାମରେ ବିଶେଷ ଖ୍ୟାତି ଅର୍ଜ୍ଜନ କରିଥିଲେ । ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ସେ ଅସାଧାରଣ ପାଣ୍ଡିତ୍ୟ ଅର୍ଜ୍ଜନ କରିଥିଲେ । ସେ ଭଗବାନ ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କ ବିଷୟରେ ବହୁ ଭକ୍ତି ରସାତ୍ମକ ପଦ୍ୟ ରଚନାକରି ସୁଲଳିତ କଣ୍ଠରେ ଗାନ କରୁଥିଲେ । କବି ଲୌକିକ ପ୍ରେମ ଗୀତିକା ଲେଖି-ବାରେ ମଧ୍ୟ ସିଦ୍ଧ ହସ୍ତଥିଲେ । ଗୋଟିଏ ଗୀତରେ କେଳି ସଦନକୁ ଯିବା ପାଇଁ ତତ୍ପର ଥିବା ଜଣେ ନାୟିକାକୁ ତାର ସହଚରୀମାନେ ପ୍ରଣୟାନୁଭୂତି ମୂଳକ ଭକ୍ତି ତଥା ରାଧାକୃଷ୍ଣଙ୍କ ପ୍ରୀତି ସମ୍ବନ୍ଧୀୟ ଭକ୍ତି କପରି ଭାବରେ କବି ଜୀବନ୍ତ ଭାବେ ବର୍ଣ୍ଣନା କରିଛନ୍ତି ଦେଖାଯାଉ । ସଖୀମାନଙ୍କ ନିଧୁବନ କଟୟକ ପରିହାସ —

ରାଗ କାମୋଦୀ

ଆହା ନବ ବିଳାସିନୀ ସେ – ଶଶିହାସିନୀ ସେ ମୋ (ପଦ)
ସଖୀ କି ବେଶ କରି — ସକଳ ସହଚରୀ
ବୋଲନ୍ତି ଶୁଣ ରସକନ୍ୟା ।

ଆଜ କାନ୍ତ ସଙ୍ଗରେ — ମଧୁବନ ରଙ୍ଗରେ
ବଞ୍ଚିବୁ କି ରଙ୍ଗରେ ଏ ରଜନୀ ?
ଧର କମଳ ପାଣି — କନ୍ଦୁଟିରେ ମିତଣୀ
କାନ୍ତକୁ ଗୃହଁ ନକରିବୁ ଖ୍ୟାତ ।
ନସ୍ତଯ୍ୱେ ସରସିଜ — ଲୋଚନୀ ମନସିଜ
ରାଜ ଲଭିବ ଆଜ ଖ୍ୟାତ ।
ଚନ୍ଦ୍ର କୁମୁଦ ପ୍ରୀତି — ଆଜ ତୋ ସୁଜତି
ଏବେ ସେ ସଖୀର ମାର ପର ହୁଅ ।
ଭଣେ ଜୟ କେଶରୀ — ନୃପତି ସହଚରୀ
ବୋଲନ୍ତି ଆମ୍ଭେ ଯାଉଅଛୁ ଛୁଦ ।

ସେତେବେଳେ ଧରାକୋଟ ସିଂହ ବଂଶ, ଘୁମୁସର ଭଞ୍ଜ ବଂଶ, ଚିକିଟି ଖଲ୍ଲିକୋଟ ବଡ଼ଖେମଣ୍ଡୀ ପ୍ରଭୃତି ଅନ୍ୟାନ୍ୟ ରାଜବଂଶ ସହ ରାଜନୀତି, ସାହିତ୍ୟ ସଂସ୍କୃତିର ବିକାଶ କ୍ଷେତ୍ରରେ ସମାନ୍ତରାଳ ଭାବରେ ପ୍ରତିଦ୍ୱନ୍ଦିତା କରୁଥିଲ । ସେ ରାଜପଦରେ ଅଭିଷିକ୍ତ ହୋଇ ବହୁ କାବ୍ୟ, ପୁରାଣ, ଧର୍ମ-ଶାସ୍ତ୍ର ଅଧ୍ୟୟନ କରି ଗଭୀର ଜ୍ଞାନ ଅର୍ଜନ କରିଥିଲେ । ଧରାକୋଟ ରାଜବାଟୀର ପଶ୍ଚିମରେ ଅବସ୍ଥିତ ଶୁକ୍ଳଆ ପର୍ବତର ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ( ସୁବଳୟା ) ଶତକ ସଂସ୍କୃତରେ ରଚନା କରିଥିବା ଜନଶ୍ରୁତିରୁ ଜଣାଯାଏ । ଏହି ଶତକ ଅନୁସନ୍ଧାନ ସାପେକ୍ଷ । ସେ ସଂସ୍କୃତରେ ହୟଗ୍ରୀବ ଶତକ ଅତ୍ୟନ୍ତ ପାଣ୍ଡିତ୍ୟ ପୂର୍ଣ୍ଣ ଭାଷାରେ ଲେଖିଥିଲେ । ଏହାର ପାଣ୍ଡୁଲିପି ଧରାକୋଟରେ ମିଳୁନାହିଁ । କିନ୍ତୁ ଧରାକୋଟର ବୟୋବୃଦ୍ଧ ପଣ୍ଡିତ ମାନଙ୍କ ସ୍ମୃତିରେ ଅଦ୍ୟାପି କେତେକ ଶ୍ଳୋକ ଉଜ୍ଜୀବିତ ରହିଛି । ସେଥିରୁ ଗୋଟିଏ ଶ୍ଳୋକ ଏଠାରେ ଉଦ୍ଧାର କରାଗଲା ।

ଜଙ୍ଘା ଦଘ୍ନାର୍ଣ୍ଣିବାଭ୍ୟାଂ ଶ୍ରବଣମଳ ସମୁଦ୍‌ଭୂତ ମଭ୍ୟାଗତାଭ୍ୟାଂ
କୁର୍ବାଣଃ କୌଣପାଭ୍ୟାଂ ସମ ମସମଭୁଜା ଯୁଦ୍ଧ ମବ୍‌ଦାଯୁତାର୍ଦ୍ଧଂ
ପ୍ରେଙ୍ଖେତ୍ୟାଂଳଦ୍‌ ଘର୍ମବିନ୍ଦୁ ପ୍ରଭବପୃଥୁଦଯୂଦ୍‌ ବୁଦ୍‌ବୁଦ କ୍ଷୀରବାର୍ଦ୍ଧି
ଟର୍ଦ୍ଧୀ ଦେବୋ ବ୍ୟଗାଜ ଦ୍ରବ ଭରିତ ଜଗଦ୍‌ ଭାଣ୍ଡ ଗର୍ଭୋର୍ବଭୁଣ୍ଡଃ ।

ଅର୍ଥ :—ଯୋଗନିଦ୍ରାଭିଭୂତ କ୍ଷୀର ସାଗରଶାୟୀ ବିଷ୍ଣୁଙ୍କର କର୍ଣ୍ଣମଳରୁ ଜାତ ହୋଇଥିବା ପୁଣି ସାଗରଜଳକୁ ଜଂଘ ପରିମାଣରେ ପରିଣତ କରି ଦେଇଥିବା ଅସୁର ଦ୍ୱୟଙ୍କ ସହ ( ମଧୁ ଓ କୈଟଭ ) ଅଯୁତାର୍ଦ୍ଧ ବର୍ଷ ପର୍ଯ୍ୟନ୍ତ ଯୁଦ୍ଧରେ ଲିପ୍ତ ରହିଥିବା, ପୁନଶ୍ଚ ଯୁଦ୍ଧ ହେଉଥିବାରୁ ନିର୍ଗତ ସ୍ୱେଦ ବିନ୍ଦୁ ବିରାଜିତ ଯେଉଁ ବିଷ୍ଣୁଙ୍କର ବପୁ ଉଦ୍‌ଗତ ଜଳ ବୁଦ୍‌ବୁଦ୍‌ ଶୋଭେ କ୍ଷୀର-ସାଗରକୁ ଆନ୍ଦୋଳିତ କରୁଥିଲା – ପୁଣି ଯୁଦ୍ଧ ସମୟରେ ମୁଖ ନିର୍ଗତ ମହା-ରବରେ ଜଗତ ରୂପକ ଭାଣ୍ଡ ପୂର୍ଣ୍ଣ ହୋଇ ଯାଇଥିଲା ସେହି ଅବଭୁଣ୍ଡ— ହୟଗ୍ରୀବ ରୂପୀ ସେହି ଦେବ ( ବିଷ୍ଣୁ ) ଶୋଭା ପାଉଥିଲେ ।

ଏହି ହୟଗ୍ରୀବ ଶତକ ୧୭୫୭ ଖ୍ରୀଷ୍ଟାବ୍ଦ ମାର୍ଗଶୀର କୃଷ୍ଣ ତୃତୀୟା ଦିନ ସମାପ୍ତ କରି ସ୍ୱୀୟ ଆରାଧ୍ୟ ଦେବତା ବୃନ୍ଦାବନଚନ୍ଦ୍ରଙ୍କୁ ସମର୍ପଣ କରି-ଥିଲେ । ସେ ହୟଗ୍ରୀବଙ୍କର ମଧ୍ୟ ପରମ ଉପାସକ ଥିଲେ । ଏଣୁ ଗୀତା-ନୁବାଦ ଆରମ୍ଭରେ ସେ ବନ୍ଦନା କରିଛନ୍ତି –

ବନ୍ଦଇ ହୟଗ୍ରୀବ ରୂପ
ନିଗମ ବଚନ ଅଧିପ

ସେତେବେଳେ ସଂସ୍କୃତ ଭାଷାରେ ଲିଖିତ ମୂଳ ଗୀତା ଅଧ୍ୟୟନ କରି ତାର ଅର୍ଥ ବୁଝିବା ସମସ୍ତଙ୍କ ପକ୍ଷେ ସହଜ ସାଧ୍ୟ ନଥିଲା । ଏହି ଅଭାବ ପୂରଣ ଲାଗି ସେ ସର୍ବସାଧାରଣ ବୋଧଗମ୍ୟ ଭାଷାରେ ଗୀତାର ଗୂଢ଼ ତତ୍ତ୍ୱକୁ

ଅନୁବାଦ କରୁଥିଲେ । ଗୀତାର ପ୍ରାରମ୍ଭରେ ଉଲ୍ଲେଖ କରାଯାଇଥିବା କେତେକ ପଦ ଉଦ୍ଧାର କରାଗଲା ।

ସାମ ଅଥର୍ବ ଯଜୁ ଋକ — ଏ ଚାରିବେଦରେ ଅଧିକ
ଉପନିଷଦ ବ୍ରହ୍ମ ବିଦ୍ୟା — ଏ ଗୀତା ତହିଁରୁ ପ୍ରସିଦ୍ଧା
× × ×
ଆନଶାସ୍ତ୍ରରୁ କାର୍ଯ୍ୟ କିସ — ଯେବେ ହେ ଜନେ ଗୀତାରସ

ବେଦ, ଉପନିଷଦ, ପୁରାଣ ଓ ଅନ୍ୟାନ୍ୟ ଶାସ୍ତ୍ରମାନଙ୍କ ମଧ୍ୟରେ ଗୀତାହିଁ ଶ୍ରେଷ୍ଠ ବୋଲି ଥିଲା । ଗୀତା ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ଓ ଜନ ସମୂହରେ ତାର ପରିବେଷଣ ଲାଗି ତାଙ୍କର ଆନ୍ତରିକ ଉଦ୍ୟମ ବିଶେଷ ପ୍ରଶଂସାର୍ହ । ଗୀତାର ମୂଳ ସଂସ୍କୃତ ଶ୍ଳୋକ ଗୁଡ଼ିକର କିପରି ସୁନ୍ଦର ସରସ ଓ ପ୍ରାଞ୍ଜଳ ଭାବରେ ଓଡ଼ିଆରେ ସଂକ୍ଷିପ୍ତରେ ପ୍ରକାଶ କରିଛନ୍ତି ତାହା ପାଠ କଲେ ଉଭୟ ଭାଷାରେ ତାଙ୍କର କିପରି ଦକ୍ଷତା ଥିଲା ତାହା ସ୍ପଷ୍ଟ ପ୍ରତୀୟମାନ ହୁଏ । ଏହି ଗୀତା ଏଯାଏଁ ମୁଦ୍ରିତ ଆକାରରେ ପ୍ରକାଶ ପାଇନାହିଁ ।

ଧର୍ମର ଗ୍ଳାନି ଯେବେ ଯେବେ - ଅଧର୍ମ ଅଧିକ ସମ୍ଭବେ
ତେବେ ଆତ୍ମାକୁ ସରଜନା - କରଣ କରଇ ପାଳନା
ସାଧୁଜନଙ୍କ ପରିତ୍ରାଣେ - ଦୁଷ୍କୃତି ଲୋକର ମାରଣେ
ଧର୍ମର ସଂସ୍ଥାପନା ଅର୍ଥେ - ଯୁଗେ ଯୁଗେ ମୁଁ ଜାତ ଏଥେ
× × ×
ମୋତେ ଯେ ଭାବଇ ଯେସନ - ମୁଁ ତାକୁ ଭଜଇ ତେସନ ।

ସେ ଜଣେ ଆଦର୍ଶ ନରପତି ଥିଲେ ଓ ପ୍ରଜାନୁରଞ୍ଜନ ତାଙ୍କ ଜୀବନର ପରମ ବ୍ରତଥିଲା । ଏଣୁ ଗୁରୁ, ଗୋରୁ ବ୍ରାହ୍ମଣ ଓ ପ୍ରଜାଙ୍କ

ମଙ୍ଗଳରେ ରାଜାର ମଙ୍ଗଳ ନିହିତ ଥିଲା ବୋଲି ତାଙ୍କର ଗାଢ଼ ବିଶ୍ୱାସ ଥିଲା । ଏଣୁ ସେ ଗୀତା ମାହାତ୍ମ୍ୟରେ କହିଛନ୍ତି—

ସୃଷ୍ଟିରେ ପାଳନ୍ତୁ ପରଜା - ମନ୍ତ୍ରିଙ୍କ ନ୍ୟାୟ ମାର୍ଗେ ରଜା
ଗୋବ୍ରାହ୍ମଣଙ୍କ ଶୁଭ ହେଉ - ସମସ୍ତ ଲୋକ ଶୁଭେ ଥାଉ
କାଳେ ବରଷନ୍ତୁ କାଦମ୍ବିନୀ - ଶସ୍ୟକୁ ସମ୍ପାଦୁ ଅବନୀ
କ୍ଷୋଭ ଶୂନ୍ୟ ଏ ହେଉ ଦେଶ—ନିର୍ଭୟେ ଥାନ୍ତୁ ଦ୍ୱିଜ ବଂଶ
ପୁଣ୍ୟାହବାଚନ କରିବ - ଅଚ୍ଛିଦ୍ର ଧାରଣ କରିବ ।

ଉପରୋକ୍ତ ଗ୍ରନ୍ଥ ବ୍ୟତୀତ ସେ ମହାଭାରତର ଦ୍ରୋଣପର୍ବ ମଧ୍ୟ ଅନୁବାଦ କରିଥିଲେ । ସେ ଏହି ପର୍ବ ଅନୁବାଦ କରିଥିବା ହେତୁ ପରବର୍ତ୍ତୀ ସମୟରେ କବି କୃଷ୍ଣସିଂହ ବ୍ୟାସକୃତ ମହାଭାରତର ଦ୍ରୋଣପର୍ବ ବ୍ୟତୀତ ଅନ୍ୟ ସବୁ ପର୍ବ ଅନୁବାଦ କରିଥିଲେ । କିନ୍ତୁ ପରେ ପଣ୍ଡିତ ମାନଙ୍କ ପରାମର୍ଶ ଓ ଅନୁରୋଧ କ୍ରମେ କୃଷ୍ଣସିଂହ ସର୍ବଶେଷରେ ଏହି ପର୍ବ ଅନୁବାଦ କରିଥିଲେ । ରାଜା ଜୟସିଂହଙ୍କ ଦ୍ରୋଣପର୍ବ ଅନୁବାଦ ଲେଖକଙ୍କ ଦୃଷ୍ଟିକୁ ଏଯାଏଁ ଆସିନାହିଁ ।

ଉପରୋକ୍ତ ଗ୍ରନ୍ଥ ଛଡ଼ା ସେ ସ୍କନ୍ଦ ପୁରାଣ, କପିଳସଂହିତା, ବ୍ରହ୍ମ-ପୁରାଣ ଓ ଆରଣ୍ୟକ ପର୍ବ ଏହି ପୁରାଣ ମାନଙ୍କର ସାରାଂଶକୁ ଉତ୍ତୋଳନ କରି ରାଜା କ୍ଷେତ୍ରମାହାତ୍ମ୍ୟ ନାମକ ଗ୍ରନ୍ଥ ଦୁଇଭାଗରେ ବିଭକ୍ତ କରି ଜଗନ୍ନାଥ-ଦାସଙ୍କ ନବାକ୍ଷରୀ ଭାଗବତ ବୃତ୍ତରେ ରଚନା କରିଛନ୍ତି । ଏହି କ୍ଷେତ୍ର ମାହାତ୍ମ୍ୟର ପ୍ରଥମ ଭାଗ ଧରାକୋଟର କେଶରୀ ପ୍ରେସରୁ ୧୯୦୪ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଛି । ଦ୍ୱିତୀୟ ଭାଗ ମଧ୍ୟ ପ୍ରକାଶ ପାଇଥିବା ଅତି ବୃଦ୍ଧବ୍ୟକ୍ତିଙ୍କ ଠାରୁ ଶୁଣିବାକୁ ମିଳେ । ଏହି ପ୍ରଥମ ଭାଗରେ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନାରେ କବି ବିଳାସ୍ତ ଲେଖନୀର ପରିଚୟ ଦେଇଛନ୍ତି । ଏଥିରେ ଅଳ୍ପ ପଦ ବ୍ୟବହୃତ ହୋଇଥିଲେ ମଧ୍ୟ ସମଗ୍ର ରୂପର ଧାରଣା କରାଇବାରେ ପଦ ଗୁଡ଼ିକ ସମର୍ଥ

ହୋଇଛି । ବର୍ଣ୍ଣନାରେ ମାର୍ଜିତ ଭାଷା ବ୍ୟବହାର ହୋଇଥିଲେ ମଧ୍ୟ ସ୍ଥାନେ ସ୍ଥାନେ ଖାଣ୍ଟି ଓଡ଼ିଆ ଶବ୍ଦର ବ୍ୟବହାର ଅତି ସୁନ୍ଦର ଭାବରେ ହୋଇଛି । ପ୍ରଭାତ ବର୍ଣ୍ଣନାର ଦୁଇପଦ ଏଠାରେ ଉଲ୍ଲେଖ କରାଗଲା ।

ଏମନ୍ତ ନିଶି ହେଲା ଶେଷ — ଅନ୍ତଃପାଣ୍ଡୁର ପୂର୍ବ ଦେଶ
ବଣୋଟୀ ଶ୍ରେଣିସ୍ଥଳ ଜାଣି — ଆକାଶେ ଫିକା ନିଶାମଣି
ଲଭିଲା ତାରକା ଆଲୋକ — ପ୍ରକଟ ସୂର୍ଯ୍ୟର ଉଜ୍ଜ୍ୱଳ ।

ଗଞ୍ଜାମର ଅନ୍ୟାନ୍ୟ ସତରଗୋଟି ରାଜପରିବାର ପରି ଧରାକୋଟର ରାଜାମାନେ ମଧ୍ୟ କବି ପଣ୍ଡିତ, କଳାକାର ମାନଙ୍କର ସହୃଦୟ ପୃଷ୍ଠପୋଷକ ଥିଲେ । ରାଜା ଜୟସିଂହ ଏହି ମହତ୍ କାର୍ଯ୍ୟରୁ ବାଦ୍ ଯାଇନଥିଲେ । ସେ ନିଜ ଦରବାରରେ ବହୁକୃତବିଦ୍ୟ ପଣ୍ଡିତ ମାନଙ୍କୁ ରଖି ଶାସ୍ତ୍ରାଲୋଚନା ଓ ସାହିତ୍ୟାଲୋଚନା କରିବା ସଙ୍ଗେ ସଙ୍ଗେ ବିଦେଶାଗତ ପଣ୍ଡିତ ଓ ଧାର୍ମିକ ପ୍ରବକ୍ତାମାନଙ୍କୁ ନିଜ ଦରବାରରେ ରଖି ଶାସ୍ତ୍ରାଲୋଚନାର ସୁଯୋଗ ଦେଉଥିଲେ । ରାଜଙ୍କସ୍ୱ ପୃଷ୍ଠପୋଷକତା ଲାଭକରି ସୌଜନ୍ୟ ମୁଗ୍ଧ କୃତଜ୍ଞ ପଣ୍ଡିତ ବର୍ଗ ସାହିତ୍ୟ ଓ ଧର୍ମର ବିଭିନ୍ନ ବିଭାଗରେ ଗ୍ରନ୍ଥ ପ୍ରଣୟନ କରି ସ୍ୱୀୟ ପ୍ରତିଭାର ଜ୍ୱଳନ୍ତ ନିଦର୍ଶନ ପୂର୍ବକ ନିଜ ରାଜ୍ୟର ଗୌରବ ବୃଦ୍ଧି ସମ୍ପାଦନ କରୁଥିଲେ ।

ସେ ସମୟରେ ଧରାକୋଟ ଅନ୍ତର୍ଗତ ତିଳୋତ୍ତମାଦେଈପୁର ଶାସନ ନିବାସୀ ପ୍ରବୀଣ ବ୍ରାହ୍ମଣ ପଣ୍ଡିତ ନରହରି କବିଚନ୍ଦ୍ର ରାଜାଙ୍କ ପଣ୍ଡିତ ସଭା ମଣ୍ଡନ କରିଥିଲେ । ତାଙ୍କ ସମୟରେ ଅଯୋଧ୍ୟାବାସୀ ବୈଷ୍ଣବ ଗଙ୍ଗାରାମ ଦାସ ରାଜଦରବାରରେ ଉପସ୍ଥିତ ହୋଇ ତାଙ୍କୁ ଅଧ୍ୟାତ୍ମ୍ୟ ରାମାୟଣର ନିଗୂଢ଼ ତତ୍ତ୍ୱ ବୁଝାଇବା ପାଇଁ ରାଜାଙ୍କୁ ଅନୁରୋଧ କଲେ । ତାଙ୍କ ଅନୁରୋଧରେ ଓ ଜୟସିଂହଙ୍କ ନିର୍ଦ୍ଦେଶରେ ନରହରି ଅଧ୍ୟାତ୍ମ୍ୟ ରାମାୟଣର ନିଗୂଢ଼ ତତ୍ତ୍ୱ ବୁଝାଇ କିଛି ଦିନ ପରେ ଏହି ରାମାୟଣର ଓଡ଼ିଆ ଅନୁବାଦ କରି ନିଜ

ଗ୍ରନ୍ଥକୁ ଚଙ୍ଗୋରାମଙ୍କ ନାମରେ ଭଣିତା କରିଥିଲେ । ଏହାର ଅନୁବାଦ ୧୭୫୦ ଖ୍ରୀ ୧୭୫୮ ଖ୍ରୀ ଭିତରେ ହୋଇଥିବା ଅନୁମିତ ହୁଏ । ଏହାର ପାଣ୍ଡୁଲିପି ଓଡ଼ିଶା ସାହିତ୍ୟ ମ୍ୟୁଜିଏମ୍‌ରେ ରକ୍ଷିତ ହୋଇଛି । ଏହି ଗ୍ରନ୍ଥଟି ଚଙ୍ଗୋରାମ ଦାସଙ୍କ ନାମରେ ଭଣିତ ହୋଇଥିବା ବିଷୟ କିଷ୍କିନ୍ଧ୍ୟାକାଣ୍ଡରୁ ଜଣାଯାଏ । ଏହି ଚଙ୍ଗୋରାମ ଦାସ ଅଯୋଧ୍ୟା ପ୍ରତ୍ୟାଗମନ ନକରି ରାଜାଙ୍କ ଅନୁରୋଧ କ୍ରମେ ଗାରସିଙ୍ଗ ଗ୍ରାମରେ ମଠସ୍ଥାପନ କରି ବାସକଲେ । ଏଥିରେ ଉଲ୍ଲେଖ ଅଛି—

ଧରାକୋଟର ଅଧିପତି – ସେ ଜୟସିଂହ ନାମେ ଖ୍ୟାତି

× × ×

ଆହେ ନୃପତି କବିରାଜ – ଆସିଛୁ ତୁମର ସମାଜ

ଅଧ୍ୟାତ୍ମ୍ୟ ରାମାୟଣ ଅର୍ଥ—ସତ୍ତ୍ୱରେ କହ ନରନାଥ

× × ×

ହରଷେ ହୋଇ ସେ ବୋଇଲେ – କବିଚନ୍ଦ୍ରଙ୍କୁ ଆଜ୍ଞାଦେଲେ ।

ଜୟସିଂହ ଜଗନ୍ନାଥଙ୍କର ପରମ ଭକ୍ତଥିଲେ । ନିଜ ରାଜଧାନୀରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ବିଜେ କରାଇ ପୂଜାବିଧି କରିବାର ଅଭିଳାଷ ପୋଷଣ କରି ପୁରୀ ଜଗନ୍ନାଥ ମନ୍ଦିରରେ ଦଧିବାମନ ମୂର୍ତ୍ତିଙ୍କୁ ପ୍ରତିଷ୍ଠା କରି ନିଜ ରାଜ୍ୟକୁ ବିଜେ କରାଇବାର ଚେଷ୍ଟା କରିଥିଲେ । ଏହି ଉଦ୍ଦେଶ୍ୟରେ ସେ ବ୍ରାହ୍ମଣ ପଣ୍ଡିତ ମାନଙ୍କ ସହିତ ପୁରୀ ଯାଇ ମେଟାଂରେ କଛୁଦିନ ରହି ଏକ ଦଧିବାମନ ମୂର୍ତ୍ତି ନିର୍ମାଣ କରାଇ ଧରାକୋଟ ପଣ୍ଡା ପଞ୍ଚଯୋଧୀ ତଳୁଛ ମହାପାତ୍ରଙ୍କୁ ହସ୍ତଗତ କରି ଦଧିବାମନଙ୍କୁ ରତ୍ନ-ସିଂହାସନରେ ଜଗନ୍ନାଥଙ୍କ ପାର୍ଶ୍ୱରେ ରଖି ପ୍ରତିଷ୍ଠା କରାଇ ଓ ଯାବତ ଦେବନୀତି ମାନ ଅନୁଷ୍ଠିତ କରି ଧରାକୋଟକୁ ଫେରିଲେ । ପରେ ପୁରୀ ରାଜା ଏହି ସମ୍ବାଦ ପାଇ ପଣ୍ଡାଙ୍କୁ ମନ୍ଦିର ବାସନ୍ଦ କରି ତାଙ୍କୁ ଦିଆଯାଇଥିବା ସମସ୍ତ ଜମି ବାଜ୍ୟାପ୍ତ କଲେ । ନିଜର ବୃତ୍ତିଚ୍ଛେଦ ହେତୁ ପଣ୍ଡା ନିଜକୁ ଅସହାୟ ମନେକରି ଧରାକୋଟ ଆସି ରାଜାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇଲେ ।

ରାଜା ପଣ୍ଡାଙ୍କୁ ଧରାକୋଟରେ ବସତି ସ୍ଥାପନ କରି ରହିବା ପାଇଁ ଅନୁରୋଧ କଲେ ଓ ତାଙ୍କର ଭରଣ ପୋଷଣ ପାଇଁ "ଆମ୍ବଠାକୁରଡ଼ା" ଗ୍ରାମ ଦାନକଲେ କିନ୍ତୁ ପୁରୁଷୋତ୍ତମ ଛାଡି ପଣ୍ଡା ଧରାକୋଟରେ ରହିବାପାଇଁ ଅସନ୍ତୋଷ ପ୍ରକାଶ କରିବା ହେତୁ ସେ ପଣ୍ଡାଙ୍କୁ ଧରିଯାଇ କିଛି ଦିନ ଅବସ୍ଥାନ କଲେ ସେ ସମୟରେ ଦିବ୍ୟସିଂହ ରାମଚନ୍ଦ୍ର ଦେଓ ପୁରୀର ରାଜାଥିଲେ । ରାମଚନ୍ଦ୍ର ଦେଓ ଜଗନ୍ନାଥଙ୍କ ଦର୍ଶନ କରିଯିବା ସମୟରେ ଜୟ ସିଂହ ମଧ୍ୟ ଦର୍ଶନକୁ ଯାଇଥିଲେ କିନ୍ତୁ ରାଜାଙ୍କୁ ନିଜର ପରିଚୟ ଦେଇନ୍ତି ନାହିଁ । ଦିନେ ପୁରୀରାଜା ତାଙ୍କ ସହିତ ଦର୍ଶନକୁ ଯାଇଥିବା ପଣ୍ଡିତମାନଙ୍କୁ ଦେଉଳ ଉପରେ ଉଡୁଥିବା ପତାକାକୁ ଓ ଜଗନ୍ନାଥଙ୍କୁ ଲକ୍ଷ୍ୟକରି ଏକ ଆଶୁ କବିତା ରଚନା କରି ଗାଇବା ନିମନ୍ତେ ଆଦେଶ ଦେଲେ । ସେ ସମୟରେ ଜୟସିଂହଙ୍କ ବ୍ୟତୀତ ଅନ୍ୟ କୌଣସି ଦର୍ଶକ ଆଶୁ କବିତା ରଚନା କରିବାରେ ସାହସ କଲେ ନାହିଁ । କିନ୍ତୁ ଜୟସିଂହ ସଙ୍ଗେ ସଙ୍ଗେ ନିମ୍ନଲିଖିତ କବିତାଟି ରଚନାରେ ଅତି ସୁଲଳିତ କଣ୍ଠରେ କବିତାଟି ଗାନ କଲେ । ଏହି କବିତାରୁ କବିଙ୍କ ପାରମ୍ପରିକ ଈଶ୍ୱର ବିଶ୍ୱାସର ପରିଚୟ ମିଳିବା ସଙ୍ଗେ ସଙ୍ଗେ କବିଙ୍କ ଆତ୍ମାନୁଭୂତିର କେତେକ ନିଦର୍ଶନ ମିଳିଥାଏ ।

ଅନା ପଞ୍ଚତବାନା ହରିକରେ ।

ପିନ୍ଧି କୌପୀନ କନା-ମାଗ ପଛେ ଧରି ଦନା-ନସ୍ତୁଡ଼ ନସ୍ତୁଡ଼ ନୀଳଗିରିକରେ
ଦକ୍ଷିଣ ପାରୁଶେ କନା-ମଧ୍ୟେ କୁଙ୍କୁମବରନା-ରତ୍ନ ସିଂହାସନେଛନ୍ତି ପୁରିକରେ
ସଦନ ନନ୍ଦନ ସୁନା-ନବ ଲଳିତ ଲଳନା-ସ୍ନେହ ବାସନାରେ ପରି ପୁରିକରେ
ସବୁଠାରେ ଏହିପରିନା-ମତେ ହୋଇଥିବେ ମନା-ସୁଦର୍ଶନ ଚକ୍ରକରେ ଧରିକରେ
ଶ୍ରୀ ପୁରୁଷୋତ୍ତମ ବିନା ଅନ୍ୟେ ନାହିଁ ମୋ ଭାବନା-ଭଣେ ଜୟସିଂହ ଦଣ୍ଡ
ଧାରିକରେ ।

ଏହି କବିତାଟି ଶ୍ରବଣକରି ଓ ରାଜା ଜୟସିଂହଙ୍କ ସମ୍ପୂର୍ଣ୍ଣ ପରିଚୟ ପାଇ ରାମଚନ୍ଦ୍ର ଦେବ-କବିଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଥିଲେ ।

ରାଜା ଏହି ଅବସରରେ ଦଧିବାମନ ନେବା କଥା କହି ପଣ୍ଡାଙ୍କ ପ୍ରତି ହୋଇ-ଥିବା ଦଣ୍ଡବିଧାନ ଉଠାଇ ନେବାକୁ ଅନୁରୋଧ କରିଥିଲେ । ରାଜା ଏଥିରେ ସମ୍ମତି ପ୍ରକାଶ କରିଥିଲେ । ଜୟସିଂହ କେତେକ ଦିନ ପୁରୀରେ ଅତିବାହିତ କରି ନିଜ ରାଜ୍ୟକୁ ଫେରିଥିଲେ ।

ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ୧୨ ଅଙ୍କ ଅର୍ଥାତ୍ ୧୬୩୫—୩୬ ଖ୍ରୀ ରାଜା ଜୟସିଂହ ପୁରୀ ଜଗନ୍ନାଥଙ୍କ ଦର୍ଶନକୁ ଆସିଥିବାର ଅନୁମାନ କରା-ଯାଇପାରେ । ଏ ସମୟରେ ମାଦଳା ପାଞ୍ଜିରେ ଲିପିବଦ୍ଧ ହୋଇଥିବା ଏକ ଲେଖା ଉଦ୍ଧୃତ କରାଗଲା ।

"ରାମଚନ୍ଦ୍ର ମହାରାଜାଙ୍କ ୧୨ ଅଙ୍କ ମକର ୧ ଦିନ କେତଲତା" ଧରାକୋଟ ରାଏ ସିଂହ ଦରଶନକୁ ଅଇଲେ । ଆପଣା ସମ୍ପତିରେ ପିନ୍ଧା ହୋଇ ସିଂହାସନ ତଳେ ଦରଶନ କଲେ । ପିଣ୍ଡିକା ଗାଡୁ ମଉଡ ୫ ଦେଲେ ।

ଦାନବୀର, ଭକ୍ତ ପ୍ରବର ଜୟସିଂହ ବ୍ରାହ୍ମଣ ମାନଙ୍କୁ ଓ ଅନ୍ୟାନ୍ୟ ବହୁ ଦେବାଦେବୀଙ୍କ ଭୋଗ ରାଗ ପାଇଁ ଭୂସମ୍ପତ୍ତି ଦାନ କରିଥିଲେ । ଧୁମୁସର କୁଲଡଗଡ଼ ନିକଟସ୍ଥ ନାରାୟଣ ପାଟଣାରେ ବିଜେ ହୋଇଥିବା ଶ୍ରୀନାରାୟଣ ମହାପ୍ରଭୁଙ୍କ "ମେଦାବେଡ଼ା ପ୍ରସାଦ" ଉକ୍ତ ମହାପ୍ରଭୁଙ୍କ ପୂଜକ ଭେଟି ଦେବାରୁ ରାଜା ସନ୍ତୋଷରେ "ଥୁରୁଥୁରୁ ଗ୍ରାମ" ମହାପ୍ରଭୁଙ୍କ ଭୋଗ ସକାଶେ ଦାନ କରିଥିଲେ ।

ସେ ଖଲିକୋଟ ରାଜା ରାଜସିଂହ (ରାୟସିଂହଙ୍କ) ଦୁହିତା ପଦ୍ମମାଳୀଙ୍କୁ ବିବାହ କରିଥିଲେ । ରାଜାଙ୍କ ବିବାହ ମହାଆଡ଼ମ୍ବରରେ ଅନୁଷ୍ଠିତ ହୋଇ-ଥିଲା । ଖଲିକୋଟ ରାଜା ଯୌତୁକ ସ୍ୱରୂପ ରାଜାଙ୍କୁ ଗୋଟିଏ ହାତୀ, ୭୦ଗୋଟି ଘୋଡ଼ା, ଦୁଇ କୁଆର ଗାଈ ଓ ଏକ କୁଆର ମହିଷ, ବାସନକୁସନ ଓ

ବହୁ ମୂଲ୍ୟବାନ ଅଳଙ୍କାର ଦେଇଥିଲେ । ଜୟସିଂହ ନିଜର ମନ୍ତ୍ରୀ ଆଣ୍ଟର ରାଜେନ୍ଦ୍ର ସିଂହଙ୍କୁ ସୁରଙ୍ଗୀ ରାଜାଙ୍କ ପାଟଜେମା ସହିତ ଓ ନିଜର କନିଷ୍ଠ ଭ୍ରାତା ମାଳଦ୍ରୀ ସିଂହଙ୍କୁ ନୟାଗଡ଼ ରାଜକନ୍ୟାଙ୍କ ସହିତ ବିବାହ କରାଇଥିଲେ । ସେ ନିଜର ଜ୍ୟେଷ୍ଠା ଭଗିନୀଙ୍କୁ ଭଞ୍ଜ ବଂଶର ରାଜା କୃଷ୍ଣ ଭଞ୍ଜଙ୍କ ସହିତ ଓ ନିଜର କନିଷ୍ଠା ଭଗିନୀଙ୍କୁ ନୂଆଗଡ଼ ରାଜବଂଶର ଚନ୍ଦ୍ରଶେଖର ମାନଧାତାଙ୍କୁ ବିବାହ ଦେଇଥିଲେ ।

ସେ ଏକାଧାରରେ ଜଣେ କବି ଓ ସଙ୍ଗୀତଜ୍ଞ ଥିଲେ । ସେ ବହୁ ଭକ୍ତିର ସାମୁକ ଓ ପ୍ରେମ ସମ୍ବଳିତ କବିତା ବିଭିନ୍ନ ରାଗରାଗିଣୀରେ ରଚନା କରି ଯାଇଛନ୍ତି । ସେ ଗୁଡ଼ିକ ଅପ୍ରକାଶିତ ଅବସ୍ଥାରେ ଧରାକୋଟର ସାହିତ୍ୟ ପିପାସୁ ବ୍ୟକ୍ତିଙ୍କ ନିକଟରେ ଥିବା ଜଣାଯାଏ । ସେଥିମଧ୍ୟରୁ ନବମାରଦତନୁ, ଭଜ ମାଳଚଳ ବିହାରୀ, କଳା ମେଘ ପ୍ରଭୃତି ବହୁ ଜଣାଣ ଲୋକ ମୁଖରେ ବଞ୍ଚି ରହିଛି ।

ସେ ଉଭୟ ବିଷ୍ଣୁ ଓ ଶିବଙ୍କର ପରମ ଭକ୍ତ ଥିବା ତାଙ୍କ ଲେଖାରୁ ଜଣାଯାଏ । ଲୋକଙ୍କୁ ଶୈବ ଧର୍ମ ପ୍ରତି ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ଓ ଶିବଙ୍କର ଯଥୋପଯୁକ୍ତ ପୂଜା ଓ ଉପାସନା ପାଇଁ ଧରାକୋଟଗଡ଼ର ପୂର୍ବ ଦିଗରେ ସ୍ୱପନେଶ୍ୱର ମହାଦେବଙ୍କୁ ପ୍ରତିଷ୍ଠା କରିଥିଲେ । ଏଣୁ ସେ ଗୀତାର ଶେଷରେ ଲେଖିଛନ୍ତି ।

"ସ୍ୱପନେଶ୍ୱର ନାମେ ହର – ଯାର ଘଜଲ୍ଲେ ଅବତାର"

ଜନଶ୍ରୁତିରୁ ଜଣାଯାଏ ଧରାକୋଟ ଗଡ଼ର ପଶ୍ଚିମରେ ମଧ୍ୟ ବୃଦ୍ଧ-ଲିଙ୍ଗେଶ୍ୱରଙ୍କୁ ପ୍ରତିଷ୍ଠା କରିଥିଲେ । ଏହି ଦୁଇଫୁଟ ଉଚ୍ଚତା ଓ ପ୍ରାୟ ସାଢ଼େ ଚାରିଫୁଟ ବେଢ଼ ବିଶିଷ୍ଟ ବିରାଟ ଶିବଲିଙ୍ଗ ଧରାକୋଟରେ ଅନ୍ୟକୁତ୍ରାପି ଦେଖାଯାଏ ନାହିଁ । ମନ୍ଦିରର ବିରାଟ ପ୍ରସ୍ତର ନିର୍ମିତ ବୃଷଭ ମଧ୍ୟ ଦର୍ଶନ ଯୋଗ୍ୟ ।

ଶେଷ ଜୀବନରେ ସେ ବୈଷ୍ଣବ ଧର୍ମ ପ୍ରତି ବିଶେଷ ଆକୃଷ୍ଟ ହୋଇ ପଡ଼ିଥିଲେ । ତାଙ୍କର ଏକମାତ୍ର ପୁତ୍ରର ମୃତ୍ୟୁ ଯୋଗୁଁ ଶେଷ ଜୀବନରେ ସାଂସାରିକ ବିଷୟ ପ୍ରତି ବିତୃଷ୍ଣ ହୋଇ ଅଧିକାଂଶ ସମୟ ସାରସ୍ୱତ ସାଧନା ଓ ଭଗବଦ୍ ଆରାଧନାରେ ନିମଗ୍ନ ରହୁଥିଲେ । କଥିତ ଅଛି ସେ ଶେଷ ଜୀବନରେ ଯୋଗ ସାଧନାରେ ନିମଗ୍ନ ଥିବା ଅବସ୍ଥାରେ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଥିଲା । ତାଙ୍କର ମରଶରୀରକୁ ପବିତ୍ର ଋଷିକୁଲ୍ୟା ନଦୀର ଉତ୍ତର ତଟରେ ଅଗ୍ନି ସଂଯୋଗ କରି ସଂସ୍କାର କରାଯାଉଥିବା ସମୟରେ ତାଙ୍କର ପତିପ୍ରାଣା, ସ୍ୱାଧ୍ୱୀ, ସତୀ ସହଧର୍ମିଣୀ ପଦ୍ମମାଳା ସ୍ୱାମୀଙ୍କ ଚିତାଗ୍ନିରେ ସ୍ୱତଃ ପ୍ରବୃତ୍ତ ହୋଇ ଆତ୍ମାହୁତି ଦେଇଥିଲେ । ମୁହୂର୍ତ୍ତକ ଭିତରେ ଉଭୟଙ୍କ ଶରୀର ଅଗ୍ନିର ଲେଲିହାନ ଶିଖାରେ ଭସ୍ମୀଭୂତ ହୋଇଗଲା । ସେସମୟରେ ସମାଜରେ ସତୀ ଦାହ ପ୍ରଥା ପ୍ରଚଳିତ ଥିଲା । ଏହି ପ୍ରଥାକୁ ପରାଶର ସଂହିତାରେ ମଧ୍ୟ ସମର୍ଥନ କରାଯାଇଛି । ଯଥା :—

ତିସ୍ର କୋଟ୍ୟାର୍ଦ୍ଧ କୋଟୀଚ ଯାନି ରୋମାନି ମାନୁଷେ
ତାବତ୍ କାଳେ ବସେତ୍ ସ୍ୱର୍ଗେ ଭର୍ତ୍ତାରଂ ଯାନୁ ଗଚ୍ଛତି ।

ଯେଉଁ ସ୍ତ୍ରୀ ସ୍ୱାମୀଙ୍କ ମୃତ୍ୟୁ ସହିତ ନିଜର ପ୍ରାଣକୁ ବିସର୍ଜ୍ଜନ କରେ ସେ ମନୁଷ୍ୟ ଦେହରେ ଥିବା ରୋମ ସଂଖ୍ୟାରେ ସ୍ୱର୍ଗବାସ କରେ ଅର୍ଥାତ୍ ମନୁଷ୍ୟ ଦେହର ରୋମ ସଂଖ୍ୟା ସାଢ଼େ ତିନିଗୋଟି । ତେଣୁ ସେ ସେହି ସାଢ଼େ ତିନିଗୋଟି ବର୍ଷ ସ୍ୱର୍ଗବାସ କରେ । ସହଗାମିନୀ ସ୍ତ୍ରୀ ନିଜେ ସ୍ୱର୍ଗବାସ କରି ସ୍ୱାମୀଙ୍କୁ ମଧ୍ୟ ସ୍ୱର୍ଗବାସ କରାଏ । ଏଣୁ ଏହି ସାମାଜିକ ପ୍ରଥା ଓ ବିଶ୍ୱାସରୁ ପଦ୍ମମାଳା ବାଦ୍ ଯାଇନଥିଲେ । ଏହା ଦ୍ୱାରା ସେ ସତୀସ୍ତ୍ରୀ ଆଖ୍ୟାପାଇଥିଲେ ।

ଋଷିକୁଲ୍ୟା ତଟର ଯେଉଁ ସ୍ଥାନରେ ପଦ୍ମମାଳା ସତୀ ଯାଇଥିଲେ ସେହି ସ୍ଥାନରେ ରାଜବଂଶ ପକ୍ଷରୁ ଏକ ମଠ ସ୍ଥାପନ କରାଯାଇ ସେହି ସତୀ ଅଗ୍ନିକୁ ପ୍ରଜ୍ୱଳିତ କରି ରଖିବାର ବ୍ୟବସ୍ଥା କରାଯାଇଛି । ଏହି ମଠରେ

ଦାୟିତ୍ୱରେ ଜଣେ ବାବାଜୀ ରହି ଚାରୋଟିକୁ ଦୈନିକ ପୂଜାବିଧି କରି ଆସୁଛନ୍ତି । ଜମିଦାରୀ ପ୍ରଥା ଉଚ୍ଛେଦ ପର୍ଯ୍ୟନ୍ତ ଏହି ବଂଶର ରାଜାମାନେ ରାଜ୍ୟର ଜଙ୍ଗଲରୁ ଅଗ୍ନିରକ୍ଷା ଉଦ୍ଦେଶ୍ୟରେ କାଠ ଯୋଗାଇ ଆସୁଥିଲେ । ବର୍ତ୍ତମାନ ସୁଦ୍ଧା ଏହି ମଠାଧୀଶ ବାବାଜୀ ବନ୍ଧିନ ସ୍ଥାନରୁ କାଠ ସଂଗ୍ରହ କରି ଅଗ୍ନି ପୂଜା କରି ଆସୁଛନ୍ତି । ଏହି ମଠ ଧରାକୋଟରେ "ସଖୀମଠ" ନାମରେ ପରିଚିତ । ଧରାକୋଟ ରାଜା ଓ ରାଣୀ ମାନଙ୍କର ମୃତ ଶରୀରକୁ ଏଠାରେ ଅଗ୍ନିସଂଯୋଗ ଦ୍ୱାରା ସଂସ୍କାର କରାଯାଇଥାଏ । ବହୁ ରାଜା ଓ ରାଣୀଙ୍କର ଏଠାରେ ସମାଧି ଦେଖିବାକୁ ମିଳେ । ପରବର୍ତ୍ତୀ କାଳରେ ରାଜା କୃଷ୍ଣସିଂହଙ୍କ ସ୍ତ୍ରୀ "ଚନ୍ଦ୍ରମା" ମଧ୍ୟ ଏଠାରେ ସତୀ ଯାଇଥିବା କବିବର ୮ ଚିନ୍ତାମଣି ମହାନ୍ତିଙ୍କ ଧରାକୋଟ ବର୍ଣ୍ଣନ ଲେଖାରୁ ଜଣାଯାଏ ।

ଦୈନିକ ଏହି ସମାଧିପୀଠ ଗୁଡ଼ିକର ସନ୍ଧ୍ୟାବେଳେ ସଞ୍ଜବତୀ ଦିଆଯାଇ ବାବାଜୀଙ୍କ ଦ୍ୱାରା ଯଥାବିଧି ପୂଜା ଅନୁଷ୍ଠିତ ହୁଏ । ରାଜବଂଶରେ କୌଣସି ବ୍ୟକ୍ତିଙ୍କ ମୃତ ଶରୀର ଦହନ ପାଇଁ ଏଠାରୁ ଅଗ୍ନି ସଂଗ୍ରହ କରାଯାଏ ନାହିଁ । ରାଜବଂଶର କୌଣସି ବ୍ୟକ୍ତି ମୃତ୍ୟୁ ମୁଖରେ ପଡ଼ିଲେ ଶ୍ରୀ ସହିତ ଜଗନ୍ନାଥଙ୍କ ରୋଷଘରୁ ଅଗ୍ନି ଅଣାଯାଇ ଶବ ସଂସ୍କାର କରାଯାଏ । ଏହି ମଠ ସହିତ ପୂର୍ବରେ ବର୍ଣ୍ଣିତ କରାଖାଇ ମଠର ଅଚ୍ଛେଦ୍ୟ ସଂପର୍କ ରହିଛି ।

ଏହି ସଖୀମଠର ଅବସ୍ଥିତି ଓ ଦୃଶ୍ୟ ଅତ୍ୟନ୍ତ ରମଣୀୟ । ଏହି ସୌନ୍ଦର୍ଯ୍ୟ ଭରା ମଠଟି ଶାଳ, ତମାଳ, ତାଳ, ଆମ୍ର, ପନସ, ନାରିକେଳ, ଲେମ୍ବୁ ପ୍ରଭୃତି ବୃକ୍ଷରାଜି ଦ୍ୱାରା ନଦୀ ତଟରେ ଶୋଭାପାଉଛି । ଏହାର ଶାନ୍ତ, ସ୍ନିଗ୍ଧ, ସୁଶୀତଳ ପରିବେଶ ଦର୍ଶକମାନଙ୍କ ମନ ହରଣ କରୁଛି ।

ରାଜା ଜୟସିଂହ ଯେପରି ଥିଲେ ବୀର, ନିର୍ଭୀକ, ପ୍ରଜାବତ୍ସଳ ସେପରି ଥିଲେ ଗୁଣଗ୍ରାହୀ ଓ କାବ୍ୟ ଶାସ୍ତ୍ରାନୁରାଗୀ । ତାଙ୍କର ସଙ୍ଗୀତାବଳୀ ଓ ଗୀତାନୁବାଦ ସୀମିତ ପରିସରରେ ହେଉ ପଛେ ସୁଧୀ ସମାଜ ଦୃଷ୍ଟିରୁ ଅପାସାକୃତ

ହୋଇ ପାରିନାହିଁ । କବିବର ଚିନ୍ତାମଣି ମହାନ୍ତି ତାଙ୍କ ଗୀତା ପାଠ କରି ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା ଉଦ୍ଧୃତ କରାଗଲା ।

ବୈଷ୍ଣବ ପ୍ରବର ଶ୍ରୀ ଜୟୀ- ସିଂହ ଭକତ କବି
ଗାଇଲେ ମଧୁର ଗୀତା ସେ- ଭକ୍ତି ରସରେ ଦ୍ରବି ।

ସେ କୌଣସି ମହାକାବ୍ୟ ଲେଖି ନଥିଲେ ମଧ୍ୟ ତାଙ୍କର କ୍ଷେତ୍ର ମାହାତ୍ମ୍ୟ, ଗୀତା ମାହାତ୍ମ୍ୟ ଦ୍ରୋଣ ପର୍ବର ଅନୁବାଦ ଓ ଅସଂଖ୍ୟ ଭକ୍ତି ରସାତ୍ମକ କବିତା ଗୁଡିକ ଉତ୍କଳରେ ତାହାଙ୍କର ଅକ୍ଷୟକୀର୍ତ୍ତି ଘୋଷଣା କରୁଛି ।

## ରାଜେନ୍ଦ୍ର ସିଂହ – ( ୧୭୫୯ – ୧୭୮୦ ଖ୍ରୀଷ୍ଟାବ୍ଦ )

ଜୟୀସିଂହଙ୍କ ମୃତ୍ୟୁ ପରେ ତାଙ୍କର ମଝିଆ ଭାଇ ରାଜେନ୍ଦ୍ର ସିଂହ ଧରାକୋଟ ରାଜପଦରେ ଅଭିଷିକ୍ତ ହେଲେ । ସେ ସକଳ ଧର୍ମଶାସ୍ତ୍ରରେ ଓ ରାଜ୍ୟ ପ୍ରଶାସନ ବିଷୟରେ ଆଗରୁ ଉତ୍ତମ ଜ୍ଞାନ ଆହରଣ କରିଥିଲେ । ଏଣୁ ରାଜା ହେବା ପରେ ପ୍ରଜାମାନଙ୍କ ଅଭାବ ଅନାଟନ, ଦୁଃଖ ଓ ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦେଖିବା ପାଇଁ ଗଜାରୋହଣ ପୂର୍ବକ ରାଜ୍ୟର ପ୍ରତି ଗ୍ରାମକୁ ଯାଉଥିଲେ । ରାଜନଗରକୁ ଫେରି ପାତ୍ର ମନ୍ତ୍ରୀଙ୍କ ପରାମର୍ଶ ଅନୁସାରେ ପ୍ରଜାମାନଙ୍କ ଅଭାବ ଦୂର କରିବାକୁ ଯତ୍ନପରୋନାସ୍ତି ଚେଷ୍ଟା କରୁଥିଲେ । ଧରାକୋଟର ଉତ୍ତର ପୂର୍ବାଞ୍ଚଳରେ ଅବସ୍ଥିତ କମାଗଡ଼ଠାରେ ସୁଦୃଢ଼ ଗୃହ ନିର୍ମାଣ କରି ନିଜର କେତେକ ଭାଇ ପୁଅ ସାମନ୍ତ ମାନଙ୍କୁ ସେହି ଗ୍ରାମରେ ରଖାଇ କୃଷି ଉତ୍ପାଦନ ବଢ଼ାଇବା ପାଇଁ ନିଜର ଜମିକୁ ଚାଷକରାଇଲେ । ସେ ସମୟରେ ରାଜା ମାନଙ୍କର ଆର୍ଥିକ ପରିସ୍ଥିତି କୃଷିଜାତ ଜିନିଷ ଉପରେ ନିର୍ଭର କରୁଥିଲା । ଏଣୁ କୃଷି ଉତ୍ପାଦନ ବଢ଼ାଇବା ପାଇଁ ବଡ଼ ବଡ଼ ପୁଷ୍କରିଣୀ ଖନନ କରିଥିଲେ ପୁଣି ଜମିର ଉତ୍ପାଦିକା ଶକ୍ତିକୁ ବଢ଼ାଇବା ପାଇଁ ପ୍ରତି ଗ୍ରାମରେ ଗାଡ଼ିଆ, ଛେଲି, ମହିଷ କୁଆର କରି ଜମିକୁ ଖତ ଯୋଗାଇବା

ବ୍ୟବସ୍ଥା କରିଥିଲେ । କୃଷି ଉତ୍ପାଦନ ବଢ଼ିବା ଫଳରେ ପ୍ରଜାମାନେ ସୁଖ ଶାନ୍ତିରେ କାଳଯାପନ କରିବା ସଙ୍ଗେ ସଙ୍ଗେ ରାଜକୋଷରେ ଆଦାୟ ମଧ୍ୟ ଆଶାତୀତ ଭାବରେ ବଢ଼ିବାକୁ ଲାଗିଲା ।

ତାଙ୍କ ରାଜତ୍ୱ ସମୟରେ ଧରାକୋଟ, ସୋରଡ଼ା ଓ ବଡ଼ଗଡ଼ ସନ୍ଧିରେ ଥିବା ଧରାକୋଟର ନରଣପୁର ଗ୍ରାମ ଉପରେ ବଡ଼ଗଡ଼ର ରାଜା ପରମାନନ୍ଦ କେଶରୀ ନିଜର ଅଧିକାର ଦାବିନେଇ ଉକ୍ତ ଗ୍ରାମ ନିକଟରେ ଗଡ଼ କରି ରହିବାକୁ ମନସ୍ଥ କରି ନିଜର ପାଇକ, ଖଣ୍ଡାୟିତ ଓ ଦଳବଳ ଘେନି ସେଠାରେ ଉପସ୍ଥିତ ହେଲେ । ରାଜେନ୍ଦ୍ର ସିଂହ ବଡ଼ଗଡ଼ ରାଜାଙ୍କ ସହ ଯୁଦ୍ଧ କରିବାକୁ ନିଜର ସୈନ୍ୟ ସାମନ୍ତ ସହ ସେଠାରେ ଉପସ୍ଥିତ ହେଲେ । ଉଭୟ ସୈନ୍ୟଙ୍କ ଭିତରେ ଯୁଦ୍ଧ ହୋଇ ଶେଷରେ ସନ୍ଧି ସ୍ଥାପନ କରାଗଲା । ଉକ୍ତ ଗ୍ରାମଟି ଧରାକୋଟର ବୋଲି ଶେଷରେ ସ୍ଥିର କରାଗଲା । ଜନଶ୍ରୁତିରୁ ଜଣାଯାଏ ଯୁଦ୍ଧରେ ବଡ଼ଗଡ଼ ରାଜା ପରାସ୍ତ ହୋଇ ଧରାକୋଟ ରାଜାଙ୍କ ଦ୍ୱାରା ବନ୍ଦୀ ହୋଇ ରହିଥିଲେ । ସନ୍ଧି ସ୍ଥାପନ ପରେ ରାଜେନ୍ଦ୍ର ସିଂହ ବଡ଼ଗଡ଼ ରାଜାଙ୍କୁ ବନ୍ଦୀରୁ ମୁକ୍ତକଲେ ।

ବଡ଼ଗଡ଼ ରାଜା କିଛିଦିନ ପରେ ଏ ଅପମାନର ପ୍ରତିଶୋଧ ନେବା ପାଇଁ ତତ୍‌କାଳୀନ ଘୁମୁସରର ରାଜା ତ୍ରିବିକ୍ରମ ଭଞ୍ଜଙ୍କୁ ଧରାକୋଟର କେତେକ ଗ୍ରାମ ଉପରେ ଦାବି କରି ଧରାକୋଟ ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଇଲେ । ଆଗରୁ ତ୍ରିବିକ୍ରମ ଭଞ୍ଜଙ୍କର ଧରାକୋଟ ପ୍ରତି ଅସୂୟା ଭାବଥିଲା । କାରଣ ତ୍ରିବିକ୍ରମ ଭଞ୍ଜଙ୍କ ପିତା କୃଷ୍ଣଭଞ୍ଜ ଧରାକୋଟ, ନବଦୁର୍ଗ, ସୋରଡ଼ା, ଖେମୁଣ୍ଡି, ଖଲିକୋଟ ପ୍ରଭୃତି ପ୍ରତ୍ୟେକ ରାଜାଙ୍କର ଏକ ଏକ କନ୍ୟାଙ୍କୁ ବିବାହ କରିଥିଲେ । ଏମାନଙ୍କ ଗର୍ଭରୁ ଅନେକ ପୁତ୍ର ସନ୍ତାନ ଜାତ ହୋଇଥିଲେ । ନୟାଗଡ଼ ରାଜାଙ୍କ ଠାରୁ କନ୍ୟା ଗ୍ରହଣ କରିବା ସମୟରେ କୃଷ୍ଣଭଞ୍ଜ ତାହାଙ୍କର ପ୍ରଥମ କୁମରଙ୍କୁ ରାଜ୍ୟାଧିକାର ଦେବା ନିମନ୍ତେ ଅଙ୍ଗୀକାର କରିଥିଲେ । ଏଣୁ ୧୭୭୩ ଖ୍ରୀଷ୍ଟାବ୍ଦରେ ତାହାଙ୍କର ମୃତ୍ୟୁ

ସମୟରେ ନୟାଗଡ଼ କନ୍ୟାଙ୍କ ଜାତ ପୁତ୍ର ତ୍ରିବିକ୍ରମ ଭଞ୍ଜଙ୍କୁ ରାଜ୍ୟ ଭାର ଅର୍ପଣ କରି ଇହଧାମ ତ୍ୟାଗକଲେ ।

କୃଷ୍ଣଭଞ୍ଜଙ୍କ ମୃତ୍ୟୁ ପରେ ତାଙ୍କର ପ୍ରଥମାରାଣୀ ଧରାକୋଟ ରାଜ-ଜେମା ରାଜେନ୍ଦ୍ର ସିଂହଙ୍କ ଭଗିନୀଙ୍କ ଗର୍ଭରୁ ଜାତ ପ୍ରଥମ ସନ୍ତାନ ଲକ୍ଷ୍ମଣଭଞ୍ଜ ପ୍ରକୃତରେ ଘୁମୁସର ସିଂହାସନ ଆରୋହଣ କରିବା କଥା । କିନ୍ତୁ ନୟାଗଡ଼ ରାଜାଙ୍କ ସହିତ ଚୁକ୍ତି ଅନୁସାରେ ଦ୍ୱିତୀୟା ରାଣୀ ଗର୍ଭ ସନ୍ତାନ ତ୍ରିବିକ୍ରମ-ଭଞ୍ଜଙ୍କୁ ରାଜା ରାଜ୍ୟ ଭାର ଅର୍ପଣ କରିଥିଲେ । ଉପରୋକ୍ତ କାରଣ ଯୋଗୁଁ ସେ ରାଜା ହେବା ପରେ ଲକ୍ଷ୍ମଣ ଭଞ୍ଜଙ୍କୁ ରାଜ୍ୟରୁ ବିତାଡ଼ିତ ନକରିବା ଯାଏ ତାଙ୍କ ରାଜପଦ ନିଷ୍କଣ୍ଟକ ହେବ ନାହିଁ ଭାବି ସେ ତାଙ୍କୁ ରାଜ୍ୟରୁ ବାହାର କରି ଦେଇଥିଲେ । ନିଜ ଭଣଜାର ଏହି ଦୁଃଖ ଓ ଦୁର୍ଦ୍ଦଶା ଦେଖି ରାଜେନ୍ଦ୍ର-ସିଂହଙ୍କ ମନରେ ମଧ୍ୟ ତ୍ରିବିକ୍ରମ ଭଞ୍ଜଙ୍କ ପ୍ରତି ଅଶେଷ କ୍ରୋଧ ଜାଗ୍ରତ ହୋଇଥିଲା । ଏଣୁ ତ୍ରିବିକ୍ରମ ଭଞ୍ଜଙ୍କ ଅତ୍ୟାଚାର ଗର୍ବ ଓ ରାଜ୍ୟ ବିସ୍ତାର ନୀତିକୁ ଖର୍ବ କରିବା ପାଇଁ ସେ ସୁଯୋଗ ଜଗି ବସିଥିଲେ । ଏହି ସମୟରେ ଅନ୍ୟାୟରେ ବଳ ପୂର୍ବକ ଧରାକୋଟ ରାଜ୍ୟ ଉପରେ ତ୍ରିବିକ୍ରମ ଭଞ୍ଜ ଆକ୍ରମଣ କରିଥିବା ହେତୁ ଶତ୍ରୁକୁ ଉପଯୁକ୍ତ ଜବାବ ଦେବା ପାଇଁ ରାଜା ନିଜର ପାଇକ, ରାଉତମାନଙ୍କ ସହ ୧୫୦୦ ଖଣ୍ଡା ଧରି ଓ ଅନ୍ୟାନ୍ୟ ଅସ୍ତ୍ର-ଶସ୍ତ୍ର ଧରି ଶତ୍ରୁ ସୈନ୍ୟଙ୍କର ସମ୍ମୁଖୀନ ହେଲେ । ଏହି ଯୁଦ୍ଧରେ ନିଜେ ରାଜା ଗଜାରୋହଣ ଓ ସାମନ୍ତମାନେ ଅଶ୍ୱାରୋହଣ କରି ଯୁଦ୍ଧ ଭୂମିରେ ବୀର ବେଶରେ ଅବତୀର୍ଣ୍ଣ ହେବା ଦେଖି ସୈନ୍ୟମାନଙ୍କ ମଧ୍ୟରେ ଅସୀମ ସାହସ ବୀରତ୍ୱ ଓ ପ୍ରବଳ ଉତ୍ସାହ ଯୁଦ୍ଧ ଭୂମିରେ ଜାଗି ଉଠିଲା । ଏହି ଯୁଦ୍ଧ ହନୁମାନ ଦ୍ୱାର ନିକଟରେ ହୋଇଥିଲା ବୋଲି ଅଦ୍ୟାପି ଜନମୁଖରୁ ଶୁଣାଯାଏ । ଏହି ଯୁଦ୍ଧରେ ଉଭୟ ରାଜ୍ୟର ବହୁ ସୈନ୍ୟ ସାମନ୍ତ ନିହତ ହେଲେ । କିଛି ଦିନ ଯୁଦ୍ଧ ପରେ ଭଞ୍ଜ ରାଜା ଯୁଦ୍ଧରେ ପରାସ୍ତ ହୋଇ ଧରାକୋଟ ସନ୍ଧି ଅତିକ୍ରମ କରି ଯିବା ସମୟରେ ରାଜେନ୍ଦ୍ର ସିଂହ ଓ ତାଙ୍କ ସାମନ୍ତମାନେ ମଧ୍ୟ ସମସ୍ତ ପରାଜିତ ସୈନ୍ୟଙ୍କୁ ନିଜ ରାଜ୍ୟରୁ ବିତାଡ଼ିତ କରିବା ପାଇଁ ସେମାନଙ୍କ ଅନୁଧାବନ

କଲେ । ଘୁମୁସର ରାଜା ଯୁଦ୍ଧରେ ପରାସ୍ତ ହୋଇ ଫେରି ଆସୁଥିବାର ଦେଖି ଘୁମୁସରର ପ୍ରଜାମାନେ ନିଜ ରାଜାଙ୍କୁ ସାହାଯ୍ୟ କରିବାରୁ ନିଜେ କାଳିଆ-ଘୋଡ଼ା ଉପରେ ବସି ଚଢ଼ି ନେଇଥିବା ଧରାକୋଟ ରାଜା ରାଜେନ୍ଦ୍ର ସିଂହଙ୍କୁ ଘୁମୁସରର ଅନ୍ୟ କେତେକ ସୈନ୍ୟ ଘୋଡ଼ାକୁ ଆଗୁଳି ରାଜେନ୍ଦ୍ର ସିଂହଙ୍କ ଗନ୍ତବ୍ୟପଥ ରୋଧ କରିଥିଲେ ।

ଏହି ସମୟରେ ଧରାକୋଟର ସାମନ୍ତ କାଳିଆ ସିଂହ, ଦାମୋଦର-ସିଂହ ଓ ଶ୍ୟାମଧନ ସିଂହ ଅଶ୍ୱାରୋହଣ ପୂର୍ବକ ସେଠାକୁ ଯାଇ ଭଞ୍ଜ ରାଜାଙ୍କୁ ଓ ତାଙ୍କ ସୈନ୍ୟମାନଙ୍କୁ ଯୁଦ୍ଧରେ ପରାସ୍ତ କରି ନିଜ ରାଜାଙ୍କୁ ଶତ୍ରୁ କବଳରୁ ଉଦ୍ଧାର କରି ଏକ ବିରାଟ ପଟୁଆରରେ ନିଜ ଦୁର୍ଗକୁ ଫେରିଥିଲେ, ଦୁର୍ଗକୁ ଫେରିବା ସମୟରେ ଦେଖିଲେ ଯେ ଦୁର୍ଗର ଅନତିଦୂରରେ ଭଞ୍ଜବଂଶର ବହୁ ସାମନ୍ତଙ୍କ ଛିନ୍ନ ମୁଣ୍ଡ ଇତସ୍ତତଃ ହୋଇ ପଡ଼ିରହିଛି । ବିଜୟର ସ୍ମାରକ ଚିହ୍ନ ସ୍ୱରୂପ ଛିନ୍ନ ମୁଣ୍ଡ ପଡ଼ିଥିବା ସ୍ଥାନକୁ ଭଞ୍ଜ ଖାଇ ନାମରେ ନାମିତ କରି ସେଠାରେ ଏକ ଗ୍ରାମ ବସାଇ ହନୁମାନ ଦ୍ୱାର ନାମକରଣ କଲେ । ଏହି ଘଟଣା ଭଞ୍ଜ ରାଜା ଶୁଣି ଯେଉଁଠାରେ ଧରାକୋଟର କାଳିଆ ଘୋଡ଼ାକୁ ଭଞ୍ଜ ବୀରମାନେ ଅଟକାଇ ଦେଇଥିଲେ ସେଠାରେ "କାଳିଆ ଘୋଡ଼ା" ଓ ତାର ଅନତି ଦୂରରେ ଉଭୟ ରାଜ୍ୟର ସୀମାନ୍ତ ଅଞ୍ଚଳରେ ଧରାକୋଟ ରାଜାଙ୍କୁ ଅପମାନିତ କରିବା ପାଇଁ "ସିଂହ ମର୍ଦ୍ଦନ" ନାମ ଦୁଇଗୋଟି ଗ୍ରାମ ସ୍ଥାପନ କରିଥିଲେ ।

ଏହି କଥା ଶୁଣି ଧରାକୋଟ ରାଜା ନିଜକୁ ଅପମାନିତ ମନେ କରି ଏହାର ପ୍ରତିଶୋଧ ନେବା ପାଇଁ ଭଞ୍ଜ ରାଜାଙ୍କ ଶ୍ରୀହସ୍ତ କଟାରୀ ଅପହରଣ କରି ଆଣିବା କୌଶଳ ପାଞ୍ଚିଲେ । ଏହି କାମରେ ଧରାକୋଟ ରାଜ୍ୟ 'ଓଳମ୍ବା' ଗ୍ରାମରେ ଜଣେ ପାଣ ଜାତୀୟ ଲୋକ ରାଜାଙ୍କୁ ସାହାଯ୍ୟ କରିଥିଲେ । ରାଜାଙ୍କ ସାହାଯ୍ୟ କ୍ରମେ ଏହି ବ୍ୟକ୍ତି ନିଜ ସହିତ ଏକ ଗୋଇସାପ ନେଇ ଘୁମୁସର ରାଜାଙ୍କ ନଗର ପାଚେରି ତଳେ ରହି ଅର୍ଦ୍ଧରାତ୍ର ସମୟରେ ଭଞ୍ଜ ରାଜା

ନବ୍ରିତାବସ୍ଥାରେ ଥିବା ସମୟରେ ତାହାଙ୍କ ଖଣ୍ଡା ଉପରୁ ନେଇ ଆସି ଧରାକୋଟ ରାଜାଙ୍କୁ ସମର୍ପଣ କଲା । ରାଜା ଖଣ୍ଡାଟି ପାଇ ମହାନନ୍ଦରେ ତାକୁ ୧୨୦ ଭରଣ ଜମି ଇନାମ ସ୍ୱରୂପ ଦେଲେ । ପୁଣି ରାଜ ଗଡ଼ ପାଣିଦ୍ୱାର ଜଗିବା କାମରେ ତାକୁ ନିଯୁକ୍ତ କଲେ । ଏଥିରେ ପାଣ ସନ୍ତୋଷ ପ୍ରକାଶ ନକରି ରାଜାଙ୍କ ଠାରୁ ଉପ୍ରୋଚିତ ସମ୍ମାନ ପାଇବା ନିମନ୍ତେ ରାଜାଙ୍କୁ ଅନୁ-ରୋଧ କଲା । ସେ ରାଜାଙ୍କୁ ଅନୁରୋଧ କରିଥିଲା—ସେ ଓ ତାର ଭବିଷ୍ୟତ ବଂଶଧର ମାନଙ୍କୁ ରାଜ ଉତ୍ସବ ସମୟରେ ଭଦ୍ରଲୋକ ଭାବରେ ସମ୍ମାନ ଓ ବ୍ୟବହାର ପ୍ରଦର୍ଶନ କରାଯାଉଥିବ । ରାଜା ଏକଥା ଶୁଣି ପାଣକୁ ଉପଯୁକ୍ତ ପୋଷାକ ପ୍ରଦାନ କରି ତାର ଅନୁରୋଧକୁ ସ୍ୱୀକୃତି ପ୍ରଦାନ କଲେ । ସେହି ସମୟରୁ ପାଣର ଜଣେ ବଡ଼ ଅଂଶୀଦାର ପୁରୁଷାନୁକ୍ରମେ ରାଜ ଉତ୍ସବ ମାନଙ୍କରେ ପାଉଛନ୍ତି ତଳେ ଉପଯୁକ୍ତ ପୋଷାକ ପରିଧାନ କରି ଭଦ୍ରଲୋକ ସାଜି ଛିଡ଼ା ହୋଇ ମର୍ଯ୍ୟାଦା ପାଇ ଆସୁଅଛି ।

ଧରାକୋଟ ରାଜା ଏହି ଖଣ୍ଡା ପାଇବା ପରେ ଘୁମୁସର ରାଜାଙ୍କ ନିକଟକୁ ଏକ ପତ୍ର ଲେଖି ଜଣାଇଲେ—"ବର୍ତ୍ତମାନ ଶ୍ରୀହସ୍ତ ଖଣ୍ଡା କାହା ହାତରେ ? ଓ କାର ବଳ ଓ ପରାକ୍ରମ କେତେ ପରୀକ୍ଷା କରାଯାଉ" । ଏହି ପତ୍ରପାଇ ରାଜା କ୍ରୋଧରେ ଲଜ୍ଜିତ ହୋଇ ପୁନରପି ଧରାକୋଟ ଆକ୍ରମଣର ଆୟୋଜନ କଲେ । ସେତେବେଳେ ତ୍ରିବିକ୍ରମ ଭଞ୍ଜଙ୍କ କ୍ରୂର ଓ ନିଷ୍ଠୁର ଶାସନରେ ଘୁମୁସର ପ୍ରଜାମାନେ ଅତିଷ୍ଠ ହୋଇ ଲକ୍ଷ୍ମଣ ଭଞ୍ଜଙ୍କୁ ରାଜ୍ୟରେ ରାଜା କରାଇବା ପାଇଁ ଚେଷ୍ଟା କରୁଥିଲେ । ଇଂରେଜମାନେ ମଧ୍ୟ ତ୍ରିବିକ୍ରମ-ଭଞ୍ଜଙ୍କ ରାଜ୍ୟ ପରିଚାଳନାରେ ଅଧର୍ମାଚରଣ ଦେଖି ତାଙ୍କୁ ରାଜପଦରୁ ବିଚ୍ୟୁତ କରିବା ପାଇଁ ମନସ୍ଥ କରିଥିଲେ । ଏହି ସୁଯୋଗ ଜାଣି ରାଜେନ୍ଦ୍ର-ସିଂହ ଆସିକାରେ ଅବସ୍ଥିତ ଇଂରେଜୀ କମ୍ପାନୀଙ୍କ ଭୂରକ୍ଷକ କରସୋଣ୍ଡୀଲାଙ୍କ ସାହାଯ୍ୟରେ ଇଂରେଜ ପ୍ରତିନିଧିଙ୍କୁ ଗଞ୍ଜାମ ଦୁର୍ଗରେ ତ୍ରିବିକ୍ରମଙ୍କ କୁଶାସନ ବିରୁଦ୍ଧରେ ୧୭୬୮ ଖ୍ରୀ. ରେ ସମସ୍ତ ବିଷୟ ବୁଝାଇ ତାଙ୍କୁ ସିଂହାସନ ଚ୍ୟୁତ କରାଇ ନିଜ ଭଣଜା "ଲକ୍ଷ୍ମଣ ଭଞ୍ଜ"ଙ୍କୁ ସିଂହାସନାରୂଢ଼ କରାଇବା

ବ୍ୟବସ୍ଥା କରି ମହାନନ୍ଦରେ ନିଜ ରାଜ୍ୟକୁ ଫେରିଲେ । ଏହି ସିଂହାସନ ପାଇଁ ଅବଶ୍ୟ ତ୍ରିବିକ୍ରମ ଭଞ୍ଜ ଓ ଲକ୍ଷ୍ମଣ ଭଞ୍ଜଙ୍କ ମଧ୍ୟରେ କିଛି କାଳ ଯୁଦ୍ଧ ହୋଇଥିଲା । କିନ୍ତୁ ଯୁଦ୍ଧରେ ତ୍ରିବିକ୍ରମ ପରାସ୍ତ ହୋଇ ଘୁମୁସର ତ୍ୟାଗକରି ଦଶପଲ୍ଲା ଓ ବୌଦ ରାଜ୍ୟରେ ଆଶ୍ରୟ ଗ୍ରହଣ କଲେ । ତ୍ରିବିକ୍ରମଙ୍କ ରାଜ୍ୟ ଚ୍ୟୁତି ଯୋଗୁଁ ଧରାକୋଟ ପୁନର୍ବାର ଘୁମୁସର ରାଜାଙ୍କ ଆକ୍ରମଣରୁ ରକ୍ଷା ପାଇ ଯାଇଥିଲା ।

ରାଜା ଅତ୍ୟନ୍ତ ଧର୍ମାନୁରାଗୀ ଥିଲେ ଓ ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । ଏଣୁ ସେ ସିଂହଦ୍ୱାର ନିକଟରେ ଏକ ମଣ୍ଡପ ନିର୍ମାଣ କରି ଶାସ୍ତ୍ରୀୟ ନିୟମ ପ୍ରକାରେ ବନଯାଗ କରି ନିମ୍ବଗଛ ଛେଦନ କରି ଉତ୍ତମ କାରିଗରଙ୍କ ସାହାଯ୍ୟରେ ଶ୍ରୀ ଜଗନ୍ନାଥ, ସୁଭଦ୍ରା, ବଳଭଦ୍ର ଓ ସୁଦର୍ଶନଙ୍କ ଦାରୁମୂର୍ତ୍ତି ନିର୍ମାଣ କରାଇ ଦେବତାମାନଙ୍କୁ ପ୍ରତିଷ୍ଠା କରି ମନ୍ଦିରରେ ବିଜେ କରାଇଥିଲେ ଓ ମହାପ୍ରଭୁଙ୍କ ଭୋଗରାଗ ଓ ଯାନିଯାତ୍ରା ପାଇଁ ହରିପୁର ଗ୍ରାମରେ ପ୍ରଚୁର ଭୂସମ୍ପତ୍ତି ଦାନ କଲେ । ଏହି ବିଗ୍ରହ ମାନଙ୍କୁ ପ୍ରତିଷ୍ଠା କରିବା ପୂର୍ବରୁ ଶ୍ରୀକ୍ଷେତ୍ରକୁ ବିଜେ କରି ଜଗନ୍ନାଥଙ୍କ ନିକଟରେ ଗୁହାରିଆ ପଡ଼ି ଅନୁଜ୍ଞା ଆଣିଥିଲେ ଓ ପୁରୀର ରାଜା ବୀରକିଶୋରଙ୍କ ସହିତ ସାକ୍ଷାତ କରି ନିଜ ରାଜ୍ୟରେ ରଥଯାତ୍ରା କରିବା ପାଇଁ ଅନୁମତି ଆଣିଲେ । ରାଜାଙ୍କ ଅନୁରୋଧ କ୍ରମେ ବୀରକିଶୋରଦେବ ରଥ ନିର୍ମାଣପାଇଁ ପୁରୀରୁ ବଢ଼େଇ କାରିଗରମାନଙ୍କୁ ପଠାଇଥିଲେ ଓ ଜଗନ୍ନାଥ ମହାପ୍ରଭୁଙ୍କ ପୂଜା ଯାନିଯାତ୍ରା ସକଳ ଦେବନୀତି ବିଷୟରେ ଶିକ୍ଷା ଦେବା ପାଇଁ କୋଠବାଲ୍ଲୁ ମହାପାତ୍ରଙ୍କୁ ପଠାଇଥିଲେ । କୋଠବାଲୁ ମହାପାତ୍ର ଧରାକୋଟରେ ଏକବର୍ଷ ରହି ପଣ୍ଡା, ପତି, ସୁଆର ଟହଲିଆ ପ୍ରଭୃତି ନିଯୁକ୍ତ କରି ଦେବନୀତି କରିବା ପାଇଁ ଉପଯୁକ୍ତ ଶିକ୍ଷା ଦେଲେ । ମହାପାତ୍ରଙ୍କ ପୁରୀ ବିଦାୟ ସମୟରେ ରାଜା ଓଡିଶା ଠାକୁରଙ୍କ ପାଇଁ ଭୋଗ ନିମନ୍ତେ ପଣ୍ଡାଙ୍କୁ ନାରଣପୁର ଗ୍ରାମ ଦାନ କରିଥିଲେ । ପୁରୀରେ "ଶ୍ୟାମକୁଞ୍ଜ" ମଠ ନିର୍ମାଣକରି ରସିକରାଜଙ୍କ ସେବା ସକାଶେ ଭୂସମ୍ପତ୍ତି ଦାନ କରି ଭଗବାନ ଗୋସାଇଁଙ୍କୁ ସମର୍ପଣ କଲେ । ଶ୍ରୀକ୍ଷେତ୍ରରେ ବିଜେ ହୋଇଥିବା

ଝମଲାଦେବୀଙ୍କ ଭୋଗ ନିମନ୍ତେ ପୁରୀ ପାଟଜ୍ୟୋଷୀ ମହାପାତ୍ରଙ୍କୁ ହରପୁର ପାଇତାଣରେ ୭୦ ଭରଣ ଜମି ଦାନ ଦେଇଥିଲେ ।

ସ୍ୱୀୟ ପିତୃଦେବ ମହାନ୍ତ ରାମଚନ୍ଦ୍ର ସିଂହଙ୍କ ଦ୍ୱାରା ପ୍ରତିଷ୍ଠିତ ବୃନ୍ଦାବନଚନ୍ଦ୍ର ମହାପ୍ରଭୁଙ୍କ ପାଇଁ ରାଜବାଟୀରେ ଏକ ସ୍ଥାୟୀମନ୍ଦିର ନିର୍ମାଣ କରିଥିଲେ । ଏହି ମନ୍ଦିରରେ ପୂର୍ବରୁ ତାଙ୍କ ଜ୍ୟେଷ୍ଠ ଭ୍ରାତା ଆଣିଥିବା ଦଧିବାମନ ବିଗ୍ରହଙ୍କୁ ବିଜେ କରାଇଥିଲେ । ଏହି ବେଢ଼ା ଭିତରେ ବୃନ୍ଦାବନରୁ ଆସିଥିବା ବୈଷ୍ଣବ ମାନଙ୍କ ନିମନ୍ତେ ଦୈନନ୍ଦିନ ପଙ୍ଗତର ବ୍ୟବସ୍ଥା କରିଥିଲେ । ସେ ଅତ୍ୟନ୍ତ ଦାନ ପରାୟଣ ଥିଲେ । ଏଣୁ ରାଜ୍ୟର ବହୁ ଭୂସମ୍ପତ୍ତି ଦେବତା ଓ ବ୍ରାହ୍ମଣ ମାନଙ୍କ ଉଦ୍ଦେଶ୍ୟରେ ଦାନ କରିଥିଲେ । ସେ ପ୍ରତିନିତ୍ୟ ବ୍ରାହ୍ମଣ ମାନଙ୍କୁ ଅନ୍ନବସ୍ତ୍ର ଦାନ ଦେଉଥିଲେ । କର୍ମଠ, ଶୁଚିବନ୍ତ ଓ ଧର୍ମପରାୟଣ ବ୍ରାହ୍ମଣମାନଙ୍କୁ "ଶାଳଗ୍ରାମ" ଦାନ ଦେଇ କିଛି କିଛି ଜମି ମଧ୍ୟ ଦାନ କରୁଥିଲେ ।

ରାଜେନ୍ଦ୍ରପୁର ଗ୍ରାମରେ ବିଜେ ହୋଇଥିବା ଶ୍ରୀ ଗୋପୀନାଥ ସ୍ୱାମୀ, ପିତଳ ସନ୍ତୋଷପୁରରେ ବିଜେ ହୋଇଥିବା ଶ୍ରୀ ଗୋପୀନାଥସ୍ୱାମୀ, ଶ୍ରୀଜଗନ୍ନାଥ ସ୍ୱାମୀ ପୁରୀ, କଟକ ଜିଲ୍ଲାର ବରାଳରେ ବିଜେ ହୋଇଥିବା ଶ୍ରୀ ବାଲୁକେଶ୍ୱର ସ୍ୱାମୀ, ନୂଆପଲ୍ଲୀର ବିଜେ ହୋଇଥିବା ଶ୍ରୀ ରଘୁନାଥ ସ୍ୱାମୀ, ପୋଡ଼ଙ୍ଗୀରେ ବିଜେ ହୋଇଥିବା ଶ୍ରୀ ଗୋପୀନାଥ ସ୍ୱାମୀ, ପିତଳର ଶ୍ରୀ ଚୈତନ୍ୟ ସ୍ୱାମୀଙ୍କୁ ହରପୁର ପାଇତାଣରେ ଭୂସମ୍ପତ୍ତି ଦାନ କରିଥିବା ସରକାରୀ ନଥିପତ୍ରରୁ ଜଣାଯାଏ । ଗଞ୍ଜାମର ଖଣ୍ଡାରେ ବିଜେ ହୋଇଥିବା କାଳେଶ୍ୱର ମହାପ୍ରଭୁ ଗୋଟିଏ ଶକ୍ତିରେ ଦୁଇଟି ଲିଙ୍ଗରେ ରାମେଶ୍ୱର ଓ କାଳେଶ୍ୱର ନାମରେ ଅଭିହିତ ହେଉଛନ୍ତି । କାଳେଶ୍ୱର ମହାପ୍ରଭୁଙ୍କ ପରି ପୋଡ଼ଙ୍ଗିରେ ବିଜେ ହୋଇଥିବା ବାଲୁକେଶ୍ୱର ମନ୍ଦିର ଅବସ୍ଥିତ । ଏଠାରେ ଗୋଟିଏ ଶକ୍ତିରେ ବାଲୁକେଶ୍ୱର ଓ ସ୍ୱପ୍ନେଶ୍ୱର ନାମରେ ଦୁଇଟି ଲିଙ୍ଗ ପୂଜା ପାଉଛନ୍ତି । ଏ ଅତି ପ୍ରତ୍ୟକ୍ଷ ଦେବତା ଅଟନ୍ତି ରାଜା ରାଜେନ୍ଦ୍ର ସିଂହ ଏହି ଦେବ ତାଙ୍କ ଉଦ୍ଦେଶ୍ୟରେ ୨୫ ଏକର ଜମି ଦାନ କରିଥିଲେ ।

ସେ ନିଜ ନାମରେ ଧର୍ମକୋଟରେ ପାଞ୍ଚଗୋଟି ଶାସନ ବସାଇଥିଲେ । ସେଥିରୁ ଗୋଟିଏ ଗ୍ରାମକୁ ରାଜେନ୍ଦ୍ରପୁର ନାମରେ ନାମିତ କରି ତାଙ୍କର ଗୁରୁବଂଶର ଜଣେ ପଣ୍ଡିତ ଓ ବୈଷ୍ଣବ ବ୍ରାହ୍ମଣ ଦାଶରଥି ରାଜଗୁରୁ ଓ ନାରାୟଣ ଭଞ୍ଜଙ୍କ ସମେତ ଅନ୍ୟ ୨ ଜଣଙ୍କୁ ତା ୮–୫–୧୭୬୯ ବୈଶାଖ ଶୁକ୍ଳ ତୃତୀୟା ଦିନ ଦାନ କରିଥିଲେ । ବ୍ରାହ୍ମଣ ମାନଙ୍କ ଭରଣପୋଷଣ ପାଇଁ ଖାରଗୁଡ଼ା ଗ୍ରାମ ଦାନ କରିଥିଲେ ।

ଏହି ଶାସନ ଏକଦା ଧର୍ମ, ରାଜନୀତି, ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ଆଲୋଚନାର କେନ୍ଦ୍ର ସ୍ଥଳଥିଲା । ଏହି ଶାସନରେ ସ୍ୱର୍ଗତ ବାମଦେବ ବ୍ରହ୍ମାଶ୍ରେଷ୍ଠ, ଗୋବିନ୍ଦ ଦାସ, ଗୋପୀନାଥ ମହାପାତ୍ର, ପୀତାମ୍ବର ବିଦ୍ୟାଭୂଷଣ, ବାଇଗୃନ୍ଦ ସାହିତ୍ୟଭୂଷଣ, ଅନନ୍ତ କବିରତ୍ନ, ବଳଭଦ୍ର ସାହିତ୍ୟଭୂଷଣ, ବାମଦେବ ତର୍କାଳଙ୍କାର, ଧରଣୀଧର ମିଶ୍ର, ନୀଳକଣ୍ଠ ବିଦ୍ୟାଭୂଷଣ ପ୍ରଭୃତି ବହୁ ପ୍ରତିଭାଶାଳୀ ପଣ୍ଡିତ ମାନେ ଜନ୍ମ ଗ୍ରହଣ କରିଥିଲେ । ଏମାନଙ୍କ ମଧ୍ୟରୁ କେତେକଙ୍କ ସାହିତ୍ୟ କୃତି ଉପରେ ପୃଥକ୍ ଭାବେ ଆଲୋଚନା ପରେ କରାଯିବ ।

ଏହି ବଂଶରେ ସ୍ୱର୍ଗତ ଲିଙ୍ଗରାଜ ମିଶ୍ର ତାଙ୍କ ପିତୃବ୍ୟ ଠାରୁ ସଂସ୍କୃତ ଶିକ୍ଷାକରି ମାତ୍ର ୧୮ ବର୍ଷ ବୟସରେ ବିଦ୍ୟାଚର୍ଚ୍ଚାରେ ଆନ୍ଧ୍ର ପଣ୍ଡିତମାନଙ୍କୁ ଭିନବଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପରାଜିତ କରିଥିବା ହେତୁ ମଞ୍ଜୁଷା ରାଜା ତାଙ୍କୁ ବିଦ୍ୟାଭୂଷଣ ଉପାଧିରେ ଭୂଷିତ କରିଥିଲେ ।

ଉପରୋକ୍ତ ଶାସନ ବ୍ୟତୀତ ସେ ନିଜ ନାମରେ ଶ୍ରଦ୍ଧାପୁର ନିକଟରେ ଉଖୁଡ଼ାପଟା ରାଜେନ୍ଦ୍ରପୁର, ତଡ଼ଙ୍ଗା ନିକଟରେ କରି ରାଜେନ୍ଦ୍ରପୁର ଟିଗିରି ନିକଟରେ ବଡ଼ ରାଜେନ୍ଦ୍ରପୁର ଏବଂ ପୋଡ଼ଙ୍ଗୀ ଓ ମାଟୁଡ଼ି ମଧ୍ୟରେ 'ଘଡ଼ିକା ରାଜେନ୍ଦ୍ରପୁର' ନାମରେ ଅନ୍ୟ ଚାରିଗୋଟି ଶାସନ ବୈଦିକ ବ୍ରାହ୍ମଣମାନଙ୍କୁ ୧୭୭୮ ଖ୍ରୀଷ୍ଟାବ୍ଦରେ ଦାନ କରିଥିଲେ । ଏଗୁଡ଼ିକ ଏକ ଚକିଡ଼ି ଦାନଥିଲା ।

ଉପରୋକ୍ତ ଶାସନରୁ ଘଡ଼କା ରାଜେନ୍ଦ୍ରପୁର ଶାସନର ଅସ୍ତିତ୍ୱ କୌଣସି ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ଲୋପ ପାଇଛି । ଶାସନର ଶିବାଳୟ ଏହାର ମୂକ ସାକ୍ଷୀ ରୂପେ ଅଦ୍ୟାପି ରହିଛି ।

ଘୁମୁସର ଯୁଦ୍ଧବେଳେ ରାଜା ତ୍ରିବିକ୍ରମ ଭଞ୍ଜଙ୍କ କବଳରୁ ନିଜର ଅସୀମ ବୀରତ୍ୱ, ପରାକ୍ରମ ଓ କୌଶଳ ପ୍ରୟୋଗକରି ରାଜାଙ୍କୁ ଯୁଦ୍ଧ ଭୂମିରୁ ମୁକୁଳାଇ ଆଣି ଯୁଦ୍ଧରେ ରାଜାଙ୍କୁ ବିଜୟ ଶ୍ରୀ ମଣ୍ଡିତ କରିଥିବା ହେତୁ ରାଜା ରାଜେନ୍ଦ୍ର ସିଂହ ସାମନ୍ତ ଶ୍ୟାମଘନ ସିଂହଙ୍କ ନାମାନୁସାରେ ଗୋଟିଏ ଶାସନ ବସାଇଥିଲେ । ଏହି ଶାସନ ନବଶାସନର ଅନ୍ତର୍ଗତ । ଏହି ଶାସନ ଏକ ଖଣ୍ଡିଚିଆ ଦାନ ଅଟେ ।

ସେ ଶସ୍ତ୍ର ଓ ଶାସ୍ତ୍ର ବିଦ୍ୟାରେ ଧୁରୀଣଥିଲେ । ତାଙ୍କ ରାଜସଭା ବହୁ ପଣ୍ଡିତ ଓ ଜ୍ୟୋତିଷଙ୍କ ଦ୍ୱାରା ପୂର୍ଣ୍ଣଥିଲା । ଏକଦା ନିଜ ରାଜଗୁରୁ, ପଣ୍ଡିତ ଜ୍ୟୋତିଷ ଓ ଭଦ୍ରବ୍ୟକ୍ତି ମାନଙ୍କୁ ଡ଼କାଇ ନିଜ ଦୁର୍ଗର ବୃନ୍ଦାରେ ଏକ ସଭାର ଆୟୋଜନ କରି ରାଜ୍ୟରେ ନୂତନ ଶାସନ ଦାନ କରିବାର ଆଲୋଚନା କରୁଥିଲେ । ଏହି ସମୟରେ ଗୋଟିଏ ଝିଟିପିଟି ବୃନ୍ଦା ଦ୍ୱାରରେ ବାରମ୍ବାର ଗତାଗତ ହେଉଥିବା ଦେଖି ରାଜା ଜ୍ୟୋତିଷ ପଣ୍ଡିତମାନଙ୍କୁ ଏହାର କାରଣ ନିର୍ଣ୍ଣୟ କରିବା ପାଇଁ କହିଲେ । ଏହାଶୁଣି ଜ୍ୟୋତିଷ ପଣ୍ଡିତମାନେ କୋଷ୍ଠୀ ସାଧିଲେ । ପରିଶେଷରେ ଜଣେ ଜ୍ୟୋତିଷୀ କହିଲେ ଏହାର ବିବାହ ମଙ୍ଗଳକୃତ୍ୟ ଅତି ନିକଟରେ ପ୍ରାୟ ଦୁଇଘଣ୍ଟା ଭିତରେ ହେବ । ଏହାର କନ୍ୟା ପ୍ରାୟ ବୃଦ୍ଧିବନ ହେଲା ଦକ୍ଷିଣ ଦିଗରୁ ବାହାରିଲାଣି । ସେଥିହେତୁ ସେ ଆନନ୍ଦରେ ଗତାଗତ ହେଉଛି । ଏହି ସମୟରେ ରାଜ-ମହେନ୍ଦ୍ରୀଠାରୁ ଆଗତ ଜଣେ ବ୍ୟକ୍ତି ଗ୍ରାମେ ଗ୍ରାମେ ଚିତ୍ରପଟ ଦେଖାଇ ଭିକ୍ଷାଟନ କରି ରାଜନଗରରେ ପହଞ୍ଚିଲା । ଭିକ୍ଷୁକଟି ଚିତ୍ରପଟ ଗୁଡିକ ପ୍ରଦର୍ଶନ କରି ପୁଣି ତାର ତ.ମ୍ବିନଳରେ ରଖି ଦେଉଥାଏ । ରାଜବାଟୀକୁ ଆସିବା ପୂର୍ବରୁ ତାମ୍ବିନଳରେ ଝିଟିପିଟିଟିଏ ରହିଥିଲା । ଭିକ୍ଷୁକର

ଅନୁରୋଧ କ୍ରମେ ରାଜବାଟୀକୁ ଆସି ଶରପଟ ଦେଖାଇବା ପାଇଁ ରାଜା ଅନୁମତି ଦେଲେ । ଭକ୍ତଙ୍କ ସଭାସ୍ଥଳରେ ଉପସ୍ଥିତ ହୋଇ ଶରପଟ କାଢ଼ି ଦେଖାଇବା ସମୟରେ ତାମ୍ବିନଲାରୁ ଝିଟିପିଟି ବାହାରି ପଡ଼ି ବୃଦ୍ଧମା ଖମ୍ବ ଉପରେ ଚଢ଼ି ଦୁଲକୁ ଯାଇ ଦୁଲରେ ଗତାଗତ ହେଉଥିବା ଝିଟିପିଟି ସହ ଯୋଟ ହୋଇଗଲା । ଯେଉଁ ଜ୍ୟୋତିଷୀ ଏହି ବିଷୟ କହିଥିଲେ ସେ ହେଉଛନ୍ତି ମଙ୍ଗଳପୁର ଗ୍ରାମର ରଘୁନାଥ ଦାସ, ରାଜା ଉକ୍ତ ଦାସଙ୍କ ନିର୍ଭୁଲ ଗଣନାରେ ପ୍ରୀତ ହୋଇ ସାହାସପୁର ଗ୍ରାମରେ ୬° ଭରଣ ଜମି ଦାନ କରି ମଙ୍ଗଳପୁରର ଗୋବିନ୍ଦଜୀଉଙ୍କ ପୂଜକ କାର୍ଯ୍ୟରେ ନିଯୁକ୍ତ କରିଥିଲେ ।

ତାହାଙ୍କର ଦେବତା, ବ୍ରାହ୍ମଣ ଓ ବୈଷ୍ଣବ ମାନଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଥିଲା । ଏଣୁ ଜୀବନର ଅନ୍ତିମ ସମୟ ଶ୍ରୀକ୍ଷେତ୍ରରେ ବିତାଇବା ପାଇଁ ମନସ୍ଥ କରି ନିଜର ସାମନ୍ତ ଖାଲ ଦାମୋଦର ସିଂହଙ୍କ ଓ ଦେବାନ ଦାଶରଥି ଦାସଙ୍କ ହସ୍ତରେ ରାଜ୍ୟର ଭାର ଅର୍ପଣ କରି କେତେଜଣ ପଣ୍ଡିତଙ୍କ ସହ ପୁରୀରେ ଅବସ୍ଥାନ କଲେ । ରାଜାଙ୍କ ଅନୁପସ୍ଥିତିରେ ରାଜ୍ୟର ଶାସନକାର୍ଯ୍ୟରେ ଗୁରୁତର ବିଶୃଙ୍ଖଳା ସୃଷ୍ଟି ହେଲା । ପ୍ରଜାମାନଙ୍କ ଅଭାବ ଅସୁବିଧା ଦୂର କରିବାକୁ ଦେବାନ ଅକ୍ଷମ ହୋଇ ପଡ଼ିଲେ । ଉପରୋକ୍ତ କାରଣ ଯୋଗୁଁ ସାମନ୍ତ ଓ ପ୍ରଜାମାନେ ଦେବାନଙ୍କ ପ୍ରତି କ୍ରୋଧ ପ୍ରକାଶ କରି ତାଙ୍କୁ ପ୍ରାଣରେ ମାରିଦେଲେ । ରାଜା ଏହି ଖବର ପାଇ ପୁରୀରୁ ପ୍ରତ୍ୟାବର୍ତ୍ତନ କରି ସାମନ୍ତ ମାନଙ୍କ କାର୍ଯ୍ୟ କଳାପରେ ଘୋର ଅସନ୍ତୋଷ ପ୍ରକାଶ କରି ରାଜ୍ୟଭାର ପୁନର୍ବାର ନିଜ ହାତକୁ ନେଲେ । ସାମନ୍ତମାନେ ଏକଜୁଟ ହୋଇ ରାଜ୍ୟର ରାଜସ୍ୱ ଗନ୍ତାଘର ଲୁଟି କରିବାକୁ ବସିଲେ । କିନ୍ତୁ ରାଜା ଅତି ଦକ୍ଷତାର ସହ ଏମାନଙ୍କ ଚକ୍ରାନ୍ତକୁ ପଣ୍ଡ କରିଥିଲେ ।

ସେ ସମୟରେ ଧରାକୋଟରେ ଜାହାଡ଼ା ଓ ମଙ୍ଗଳପୁର ଗ୍ରାମର ବିଶେଷ ପ୍ରାଧାନ୍ୟ ଥିଲା । ଏହି ଦୁଇ ଗ୍ରାମରେ ଥିବା ବିଶିଷ୍ଟ ପ୍ରଜାମାନଙ୍କ ପରାମର୍ଶ ରାଜା ଗ୍ରହଣ କରୁଥିଲେ । ଜାହାଡ଼ାର ଜଣେ ବିଜ୍ଞ, ପ୍ରଭାବଶାଳୀ

ବ୍ୟକ୍ତି ଜୟକୃଷ୍ଣଙ୍କୁ ବ୍ୟବର୍ତ୍ତା ଶାଢ଼ ଦେଇ ଦିବାନ କାର୍ଯ୍ୟରେ ନିଯୁକ୍ତ କରି ପୁନର୍ବାର ଶ୍ରୀକ୍ଷେତ୍ରକୁ ଯାତ୍ରାକଲେ । ରାଜେନ୍ଦ୍ରସିଂହଙ୍କ ଚରିତ୍ର ଓ ଆଧ୍ୟାତ୍ମିକ ପରାୟଣତା ବିଷୟରେ କୃଷ୍ଣସିଂହ ତାଙ୍କ ମହାଭାରତରେ ଉଲ୍ଲେଖ କରିଥିବା ବିଷୟରୁ ଦୁଇପଦ ଏଠାରେ ଉଦ୍ଧୃତ କରାଗଲା ।

ଧର୍ମରେ ସେ ଅବନୀ ମଣ୍ଡଳ ପାଳିଲେ
ଗୁରୁଦେବ ବ୍ରାହ୍ମଣ ପାଦରେ ବନ୍ଦିଲେ ।
ଦେବନରି ସଙ୍ଗରେ ଭରିଯା ପୁତ୍ରଙ୍କୁ
ବାହାରିଲେ ଗୋବିନ୍ଦ ଦ୍ୱାଦଶୀ ସ୍ନାନକୁ ।
କ୍ଷେତ୍ରରେ ଦିନା କେତେ ଭକ୍ତିରେ ରହିଲେ
ସେଠାରେ କାଳ ବଶେ ପ୍ରାଣ ହରାଇଲେ ।

ଉଲ୍ଲିଖିତ ବାକ୍ୟରୁ ଜଣାଯାଏ ରାଜେନ୍ଦ୍ର ସିଂହ ଅପୁତ୍ରକ ନଥିଲେ । ଯଦି ଅପୁତ୍ରକ ଥିଲେ ତାହାହେଲେ କୃଷ୍ଣସିଂହ "ଦେବନରି ସଙ୍ଗରେ ଭରିଯା ପୁତ୍ରଙ୍କୁ" ବୋଲି ଉଲ୍ଲେଖ କରିନଥାନ୍ତେ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ରାଜାଙ୍କର ପୁରୀରେ ମହାପ୍ରୟାଣ ପୂର୍ବରୁ ତାଙ୍କର ଔରସଜାତ ନାବାଳକ ପୁତ୍ରର ମୃତ୍ୟୁ ପୁରୀରେ ହୋଇଥିବ ।

ରାଜେନ୍ଦ୍ରସିଂହଙ୍କ ସହିତ ମନୋମାଳିନ୍ୟ ଓ ଅପତ୍ତି ହୋଇଥିବା ହେତୁ ତାଙ୍କର କନିଷ୍ଠ ଭାଇ ନୀଳାଦ୍ରିସିଂହ ଧରାକୋଟ ପରିତ୍ୟାଗ କରି ନୟାଗଡ଼ରେ ନିଜର ପୁତ୍ର କୃଷ୍ଣସିଂହଙ୍କ ସହିତ ବାସକରୁଥିଲେ । ପୁରୀରେ ରାଜାଙ୍କ ମୃତ୍ୟୁ ପୂର୍ବରୁ ନୀଳାଦ୍ରୀ ସିଂହଙ୍କର ନୟାଗଡ଼ରେ ସ୍ୱର୍ଗାରୋହଣ ହୋଇ ଯାଇଥିଲା । ପୁରୀରେ ଥିବା ସମୟରେ ରାଜେନ୍ଦ୍ରସିଂହଙ୍କ ସ୍ୱାସ୍ଥ୍ୟଭଙ୍ଗ ହେଲା । ଏହି ସମ୍ବାଦ ପାଇ କୃଷ୍ଣସିଂହ ପୁରୀ ଯାଇ ନିଜ ପିତୃବ୍ୟଙ୍କ ସେବା ଶୁଶ୍ରୂଷାରେ ଲାଗି ପଡ଼ିଲେ । ରାଜା ନିଜ ମୃତ୍ୟୁ ସନ୍ନିକଟ ଜାଣି ନିଜ ରାଜ୍ୟର ରାଜଗୁରୁ, ପୁରୋହିତ, ତାଲୁକାର ବିଶିଷ୍ଟ ପ୍ରଜା ଓ ସାମନ୍ତ ମାନଙ୍କ ନିକଟକୁ ପତ୍ରଦ୍ୱାରା ଜଣାଇ-

ହେଲେ ତାଙ୍କ ଅନ୍ତେ ଧରାକୋଟ ସିଂହାସନରେ କୃଷ୍ଣସିଂହ ଅଭିଷିକ୍ତ ହେବେ । ଏହି ପଦ ପାଇ ଧରାକୋଟର ବିଶିଷ୍ଟ ପ୍ରଜାମାନେ, ମଙ୍ଗଳପୁରର ପାତ୍ର, ଜାହାଡ଼ାର ଜମ୍ବୁ ବେବର୍ତ୍ତା, ପଣ୍ଡିତ, ପୁରୋହିତ ପ୍ରଭୃତି ପୁରୀଯାଇ ରାଜାଙ୍କୁ ସାକ୍ଷାତ କଲେ । ରାଜା ସେମାନଙ୍କୁ ଦେଖି ସନ୍ତୋଷ ପ୍ରକାଶ କରି କୃଷ୍ଣସିଂହ ତାଙ୍କ ଅନ୍ତେ ଧରାକୋଟର ରାଜା ହେବେ ବୋଲି ଘୋଷଣା କରି ରାଜଗୁରୁଙ୍କ ଅନୁପସ୍ଥିତିର କାରଣ ପଚାରିଲେ । ରାଜା ସ୍ୱତନ୍ତ୍ର ଭାବେ ରାଜଗୁରୁଙ୍କୁ ସେଠାରେ ଉପସ୍ଥିତ ହେବାପାଇଁ ନିମନ୍ତ୍ରଣ ନ ଦେଇଥିବା ହେତୁ ସେ ଆସିଲେ ନାହିଁ ବୋଲି ପଣ୍ଡିତମାନେ ଜଣାଇଲେ । ରାଜଗୁରୁ ପଣ୍ଡିତ ମାନଙ୍କ ଦ୍ୱାରା ରାଜାଙ୍କୁ ସମ୍ବାଦ ଦେଲେ ଯେ "କୃଷ୍ଣସିଂହ ଗାଦିରେ ବସି ରାଜା ହୋଇ ପୃଥକ୍ ନିମନ୍ତ୍ରଣ ଦେଲେ ସେ ଯିବେ" । ଏକଥା ରାଜେନ୍ଦ୍ରସିଂହ ଶୁଣି ଗଙ୍ଗାମାତା ମଠ ମହନ୍ତଙ୍କୁ ଗୁରୁଦେବରେ ବରଣ କରି ତାଙ୍କଠାରୁ ଦୀକ୍ଷା ଗ୍ରହଣ କରିବା ପାଇଁ କୃଷ୍ଣସିଂହଙ୍କୁ ଆଦେଶ ଦେଲେ । କୃଷ୍ଣସିଂହଙ୍କ ପୁରୀଠାରେ ରାଜଟୀକା ଦେଇ ଧରାକୋଟରେ ପାରମ୍ପରିକ ରୀତିରେ କୃଷ୍ଣସିଂହଙ୍କୁ ଅଭିଷେକ ଉତ୍ସବ ଅନୁଷ୍ଠିତ କରିବା ପାଇଁ ପରାମର୍ଶ ଦେଇ ସମସ୍ତ ପ୍ରଜାଙ୍କୁ ଧରାକୋଟ ପଠାଇଦେଲେ । କିନ୍ତୁ କୃଷ୍ଣସିଂହ ରାଜେନ୍ଦ୍ରସିଂହଙ୍କ ଅବସ୍ଥା ସଙ୍କଟାପନ୍ନ ଭାବି ତାଙ୍କ ନିକଟରେ ପୁରୀରେ ରହିଲେ । କିଛିଦିନ ପରେ ରୋଗ ଶଯ୍ୟାରେ ରାଧାକୃଷ୍ଣଙ୍କ ନାମ ଜପୁ ଜପୁ ଇହଧାମ ତ୍ୟାଗ କଲେ । ସେ ସମୟରେ କୃଷ୍ଣସିଂହ ନିକଟରେ ଥିବା ହେତୁ ତାଙ୍କର ମରଶରୀରକୁ ସ୍ୱର୍ଗ ଦ୍ୱାରଠାରେ ସତ୍କାର କରି ରାଜ ପ୍ରଥା ଅନୁସାରେ ତାଙ୍କର ସମସ୍ତ ଅନ୍ତ୍ୟେଷ୍ଟି କ୍ରିୟା ସମ୍ପନ୍ନ କରି ଧରାକୋଟ ଫେରିଥିଲେ ।

କୃଷ୍ଣସିଂହ ପୁରୀରୁ ଫେରିବା ପୂର୍ବରୁ ରାଜେନ୍ଦ୍ରସିଂହଙ୍କ ପୁଅ ବୋଲି ଦାବୀ କରୁଥିବା ବୈକୁଣ୍ଠସିଂହ ରାଜ୍ୟର କେତେକ ପ୍ରଜା ଓ ସାମନ୍ତଙ୍କୁ ମେଳି କରି ନିଜେ ଧରାକୋଟର ରାଜା ହେବା ପାଇଁ ଚେଷ୍ଟା କରୁଥିଲେ । କୃଷ୍ଣସିଂହଙ୍କ ଆଗମନ ପରେ ଉଭୟ ପକ୍ଷଙ୍କ ଭିତରେ ସଂଘର୍ଷ ସୃଷ୍ଟି ହୋଇ ସମାଧାନ ହେଲା । ଏହି ସମାଧାନର ସର୍ତ୍ତ ସ୍ୱରୂପ କୃଷ୍ଣସିଂହ ଧରାକୋଟର

ରାଜାହେଲେ ଓ ବୈକୁଣ୍ଠସିଂହ "କମାଗଡ଼" ପାଇଥିଲେ । କିନ୍ତୁ ବୈକୁଣ୍ଠଙ୍କ ମୃତ୍ୟୁପରେ କମାଗଡ଼ ଧରାକୋଟ ଜମିଦାରୀର ଅନ୍ତର୍ଭୁକ୍ତ ହୋଇଗଲା ।

ରାଜା ରାଜେନ୍ଦ୍ରସିଂହ ନିଜର ବାହୁବଳରେ ରାଜ୍ୟର ଅବସ୍ଥା ବହୁ ପରିମାଣରେ ଉନ୍ନତି କରିଥିଲେ । ସେ ପ୍ରଜାମାନଙ୍କୁ ଦୀର୍ଘ ୨୨ ବର୍ଷ ସୁଖରେ ପାଳନ କରି ୧୭୮୦ ଖ୍ରୀଷ୍ଟାବ୍ଦରେ ମାନବଲୀଳା ସମ୍ବରଣ କରିଥିଲେ ।

## ଦାମୋଦର ସିଂହ

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଦାମୋଦର ସିଂହ ଧରାକୋଟର ରାଜାଥିଲେ ଓ ସେ "ଉତ୍କଣ୍ଠୋମାଳିକା" ନାମକ ଏକ ଗ୍ରନ୍ଥ ସଂସ୍କୃତ ଶ୍ଳୋକାକାରରେ ପ୍ରଣୟନ କରିଥିବା ବିଷୟ ୬ ହରେକୃଷ୍ଣ ମହାତାବ ତାଙ୍କ ଓଡ଼ିଶା ଇତିହାସ ବହିରେ ଉଲ୍ଲେଖ କରିଛନ୍ତି । କିନ୍ତୁ ଧରାକୋଟ ରାଜବଂଶ ଇତିହାସରୁ ଜଣାଯାଏ ଦାମୋଦର ସିଂହ ନାମକ କୌଣସି ବ୍ୟକ୍ତି ସିଂହାସନାରୂଢ଼ କୌଣସି କାଳେ ହୋଇ ନାହାନ୍ତି । ଦାମୋଦର ସିଂହ ରାଜା ରାଜେନ୍ଦ୍ରସିଂହଙ୍କ ସମ ସାମୟିକ ଅନ୍ତର ସାମନ୍ତ ହୋଇଥିଲେ ଓ ରାଜାଙ୍କୁ ଶାସନ କାର୍ଯ୍ୟରେ ସାମନ୍ତ ରାଜା ରୂପେ ରହି ପରାମର୍ଶ ଦେଉଥିଲେ ଓ ଅନ୍ୟାନ୍ୟ ପଡ଼ୋଶୀ ରାଜାଙ୍କ ସହ ଯୁଦ୍ଧ ବିଗ୍ରହ ବେଳେ ସେନାପତି ରୂପେ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଉଥିଲେ । ସେ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଦଶକରେ ଜନ୍ମ ଗ୍ରହଣ କରି ପ୍ରାୟ ୭୫ ବର୍ଷ ବୟସରେ ସ୍ୱର୍ଗାରୋହଣ କରିଥିଲେ ।

ସେ ଏକାଧାରରେ ଜଣେ ପ୍ରଚଣ୍ଡ ଯୋଦ୍ଧା, ଉତ୍ତମ ଶାସକ ଓ ଧର୍ମପରାୟଣ ସାମନ୍ତ ରୂପେ ଖ୍ୟାତି ଲାଭ କରିଥିଲେ । ଘୁମୁସର ଯୁଦ୍ଧ ସମୟରେ ସେ ରାଜାଙ୍କୁ ଯୁଦ୍ଧରେ ସାହାଯ୍ୟ କରି ରାଜାଙ୍କ ସମ୍ମାନ ରକ୍ଷାକରି ପାରିଥିବା ହେତୁ ରାଜା ରାଜେନ୍ଦ୍ରସିଂହ ତାଙ୍କ ନାମରେ ଋଷିକୁଲ୍ୟା ନଦୀର ଉତ୍ତର ତଟରେ ଦାମୋଦରପୁର ନାମକ ଏକ ଶ୍ରୋତ୍ରୀୟ ବ୍ରାହ୍ମଣ ଶାସନ ଦାନ କରି

ବ୍ରାହ୍ମଣ ମାନଙ୍କ ଭରଣପୋଷଣ ପାଇଁ ୧୭୭୮ ଖ୍ରୀଷ୍ଟାବ୍ଦରେ ଖଜୁରିଆ ପାଇ-ଡାରେ ପ୍ରାପ୍ତ ୫୦୦ ଭରଣ ଭୂମି ଦାନ କରିଥିଲେ ।

ସଂସ୍କୃତ ସାହିତ୍ୟରେ ତାଙ୍କର ଅଗାଧ ପାଣ୍ଡିତ୍ୟଥିଲା । ସେ ପରମ ବୈଷ୍ଣବ ଥିଲେ । ଏଣୁ ଶ୍ରୀକୃଷ୍ଣଙ୍କ ନାମ ଶ୍ରବଣରେ ଓ ତାଙ୍କ ବିଗ୍ରହ ଦର୍ଶନରେ ଆନନ୍ଦରେ ପୁଲକିତ ହୋଇ ପଡ଼ୁଥିଲେ । ଏଣୁ ଭଗବାନ ଶ୍ରୀକୃଷ୍ଣଙ୍କ ବିଷୟରେ ଭକ୍ତିଭାବ ସମ୍ବଳିତ ଏକ ପୁସ୍ତକ ସଂସ୍କୃତ ଶ୍ଳୋକ ଦ୍ୱାରା ରଚନାକରି ତାର ନାମ "ଉତ୍କଣ୍ଠା ମାଳିକା" ରଖିଛନ୍ତି । ଏହି ତାଳପତ୍ର ବହି ଓଡ଼ିଶା ସାହିତ୍ୟ ମ୍ୟୁଜିଏମ୍‌ରେ ଦେଖିବାକୁ ମିଳେ । ଏହି ଗ୍ରନ୍ଥ ଏଯାଏଁ ମୁଦ୍ରିତ ଆକାରରେ ପ୍ରକାଶ ପାଇନାହିଁ । ଏହି ଗ୍ରନ୍ଥର ଶେଷରୁ ଦୁଇଟି ଶ୍ଳୋକ ପାଠକମାନଙ୍କ ରସାସ୍ୱାଦନ ପାଇଁ ଦିଆଗଲା ।

ଦୁଷ୍ପାରୈଃ କଲ୍ମଷଂ କଳଂ କଳମଳୈଃ କାରୁଣ୍ୟ ବର୍ଣ୍ଣୋଲ୍ଲଳତ୍
କଲ୍ଲୋଳି ବଳିଭିଃ କଳଙ୍କିତ ଜନଂ ଯଃ କ୍ଷିପ୍ରମକ୍ଷାଳୟତ୍
ସ୍ୱାଭୀଷ୍ଟଂ ବ୍ରଜଭୂମି ବୀକ୍ଷଣକୃତେ ଗାଢ଼ଂ ଭ୍ରହୁଢ଼ା ମିମା
ମୁତ୍କଣ୍ଠା ମଚିରେଣ ପୂରୟତୁ ମେ ଶ୍ରୀମାନ୍ ସଗୌରୋହରିଃ ॥

ଅର୍ଥ : ଅତ୍ୟଧିକ ପାପ ଭରିନାବ ଧରିତଳକୁ ଯେଉଁ ଶ୍ରୀକୃଷ୍ଣ ନିଜର କାରୁଣ୍ୟ ପ୍ରବଣ ତରଙ୍ଗାବଳୀରେ ମୁହୂର୍ତ୍ତ ମଧ୍ୟରେ ପ୍ରକ୍ଷାଳିତ କରି ଦେଇଥିଲେ ସେହି ଶ୍ରୀକୃଷ୍ଣଙ୍କ ବିହାରଭୂମି ସନ୍ଦର୍ଶନ ନିମିତ୍ତ ଯେଉଁ ଉତ୍କଣ୍ଠା ଜାତ ହେଉଅଛି ସେହି ଉତ୍କଣ୍ଠାର ପୂରଣ ସଙ୍ଗେ ସଙ୍ଗେ ନିଜ ଅଭୀଷ୍ଟକୁ ମଧ୍ୟ ପୂରଣ କରନ୍ତୁ ।

ଶେଷ ଶ୍ଳୋକରେ କବି ଦର୍ଶାଇଛନ୍ତି –

କାବ୍ୟେହେ ନିପତତେ ଗୃହ ନାମଧେୟେ
ଦାମୋଦରେ ମୟି କୃପାଂ ପ୍ରକଟଯ୍ୟ ଗାଢ଼ଂ

ଏତତ୍ ମନୋରଥ ମନନ୍ୟ ଦୟା ସମଦ୍ରାଃ
ଶ୍ରୀ ନନ୍ଦନନ୍ଦନ ଜନାଃ ପରିପୂରୟନ୍ତୁ
ଉତ୍କଣ୍ଠା ମାଳିକା ମେତାଂ ଯଃ କଣ୍ଠେ ବହତେ ଜନଃ
ଅବଶ୍ୟଂ ତ ତଦ୍ ଦ୍ରୁଶୋବଥୀଂ ବୃନ୍ଦାବନ ମୁପେପଶ୍ୟତ ।

ଇତି ଶ୍ରୀ ଦାମୋଦର ବିରଚିତା ଉତ୍କଣ୍ଠାମାଳିକା

ଅର୍ଥ : ସଂସାର ରୂପକ କାରାଗାରରେ ଆବଦ୍ଧ ରହିଥିବା ମାଦୃଶ ଦାମୋଦର ଠାରେ ଅତ୍ୟଧିକ କୃପା ପ୍ରକାଶ କରି ଅସାଧାରଣ ଦୟାସାଗର ଶ୍ରୀ ନନ୍ଦନନ୍ଦନ ଶ୍ରୀକୃଷ୍ଣ ମୋର ମନୋରଥକୁ ପୂରଣ କରନ୍ତୁ ! ଯେଉଁ ଭକ୍ତ ଉତ୍କଣ୍ଠା ମାଳିକାକୁ କଣ୍ଠରେ ଉଚ୍ଚାରଣ କରେ ସେ ନିଶ୍ଚିତରେ ବୃନ୍ଦାବନକୁ ଲାଭକରି ପରମ ପୁରୁଷଙ୍କ ଦୃଷ୍ଟି ଲାଭ କରିବ ।

**କୃଷ୍ଣସିଂହ** :– ରାଜତ୍ୱ ( ୧୭୮୧ – ୧୭୮୮ ଖ୍ରୀ )

ରାଜେନ୍ଦ୍ରସିଂହ ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ କୃଷ୍ଣସିଂହଙ୍କୁ ପୂର୍ବରେ ଧରାକୋଟର ରାଜା ମନୋନୀତ କରି ତାଙ୍କ ମୁଣ୍ଡରେ ରାଜ ଶାଢୀକା ପିନ୍ଧାଇ ତାଙ୍କୁ ଧରାକୋଟ ପଠାଇଥିଲେ । ଧରାକୋଟରେ ଏ ଖବର ପହଞ୍ଚିବା ପରେ ଏକ ଅସନ୍ତୁଷ୍ଟ ସାମନ୍ତ ଗୋଷ୍ଠୀ କୃଷ୍ଣସିଂହଙ୍କୁ ରାଜା ନ କରାଇ ଦେବା ପାଇଁ ଷଡ଼ଯନ୍ତ୍ର କରି ସଂଘର୍ଷ ସୃଷ୍ଟି କରିଥିଲେ । କିନ୍ତୁ ରାଜ୍ୟର ସମସ୍ତ ପ୍ରଜା, ପଣ୍ଡିତ ଓ ଗୁଣବାନ୍ ଲୋକେ କୃଷ୍ଣସିଂହ ରାଜା ହେବା ଚାହୁଁଥିଲେ । ଏଣୁ କୃଷ୍ଣସିଂହ ରାଜ୍ୟର ପ୍ରଜା ଓ ଭଦ୍ରବ୍ୟକ୍ତିଙ୍କ ସାହାଯ୍ୟରେ ସାମନ୍ତମାନଙ୍କୁ ଆୟତ୍ତ କରି ୫୨ ବର୍ଷ ବୟସରେ ୧୭୮୧ ଖ୍ରୀଷ୍ଟାବ୍ଦରେ ସିଂହାସନାରୋହଣ କରିଥିଲେ । ସେ ଧରାକୋଟରେ କିପରି ଓ କାହିଁକି ରାଜା ହେଲେ ତାଙ୍କ ଲିଖିତ ହରିବଂଶରୁ ଜଣାଯାଏ ।

ଜୟସିଂହ ରାଜେନ୍ଦ୍ରସିଂହ ନରବର
ସୋଦର ଜ୍ୟେଷ୍ଠ ତାତ ଅଛନ୍ତି ମୋହର ॥

ଅପୁତ୍ରକ ହୋଇଣ ସେ ଦୁଇ ନରପତି
କାଳରେ ସ୍ୱର୍ଗପୁରରେ କରନ୍ତେ ଯାଇ ସ୍ଥିତି
ଧରାକୋଟ ମଣ୍ଡଳେ ହୋଇଣ ମୁହିଁ ରାଜା
ରଖାଇଲି ଦୁଷ୍ଟ କଥାରେ ନେଇ ମଜା
ହୃଦୟ ଘଡ଼ିକ-କଳ ଅନାବୃତ
କଲି ତହିଁ ପ୍ରପଞ୍ଚ-ବୁଦ୍ଧି ହେବ ସ୍ଥିତ ।
ଏକାଳକୁ କୋଡ ସତରଶ ଆଠ
ହୋଇଛୁ କହନ୍ତି ଗଣକ ସପଠ

× × × ×

କୃଷ୍ଣସିଂହ ଧରାକୋଟାଧିପତି ରାମଚନ୍ଦ୍ରସିଂହଙ୍କ କନିଷ୍ଠ ପୁତ୍ର ନୀଳାଦ୍ରିସିଂହଙ୍କ ଔରସରେ ୧୭୨୯ ଖ୍ରୀଷ୍ଟାବ୍ଦ ଫାଲ୍‌ଗୁନ ଶୁକ୍ଳ ଦଶମୀ ଦିନ ଜନ୍ମ ଗ୍ରହଣ କରିଥିଲେ । ସେ ନୀଳାଦ୍ରିସିଂହଙ୍କର ମଧ୍ୟମ ପୁତ୍ର ଥିଲେ । ତାଙ୍କର ବାଲ୍ୟ ଶିକ୍ଷା ଶିକ୍ଷା ଏଠାରେ ଶାସନୀ ପଣ୍ଡିତ ମାନଙ୍କ ଦ୍ୱାରା ହୋଇଥିଲା । କିନ୍ତୁ ନୀଳାଦ୍ରିସିଂହଙ୍କର ରାଜେନ୍ଦ୍ରସିଂହଙ୍କ ସହ ମନୋମାଳିନ୍ୟ ହୋଇଥିବା ହେତୁ ସେ ସପରିବାର ନୟାଗଡ଼କୁ ବାହାରି ଯାଇଥିବା ବିଷୟ ଆଗରୁ କୁହାଯାଇଛି । ଏଣୁ କୃଷ୍ଣସିଂହ ପିତାଙ୍କ ସହିତ ନୟାଗଡ଼ ଯାଇ ସେଠାରେ ଯୌବନ କାଳ କଟାଇଲେ । ସେ ସେଠାରେ କଠୋର ପରିଶ୍ରମ କରି ବିଦ୍ୟାଭ୍ୟାସରେ ବିଶେଷ ଶ୍ରଦ୍ଧା ରଖି ସଂସ୍କୃତ ଭାଷାରେ ଉତ୍ତମ ବ୍ୟୁତ୍ପତ୍ତି ଲାଭ କରିଥିଲେ । ରାଜା କୃଷ୍ଣସିଂହ ଅତି ଶାନ୍ତ, ବୁଦ୍ଧିମାନ୍ ଓ ଧାର୍ମିକ । ପ୍ରଜାଙ୍କ ମଙ୍ଗଳ ପାଇଁ ରାଜ୍ୟରେ ବ୍ରାହ୍ମଣ ଶାସନ, ଦେବାଦେବୀ ମନ୍ଦିର, ମଠ, ଆଶ୍ରମ, ଉଦ୍ୟାନ ପୁଷ୍କରିଣୀ ପ୍ରତିଷ୍ଠା କରିଥିଲେ । ତାହାଙ୍କର ଦେବତା, ବୈଷ୍ଣବ, ବ୍ରାହ୍ମଣମାନଙ୍କ ପ୍ରତି ପ୍ରଗାଢ଼ ଭକ୍ତିଥିଲା । ସେ ପ୍ରଜାବର୍ଗଙ୍କୁ ଅତିଶୟ ପ୍ରେମ ଚକ୍ଷୁରେ ଦେଖୁଥିଲେ । କୁଳ ପରମ୍ପରା ରକ୍ଷା କରି ସେ ପ୍ରତିଦିନ ଦେବାର୍ଚ୍ଚନ ପରେ ଭାଗବତ ଶ୍ରବଣ, ଦେବତା ଦର୍ଶନ ଓ ସେବ ବ୍ରାହ୍ମଣ ଓ ଦୀନ ଦୁଃଖୀଙ୍କୁ

ଅନ୍ନବସ୍ତ୍ର ଦାନ ଦେଉଥିଲେ । ବୈଷ୍ଣବମାନେ ବୃନ୍ଦାବନ ଚନ୍ଦ୍ର ମହାପ୍ରଭୁଙ୍କ ବେଢ଼ାରେ ଅନ୍ନପ୍ରସାଦ ପଙ୍ଗତ କରିବା ସମୟରେ ରାଜା ନିଜେ ବୃନ୍ଦାବନ ଚନ୍ଦ୍ର ମହାପ୍ରଭୁଙ୍କ ସମ୍ମୁଖରେ ବସି ସହସ୍ରନାମ ପାଠ କରନ୍ତି ଓ ତୁଳସୀ ସେବାକର ବ୍ରାହ୍ମଣ ବୈଷ୍ଣବମାନଙ୍କ ପଦରଜ ଦେବା ଯୋଗଣକୁ ନିଜେ କରନ୍ତି । ସେ ଜ୍ଞାନଦାସ ବାବାଜୀଙ୍କୁ ଆଣି ବୈଷ୍ଣବ ମାନଙ୍କ ଉପରେ ମହନ୍ତ କରି ବଡ ମଠରେ ରଖାଇଲେ ଓ ମଠ ଅଧିଷ୍ଠିତ ଦେବତାଙ୍କ ଭୋଗ ଉଦ୍ଦେଶ୍ୟରେ ସିନ୍ଦୂରପଲ୍ଲୀ ଗ୍ରାମ ଦାନ କରିଥିଲେ । ସେ ପିତଳ ସନ୍ତୋଷ ପୁରର କେତେକ ଗରିବ ବ୍ରାହ୍ମଣଙ୍କୁ, ପୁରୀ କମଳାଙ୍କୁ, ପିତଳରେ ବିଜେ ହୋଇଥିବା ଜଗନ୍ନାଥ ଓ ବୁରୁପୋଡ଼ାରେ ବିଜେ ହୋଇଥିବା ଜଗନ୍ନାଥଙ୍କୁ ହରିପୁର ପାଇକାଣରେ ଭୂସମ୍ପତ୍ତି ଦାନ କରିଥିଲେ ।

ଧରାକୋଟ ଗଡ଼ରେ ଶ୍ରୀ ଜଗନ୍ନାଥଙ୍କ ବିଷୟ ମଣ୍ଡପ ଛଣ ଦ୍ଵାରା ଛପର କରାଯାଇଥିଲା । ଏହି ମଣ୍ଡପଟି ପୋଡିଗଲା । ଦେବତା ମାନଙ୍କ ବିଗ୍ରହ ମଧ୍ୟ ଜ୍ଵଳନ୍ତ ଅଗ୍ନିରେ ନଷ୍ଟ ହୋଇଗଲା । ପ୍ରବାଦ ଅଛି ତିନିମୂର୍ତ୍ତି ତିନିଜଣ ବ୍ରାହ୍ମଣ ବେଶରେ ବାଲିପଦରର ଜଣେ ମହାଜନ ଘରେ ଏକରାତ୍ରି ଅତିଥି ହୋଇ ପୁରୀ କ୍ଷେତ୍ରକୁ ବାହାରିଗଲେ । ରାଜା ଦଧିବାମନ ମହାପ୍ରଭୁଙ୍କୁ ବିଜେ କରାଇ ଆଷାଢ଼ ମାସରେ ରଥ ନିର୍ମାଣ କରି ଦଧିବାମନଙ୍କୁ ରଥରେ ବିଜେ କରାଇ ଗୁଣ୍ଡିଚା ଯାତ୍ରା କଲେ । ସେତେବେଳେ ନେଳଆବନ୍ଧ ନିକଟରେ ଆଡ଼ପମଣ୍ଡପ ନିର୍ମାଣ କରାଯାଇଥିଲା । ସେହି ଆଡ଼ପମଣ୍ଡପରେ ସେ ଶ୍ରୀ ବାସୁଦେବ ମୂର୍ତ୍ତିଙ୍କୁ ବିଜେ କରାଇଲେ । ଏହି ଅବସରରେ ସେ ଦେଉଳ ତୋଳାଇ ନୂତନରେ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ମୂର୍ତ୍ତି ନିର୍ମାଣ କରି ପ୍ରାଣ ପ୍ରତିଷ୍ଠା କରାଇ ମନ୍ଦିରରେ ବିଜେ କରାଇ ସମସ୍ତ ଦେବମାନଙ୍କ ପରିଚାଳନା କଲେ । ଏହି ତିନିମୂର୍ତ୍ତିଙ୍କ ଗର୍ଭରେ ଯେଉଁ ଶାଳଗ୍ରାମ ଶିଳା ବ୍ରହ୍ମ ସ୍ଵରୂପ ରକ୍ଷିତ ହୋଇଛନ୍ତି ସେହି ଶାଳଗ୍ରାମ ଶିଳା ପୁରୀ ଜଗନ୍ନାଥଙ୍କ ସିଂହାସନ ଉପରେ ପୂଜା ପାଉଥିଲେ । ରାଜା କୃଷ୍ଣସିଂହ ହରିସିଂହ ଦେଓଙ୍କ ସହିତ ସାକ୍ଷାତ

କରି ତାଙ୍କର ଅନୁମତିନେମମ ଏହି ବ୍ରହ୍ମମୂର୍ତ୍ତିଙ୍କୁ ନିଜ ରାଜ୍ୟକୁ ଆଣି ଇଷ୍ଟ-ଦେବତାଙ୍କ ବଗିଚାରେ ସ୍ଥାପନ କରିଥିଲେ ।

ସେ ଖଲ୍ଲିକୋଟ ରାଜା ନଳନାକ୍ଷ ମର୍ଦ୍ଦରାଜଙ୍କ କନ୍ୟା ଚନ୍ଦ୍ରମା-ଦେବୀଙ୍କୁ ବିବାହ କରିଥିଲେ । ତାହାଙ୍କ ଠାରୁ ଗୋଟିଏ ପୁତ୍ର ସନ୍ତାନ ଓ ଗୋଟିଏ କନ୍ୟା ଜାତ ହୋଇଥିଲେ । ସେ ଜଗନ୍ନାଥଙ୍କ ପରମ ଭକ୍ତ ଥିବା ଯୋଗୁଁ ପୁତ୍ରର ନାମ "ଜଗନ୍ନାଥ" ରଖିଥିଲେ । ଦ୍ୱିତୀୟରେ ସେ ପାଲୁରୁ-ରାଜା ଗଜେନ୍ଦ୍ର ମହାପାତ୍ରଙ୍କ ଏକ କନ୍ୟାର ପାଣିଗ୍ରହଣ କରିଥିଲେ । ତାଙ୍କ ଠାରୁ ଦୁଇଗୋଟି ପୁତ୍ର ସନ୍ତାନ ଲାଭ କରିଥିଲେ । ରାଜା ସେ ଦୁହିଁଙ୍କ ଭିତରୁ ଜଣକୁ ବୃନ୍ଦାବନ ଓ ଅନ୍ୟ ଜଣକୁ ବଳରାମ ନାମ ଦେଇଥିଲେ ।

ରାଜା ନିଜର ପାଟ ମହାଦେଈଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ । ପାଟ-ମହାଦେଈ ଚନ୍ଦ୍ରମାଦେବୀଙ୍କ ସେବା ପରାୟଣ, ସାଧୁତା ଓ ପାତିବ୍ରତ୍ୟରେ ସନ୍ତୁଷ୍ଟ ହୋଇ ରାଜା ତାଙ୍କ ନାମରେ ଧରାକୋଟର ପ୍ରତିଷ୍ଠିତ ଗ୍ରାମ ବାଲିଶିରା ନିକଟରେ ଏକ ବ୍ରାହ୍ମଣଶାସନ ତା ୧୭—୩—୧୬୮୮ ଖ୍ରୀଷ୍ଟାବ୍ଦରେ ଫାଲ୍‌ଗୁନ ଶୁକ୍ଳ ଦଶମୀ ସୋମବାର ଦିନ ଦାନାଧ୍ୟକ୍ଷ ଲୋକନାଥ ରଥଙ୍କ ସମେତ ଅନ୍ୟ ପାଞ୍ଚଜଣ ବ୍ରାହ୍ମଣଙ୍କୁ ଦାନ ଦେଇ ଅଗ୍ରାହାରର ନାମ କରିଥିଲେ ଚନ୍ଦ୍ରମାଦେଈପୁର । ବ୍ରାହ୍ମଣମାନଙ୍କ ଭରଣପୋଷଣ ପାଇଁ ବରଝୁଲି ପାହାଡରେ ସିଦ୍ଧେଶ୍ୱର ମହାଦେବଙ୍କ ନିକଟରେ ୩୬୦ ଭରଣ ଜମି ଦାନ କରିଥିଲେ ।

ରାଜା କୃଷ୍ଣସିଂହ ତାଙ୍କର ଧର୍ମ ପରାୟଣତା, ଦାନଶୀଳତା ଓ ବୈଷ୍ଣବ ମାନଙ୍କ ସେବା ପରାୟଣତା, ତଥା ପ୍ରଜାନୁରଞ୍ଜନ ଶାସନ ଯୋଗୁଁ ଖୁବ୍ ଖ୍ୟାତି ଅର୍ଜ୍ଜନ କରିଥିଲେ । ନୂଆଗଡ଼ରେ ଥିବା ବେଳେ ସେ କେତେଗୋଟି ସଂସ୍କୃତ ପୁସ୍ତକର ଓଡ଼ିଆ ଭାଷାରେ ଅନୁବାଦ କରିବାକୁ ମନ ବଳାଇଲେ । ନୂଆ-ଗଡ଼ରେ ମହାଭାରତ ଅନୁବାଦ କାମ ଆରମ୍ଭ କରିଥିଲେ । ଧରାକୋଟରେ

ରାଜା ହେବା ପରେ ସମଗ୍ର ସଂସ୍କୃତ ମହାଭାରତକୁ ଅନୁବାଦ କରିବାକୁ ସ୍ଥିର କଲେ ।

ପଣ୍ଡିତମାନଙ୍କ ପରାମର୍ଶକ୍ରମେ ଧରାକୋଟ ଗଡ଼ର ପୂର୍ବ ଦିଗରେ ଅବସ୍ଥିତ ନୈଳଆବନ୍ଧ ନିକଟରେ ଏକ ଆମ୍ର, ପନସ, କଦମ୍ବ ଓ ରମ୍ଭାଗଛ ପୂରିତ ଏକ ଉଦ୍ୟାନ ବଛାଯାଇ ସେଠାରେ ଏକ ମଣ୍ଡପ ନିର୍ମାଣ କରାଗଲା । ରାଜା ରାଜକାର୍ଯ୍ୟ ସମାପ୍ତ ପରେ ସେଠାକୁ ପଣ୍ଡିତମାନଙ୍କ ସହ ଆସି ସେଠାରେ ଉପବେଶନ କରି ମହାଭାରତ ଅନୁବାଦରେ ମନୋନିବେଶ କରୁଥିଲେ । ଆଜି ସେହି କଦମ୍ବ ଗଛ କିମ୍ବା ମଣ୍ଡପ ସେଠାରେ ନାହିଁ । ସେଠାରେ ସରକାରଙ୍କ ତରଫରୁ କେତେକ ଅଫିସଗୃହ ନିର୍ମାଣ କରାଯାଇଛି । କିନ୍ତୁ ସେହି ପ୍ରାକୃତିକ ସୌନ୍ଦର୍ଯ୍ୟ ଭରା ସ୍ଥାନଟି ଅଦ୍ୟାପି କୃଷ୍ଣକାନନ ନାମରେ ଲୋକ ମୁଖରେ ରହିଛି । କବିଙ୍କ ଭାଷାରେ ଆଜି ସେହି ସ୍ଥାନର ପୂର୍ବର ପ୍ରାକୃତିକ ବିଭବ ନାହିଁ—ଅଛି ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ।

ଶିଶିରେ ପ୍ରକୃତି ବେଶ ଯଥା ମାନହାନ
କାଳବଶେ ସେ କାନନ ହୋଇଅଛି ଜୀର୍ଣ୍ଣ ।

ଜନଶ୍ରୁତିରୁ ଜଣାଯାଏ କୃଷ୍ଣସିଂହ ଗାଦିରେ ବସିବା ପରେ ରାଜ୍ୟର ଭାର କିଛିଦିନ ପାଇଁ ହରିହରଗୁମୁ ପଟ୍ଟନାୟକ ଓ ଜୟୀ ବେବର୍ତ୍ତାଙ୍କ ହସ୍ତରେ ସମର୍ପଣ କରି ବ୍ରାହ୍ମଣ ପଣ୍ଡିତମାନଙ୍କ ସାହଚର୍ଯ୍ୟରେ ମହାଭାରତ ଅନୁବାଦ କରିଥିଲେ । ସେହି ପଣ୍ଡିତ ମାନଙ୍କ ମଧ୍ୟରେ ରାଜେନ୍ଦ୍ରପୁରର ୮ ବାମଦେବ-ବ୍ରହ୍ମା, ତିଳୋତ୍ତମାଦେଇପୁରର ଗଙ୍ଗାଧର ମିଶ୍ର ଓ ଗଙ୍ଗାପୁରର ଭଗବାନ-କବିରାଜ ବ୍ରହ୍ମା, ପ୍ରଭୃତି ଅନ୍ତର୍ଭୁକ୍ତ । ରାଜା ଏହି ପଣ୍ଡିତମାନଙ୍କ ସାହାଯ୍ୟ ପାଇଁ ସେମାନଙ୍କୁ ସାପୁଆ ପଲ୍ଲୀ ଓ ଓଳମ୍ବା ଗ୍ରାମରେ ନିଷ୍କର ଭୂସମ୍ପତ୍ତି ଦାନ କରିଥିଲେ । ୧୯୫୦ ମସିହା ଯାଏଁ ଏହି ପଣ୍ଡିତମାନଙ୍କ ବଂଶଧରମାନେ ଏହି ଭୂମି ଭୋଗ ଦଖଲ କରି ଆସୁଥିଲେ ।

ସେ ସିଂହାସନ ଆରୋହଣ କରିବାର କେତେକ ମାସ ପରେ ୧୭୦୪ ଶକାବ୍ଦ ବା ୧୭୮୨ ଖ୍ରୀଷ୍ଟାବ୍ଦ ଫାଲ୍‌ଗୁନ କୃଷ୍ଣ ଦଶମୀ ଦିନ ଆଦିପର୍ବର ଅନୁବାଦ ସମାପ୍ତ କରିଥିବା ବିଷୟ ଏହି ପର୍ବ ଶେଷରେ ଉଲ୍ଲେଖ କରିଛନ୍ତି :-

ଏକାଳକୁ ଶକାବ୍ଦ ସତରଶଚାରି
କହିଲି କାଳ ସଂଖ୍ୟା ଜାଣିବ ବିଚାରି

କୃଷ୍ଣସିଂହ ମହାଭାରତ ଅନୁବାଦ କରିବାପୂର୍ବରୁ ତାଙ୍କର ଜ୍ୟେଷ୍ଠଭ୍ରାତ ଜସ୍ନସିଂହ ଦ୍ରୋଣପର୍ବ କରିଥିବା ହେତୁ କୃଷ୍ଣସିଂହ ଦ୍ରୋଣପର୍ବ ଅନୁବାଦ କରିଥିବା ହେତୁ କୃଷ୍ଣସିଂହ ଦ୍ରୋଣପର୍ବ ବ୍ୟତୀତ ଅନ୍ୟ ସତର ଗୋଟି ପର୍ବ ଅନୁବାଦ କରିଥିଲେ । କିନ୍ତୁ ସଂପୂର୍ଣ୍ଣ ମହାଭାରତ ଲେଖାର ପୂର୍ଣ୍ଣ ଅଧିକାରୀ ହୋଇପାରିବେ ନାହିଁ — ଏହି କାରଣରୁ ପଣ୍ଡିତମାନଙ୍କ ପରାମର୍ଶରେ ଶେଷରେ "ଦ୍ରୋଣପର୍ବ" ଅନୁବାଦ କଲେ । ଦ୍ରୋଣପର୍ବ ଅନୁବାଦରେ କବି ଏହି ଗ୍ରନ୍ଥର ଶେଷରେ ଉଲ୍ଲେଖ କରିଛନ୍ତି —

ଦ୍ରୋଣପର୍ବ ଗୀତକୁ ନବର୍ଣ୍ଣିଲ ଗୀତେ
ବୋଲାଇଛନ୍ତି ଜ୍ୟେଷ୍ଠ ପିତା ଭାବ ଚିତ୍ତେ ।
ଲକ୍ଷେ ଗ୍ରନ୍ଥ ପୂର୍ଣ୍ଣ ନୋହିଲା ବୋଲିକରି
ମୋ ମନେ କରି ପ୍ରିୟଜନଙ୍କୁ ପଚାରି ।
ସବୁରି ସନମତେ, ଭାରତ ଗୀତ ପ୍ରାନ୍ତେ
ଦ୍ରୋଣପର୍ବ ଗୀତ ବର୍ଣ୍ଣିଲଇ ଗୀତେ ।
ଏ ସରିକି ଶକାବ୍ଦ ସତରଶ ଦଶ
ବରଷ ହୋଇଛି ଉତ୍ତମ ହୋଇ ଶେଷ ।

ଉପରୋକ୍ତ ଲେଖାରୁ ଜଣାଯାଏ ୧୭୦୪ ଶକାବ୍ଦରେ ଆଦିପର୍ବ, ୧୭୦୮ ଶକାବ୍ଦରେ ହରିବଂଶ ଓ ୧୭୧୦ ଶକାବ୍ଦରେ ସେ ଦ୍ରୋଣପର୍ବର ଅନୁବାଦ ଶେଷ କରିଥିଲେ । ସେ ପ୍ରାୟ ସାତ ବର୍ଷ ଭିତରେ ମହାଭାରତ ଓ

ହରିବଂଶର ଅନୁବାଦ ଶେଷ କରିଥିବା ବଡ଼ ଗୌରବର ବିଷୟ । ଏହି ଅଳ୍ପ ସମୟରେ ଏତେ ବଡ଼ ଗ୍ରନ୍ଥ ରଚନା ତାଙ୍କର ପ୍ରଗାଢ଼ ନିଷ୍ଠା, ଏକାଗ୍ରତା ଓ କଠୋର ଅଧ୍ୟବସାୟର ପରିଚୟ ଦେଉଛି ।

ଓଡ଼ିଶାର ପ୍ରାଚୀନ କବି ମାନଙ୍କ ଭିତରେ କୃଷ୍ଣସିଂହଙ୍କ ଛଡ଼ା ଅନ୍ୟ କୌଣସି ଲେଖକ ସଂସ୍କୃତ ମହାଭାରତକୁ ଓଡ଼ିଆରେ ଅନୁବାଦ କରିଥିବାର ଦୃଷ୍ଟାନ୍ତ ନାହିଁ । ସାରଳାଦାସଙ୍କ ମହାଭାରତ ବ୍ୟାସକୃତ ମୂଳ ମହାଭାରତର ଅନୁବାଦ ନୁହେ ! ସଂସ୍କୃତ ମହାଭାରତରେ ନଥିବା ଅନେକ ବିଷୟ ସେ ତାଙ୍କ କଳ୍ପନା ଶକ୍ତି ବଳରେ ଯୋଡ଼ି ଦେଇଛନ୍ତି ଓ ସଂସ୍କୃତ ମହାଭାରତରେ ଥିବା ବହୁ ଉପାଦେୟ ଓ ତତ୍ତ୍ୱପୂର୍ଣ୍ଣ ବିଷୟ ଛାଡ଼ି ଦେଇଛନ୍ତି । ସାରଳା ମହାଭାରତ ଓଡ଼ିଆ ଭାଷାର ପ୍ରଥମ ଗ୍ରନ୍ଥ । ଏଣୁ ଶାରଳା ଦାସଙ୍କୁ ଆଦିକବି ଆଖ୍ୟା ଦିଆଯାଇଛି । ସଂସ୍କୃତ ମହାଭାରତର ଅନୁବାଦ ଅପେକ୍ଷା ଶାରଳାଦାସଙ୍କ ମହାଭାରତକୁ ହିଁ ଲୋକେ ବହୁ ଯତ୍ନରେ ଓ ଆଗ୍ରହ ସହକାରେ ପାଠ କରୁଛନ୍ତି କିନ୍ତୁ ଯେଉଁମାନେ ମୂଳଗ୍ରନ୍ଥର ତାତ୍ତ୍ୱିକ ବିଷୟ ବୁଝିବାକୁ ଚାହାଁନ୍ତି ସେମାନେ କେବଳ କୃଷ୍ଣସିଂହଙ୍କ ମହାଭାରତ ପାଠ କରନ୍ତି ।

କୃଷ୍ଣସିଂହଙ୍କ ମହାଭାରତ ସାଧାରଣତଃ ଚଉଦଅକ୍ଷରୀ ଛନ୍ଦରେ ଲିଖିତ ହୋଇଥିଲେ ହେଁ ଠାଏ ଠାଏ ଉକ୍ତ ଛନ୍ଦର ବ୍ୟତିକ୍ରମ ଦେଖାଯାଏ ! ସମାନାକ୍ଷର ବିଶିଷ୍ଟ ପଦ ସବୁ କୌଣସି ଏକ ଛନ୍ଦରେ ଗଠିତ ନୁହେ । କୌଣସିଠାରେ ଦ୍ୱାଦଶାକ୍ଷର କୌଣସିଠାରେ ତ୍ରୟୋଦଶାକ୍ଷର ଓ ଚତୁର୍ଦ୍ଦଶାକ୍ଷର ନିୟମରେ ରଚିତ । ପ୍ରକୃତରେ କୃଷ୍ଣସିଂହ କେଉଁ ଛନ୍ଦର ଆଦର୍ଶରେ ମହାଭାରତ ଅନୁବାଦ କରିଥିଲେ ତାହା ଜାଣିବା କଷ୍ଟସାଧ୍ୟ କିନ୍ତୁ ଏତିକି ଅନୁମାନ କରିଯାଇପାରେ ସେ ସଙ୍ଗୀତ ବିଦ୍ୟାରେ ପ୍ରବୀଣ ଥିଲେ ।

"ହରିକଥା ଦିନେ ନକଲି କୀର୍ତ୍ତନ — ବଳାଇଲି କୀର୍ତ୍ତନ ଗୀତ ବାଦ୍ୟମାନ"

ଏଥିରୁ ଜଣାଯାଏ ସେ ଜଣେ ବଶିଷ୍ଟ ସଙ୍ଗୀତଜ୍ଞ ଥିବା ହେତୁ ଛନ୍ଦ ଅପେକ୍ଷା ଗାନକୁ ବିଶେଷ ପସନ୍ଦ କରୁଥିଲେ । ଏଣୁ ସେ ଛନ୍ଦ ପ୍ରତି ବିଶେଷ ଦୃଷ୍ଟି ଦେଇନଥିଲେ । କିନ୍ତୁ ଯାହା ହେଉ ଜଗନ୍ନାଥ ଦାସଙ୍କ ନବାକ୍ଷରୀ ବୃତ୍ତ ବା ଭାଗବତ ବୃତ୍ତପରି କୃଷ୍ଣସିଂହଙ୍କ ମହାଭାରତ ଯେଉଁ ବୃତ୍ତରେ ଗାନ କରାଯାଏ ତାହା ଆଜି ଓଡ଼ିଆ ଛନ୍ଦ ମାନଙ୍କ ମଧ୍ୟରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ଆଜିକାଲି "କୃଷ୍ଣସିଂହ ବାଣୀ" ନାମରେ ସର୍ବତ୍ର ପରିଚିତ ହୋଇପାରିଛି ।

କୃଷ୍ଣସିଂହଙ୍କର ସଂସ୍କୃତ ଭାଷାରେ ଅସାଧାରଣ ପାଣ୍ଡିତ୍ୟ ଥିଲେ । କବି ଅବଶ୍ୟ ନିଜର ଭକ୍ତି ଜନୋଚିତ ସୌଜନ୍ୟ ପ୍ରକାଶ କରି ନିଜର ମୂର୍ଖତା, ଅକ୍ଷମତା, ଚରିତ୍ରହୀନତା ପ୍ରଭୃତି ବ୍ୟକ୍ତ କରିଛନ୍ତି । କିନ୍ତୁ ତାହା ତାଙ୍କ ଜୀବନର ସତ୍ୟଘଟଣା ନୁହେଁ । କବି ପ୍ରାୟ ପ୍ରତ୍ୟେକ ପର୍ବର ଆଦ୍ୟରେ ଓ ଶେଷରେ ଅନୁବାଦ ପାଇଁ ନିଜର ଅକ୍ଷମତା ପ୍ରକାଶ କରିଛନ୍ତି ଏବଂ ଭଗବାନ ଓ ସାଧୁ ପଣ୍ଡିତ ମାନଙ୍କଠାରେ ନିଜ ତ୍ରୁଟି ପାଇଁ କ୍ଷମା ଭିକ୍ଷା କରିଛନ୍ତି । କିନ୍ତୁ ମହାଭାରତ ପାଠକଲେ ଜଣାଯାଏ ତାଙ୍କର ଏହି ଉକ୍ତି-କୋଟୀର ରଚନା ତାଙ୍କ ସାମର୍ଥ୍ୟର ଯଥେଷ୍ଟ ପ୍ରମାଣ ଦେଉଛି । ସେ ଜଣେ ଉପଯୁକ୍ତ ଅନୁବାଦକ - ତାର ଦୃଷ୍ଟାନ୍ତ ତଳେ ଦିଆଗଲା ।

ସ୍ତୁତି ମୁନେ କି ଗିରିବର ହୁଏ ଟାଳ
ପଣ୍ଡିତେ ଏକଥା ଧେନବ ମନେ ଭାଳ
ମୂର୍ଖମାନଙ୍କରେ ମୁଁ ଅତିହିଁ ମୂରୁଖ
ମୋ ଗୀତ ଶୁଣି କର୍ଣ୍ଣେ ନୋହିବ ବିମୁଖ
(ସ୍ୱର୍ଗାରୋହଣ-ପର୍ବ)

ଧର୍ମକୋଟ ମନ୍ତ୍ରେ ହୋଇଣ ମୁଁ ରାଜା
ଅଧରମ କଥାରେ ବଳାଇଲି ମନ୍ତ୍ରୀ
ହିତ ହୋଇବେ ବୋଲି ରଖି ଅସାଧୁଙ୍କୁ
ଛାଡିଦେଲି ମୁଁ ସାଧୁ ସଙ୍ଗମ ମାର୍ଗକୁ ।
(ଭୀଷ୍ମ ପର୍ବ)

ଭକ୍ତ କବି ନିଜକୁ ଧିକ୍କାର କରିଥିଲେ ମଧ୍ୟ ବିଜ୍ଞଜନ ଚକ୍ଷୁପ୍ରକ୍ଷେ ତାହା ପ୍ରଶଂସା ଯୋଗ୍ୟ ସେ ମୂର୍ଖ ନୁହଁନ୍ତି, ଦୁଃଷ୍ଟରିଜ ନୁହଁନ୍ତି, ସେ କବି ଅସାଧ୍ୟ ସାଧନରେ ସଫଳ ହୋଇଛନ୍ତି । ବଢ଼ିଆ ନବୀକ ହାତରେ ବାଲି ଫିଙ୍ଗି ବନ୍ଧ ବାନ୍ଧିଛନ୍ତି । ସେ ଭାରତକୁ ଅତ୍ୟନ୍ତ ସାଧୁଭାଷା ଓ ପାଣ୍ଡିତ୍ୟପୂର୍ଣ୍ଣ ଭାଷାରେ ଅନୁବାଦ କରିଛନ୍ତି । ତତ୍ତ୍ୱାର୍ଥ ପ୍ରକାଶ ପାଇଁ ଏହା ବିଶେଷ ଉପଯୋଗୀ । ତାଙ୍କ ପୁରାଣରେ ପାଣ୍ଡିତ୍ୟପୂର୍ଣ୍ଣ ଛନ୍ଦ ବିନ୍ୟାସ ଉପମା, ଉପମେୟ ଓ ରୂପକ ପ୍ରଭୃତି ଅଳଂକାର ସମାବେଶର ବୈଚିତ୍ର୍ୟ ବହୁଳ ଭାବରେ ପରିଲକ୍ଷିତ ହୁଏ ।

ମୋ ମାନସ ଭୃଙ୍ଗତ ଅଟଇ ଅତି ମନ୍ଦ
ପିଇବ କାହିଁ ତୁମ୍ଭ ପଦାବ୍ଜ ମକରନ୍ଦ
ଏ ସଂସାର ପଣ୍ଡିତ ଜନଙ୍କ ଅନିନ୍ଦ୍ୟ
ଭାରତ-ଜଳ-ହ୍ରଦ ଗିରିରୁ ନିସ୍ୟନ୍ଦ

ଉଲ୍ଲିଖିତ ଦୃଷ୍ଟାନ୍ତରୁ ଜଣାଯାଏ କବିଙ୍କ ଲେଖା ସଂସ୍କୃତ, ସାଡ଼ମ୍ବର ଓ ସାଳଂକାର ଥିଲା । ମୂଳ ସଂସ୍କୃତ ମହାଭାରତର ଅନୁକରଣରେ ହେଉ ନଥିବା ପ୍ରାଚୀନ କବି ପରମ୍ପରାର ଅନୁବର୍ତ୍ତୀ ହୋଇ ହେଉ କବି ନିଜର ରେଖା ନିବନ୍ଧନରେ ପରିସମାପ୍ତି କରିବା ପାଇଁ କେତେକ ପର୍ବ ଆଦ୍ୟରେ "ନୀଳକନ୍ଦର ମନ୍ଦିର ନିବାସୀ ଜଗନ୍ନାଥଙ୍କୁ" ଓ ଆଉ କେତେକ ଧାର୍ମିକ ମତବାଦର ପରିଚୟ ଦେଇଛନ୍ତି । କବିଙ୍କ ଜନ୍ମରୁ ବହୁ ପୂର୍ବରୁ ଓଡ଼ିଶାର ଧର୍ମକ୍ଷେତ୍ରରେ ବୈଷ୍ଣବ ଓ ଭକ୍ତ ଧର୍ମର ଉପାସକ ଜଗନ୍ନାଥ ଧର୍ମାବଲମ୍ବୀଙ୍କ ମଧ୍ୟରେ ଏକ ଶତ୍ରୁତା ଲାଗି ରହିଥିଲା । ଉତ୍କଳୀୟ ବୈଷ୍ଣବମାନେ ଜଗନ୍ନାଥଙ୍କୁ ଅବତାରୀ ଓ ଶ୍ରୀକୃଷ୍ଣଙ୍କୁ ଅବତାର ରୂପେ ବିଶ୍ୱାସ କରୁଥିବା ଗୌଡ଼ୀୟ ବୈଷ୍ଣବମାନେ ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ଷୋଳକଳା ବିଶିଷ୍ଟ ଭଗବାନ ରୂପେ ପ୍ରତି-ପାଦନ କରୁଥିଲେ ।

ଉଭୟ ଧର୍ମାବଲମ୍ବୀ କବିମାନେ ସ୍ୱ ସ୍ୱ ମତବାଦର ମହିମା ଓଡ଼ିଆ କାବ୍ୟ କବିତାରେ ବର୍ଣ୍ଣନା କରି ଧର୍ମକ୍ଷେତ୍ରରେ ଏକ ସଙ୍କୀର୍ଣ୍ଣ ସଂଘର୍ଷ ସୃଷ୍ଟି କରୁଥିଲେ । କିନ୍ତୁ କବି ଜଣେ ପରମ ବୈଷ୍ଣବଥିଲେ । ତାଙ୍କ ଦୃଷ୍ଟିରେ ନୀଳାଚଳ ବିହାରୀ ଜଗନ୍ନାଥ ଓ ମହାଭାରତ ବର୍ଣ୍ଣିତ ଶ୍ରୀକୃଷ୍ଣ ଭଗବାନ ଅଭିନ୍ନ ଥିଲେ । ଏଣୁ କବି ନିଜ ପୁରାଣରେ ଉତ୍କଳୀୟ ଜଗନ୍ନାଥଙ୍କ ସଙ୍ଗେ ଗୌଡ଼ୀୟ ଶ୍ରୀକୃଷ୍ଣଙ୍କ ସହ ଗୋଟିଏ ସମନ୍ୱୟ ଭାବ ଆଣିବାକୁ ଚେଷ୍ଟା କରିଛନ୍ତି । ସେହି ପରମ ପୁରୁଷ ନାମ ଶ୍ରବଣରେ ଓ ଗୁଣ କୀର୍ତ୍ତନରେ କବି ଅତ୍ୟନ୍ତ ପୁଲକିତ ହୋଇ ପଡ଼ୁଥିଲେ । କଳାପାହାଡ଼ ଉତ୍କଳ ଆକ୍ରମଣ କରି ଜଗନ୍ନାଥଙ୍କୁ ଗଙ୍ଗା-ନଦୀ ତୀରରେ ଜ୍ୱଳନ୍ତ ଅଗ୍ନିରେ ନିକ୍ଷେପ କରିଥିବା ବିଷୟ ଓଡ଼ିଶା ଇତି-ହାସରୁ ଜଣାଯାଏ । ସେଥିପାଇଁ କବି ଜଗନ୍ନାଥଙ୍କୁ ବନ୍ଦନା କରିବାକୁ ଯାଇ କହିଛନ୍ତି-

"ଯବନ ଦେହ ପୋଡ଼ା ବରେଣ୍ୟ ଜନାର୍ଦ୍ଦନ
ତୁମ୍ଭେ ଏକା ପତିତ ଜନଙ୍କ ପାବନ"

ଅବଶ୍ୟ ମୂଳ ସଂସ୍କୃତ ଭାଗବତରେ ଶ୍ରୀକୃଷ୍ଣଙ୍କୁ ଜଗନ୍ନାଥ ବୋଲି ସମ୍ବୋଧନ କରିଯାଇ ଅଛି କିନ୍ତୁ କବି ଜଗନ୍ନାଥଙ୍କୁ ଯବନ ଦେହ ପୋଡ଼ା ନାମକରଣକରି ନିଜ ଉତ୍କଳୀୟତାର ପରିଚୟ ଦେଇଛନ୍ତି ।

ତାଙ୍କ ମହାଭାରତରେ ମୂଳ ସଂସ୍କୃତ ମହାଭାରତର, ଅଧିକାଂଶ ଅଂଶ ଆକ୍ଷରିକ ଅନୁବାଦ ହୋଇଛି । ସ୍ଥଳ ବିଶେଷରେ ଅନୁବାଦରେ ସ୍ୱାତନ୍ତ୍ର୍ୟ ମଧ୍ୟ ସେ ଦେଖାଇ ଥିବାର ପରିଲକ୍ଷିତ ହୁଏ କିନ୍ତୁ କୌଣସିଠାରେ ମୂଳ ବିଷୟକୁ ଅଦଳବଦଳ କରିଥିବାର ଦୃଷ୍ଟାନ୍ତ ଦେଖାଯାଏ ନାହିଁ ।

ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନାରେ କବି ସିଦ୍ଧ ହସ୍ତଥିଲେ । ଏତେ ସୁନ୍ଦର ପ୍ରକୃତି ବର୍ଣ୍ଣନା ମହାଭାରତ ଛଡ଼ା ଅନ୍ୟ କୌଣସି ପୁରାଣରେ ଦେଖାଯାଏ ନାହିଁ । କୁନ୍ତୀଙ୍କ ସହ ପାଣ୍ଡବମାନେ ଜତୁଗୃହ ଦାହରୁ ଉଦ୍ଧାର ପାଇ ବଣ

ବାଟରେ ଯାଉ ଯାଉ ରାତି ପାହିଗଲା । ଏହି ପ୍ରଭାତ ବର୍ଣ୍ଣନାର ଏକ ଆଲେଖ୍ୟ ଏଠାରେ ଦିଆଗଲା ।

ଏ ସମୟେ ରାତ୍ର ହୋଇଲା ଅବଶେଷ — ପ୍ରସନ୍ନତା ଦିଶି ଆସିଲା ଦଶଦିଶ
ଅରୁଣ ଅରୁଣରେ ପ୍ରାଚୀ ଦିଗଯାକ — ଅରୁଣ ବର୍ଣ୍ଣକୁ ଯେ ଭଜିଲା ଅଧିକ
ରାତି ପାହିବାର ଦେଖିଣ ଝଟଝଟ — ହଲାଇ ମୁକୁଟକୁ ରଟିଲା କୁକ୍‌କୁଟ ।
ମନ୍ଦିର ମାନଙ୍କରେ ପ୍ରଦୀପ ଦୀପିତି— ବେଳକୁ ବେଳ ଅପ୍ରସନ୍ନ ହୋଇଲା ଅତି
ତାହା ଦେଖି ଜଳଦ ବଦନେ ଜଳଜ — ବଜାଇଲେ ଦେବଙ୍କ ଆଳୟେ ମନୁଜ
(ଆଦିପର୍ବ)

କବି ସନ୍ଧ୍ୟା ବର୍ଣ୍ଣନା ମଧ୍ୟ ଅତ୍ୟନ୍ତ ମନୋହର ଓ ପାଣ୍ଡିତ୍ୟ ପୂର୍ଣ୍ଣ ଭାଷାରେ କିପରି କରି ଯାଇଛନ୍ତି ଦେଖାଯାଉ —

କ୍ରମରେ ଦିନକର-କରକୁ କରି ନାଶ
ପକ୍ଷୀମାନେ ନୀଡ଼େ ହୋଇଲେ ପରବେଶ
ତାହା ଦେଖି ସନ୍ଧ୍ୟା ନାରୀ ଯେ ତୋଷ ହୋଇ
ପାଟବସ୍ତ୍ର ମସ୍ତକେ ଉପରଣି ଦେଇ
ପାଛୋଟି ନେବା ପାଇଁ ଧାଇଁକି ଆସିଲା :
ଏମନ୍ତ ଶଙ୍କା ଜନ ମନେ ଉପୁଜିଲା ।

ମୂଳ ମହାଭାରତରେ ବ୍ୟାସଦେବ କେବଳ ଗୋଟିଏ ମାତ୍ର ଶ୍ଳୋକରେ ଯାହା ଉଲ୍ଲେଖ କରିଛନ୍ତି କବି ତାଙ୍କ ତୂଳୀମୁନରେ ଚମତ୍କାରିତା ପ୍ରଦର୍ଶନ କରି ଅପୂର୍ବ ବର୍ଣ୍ଣନା ବିଭବରେ ପରିପୂର୍ଣ୍ଣ କରିଛନ୍ତି । ପାଣ୍ଡବମାନେ ବିରାଟ ନଗରୀକୁ ଯାଉଥିବା ବେଳେ ବାଟରେ ଯମୁନା ନଦୀ ପଡ଼ୁଛି । ତତ୍କାଳୀନ ଯମୁନାର ଶୋଭାରେ କବି ଆତ୍ମହରା ହୋଇ ନିଜର କଳ୍ପନା ଶକ୍ତିକୁ ସ୍ୱଚ୍ଛନ୍ଦ ଭାବରେ ପରିଚାଳିତ କରିଛନ୍ତି । ସେ ଯମୁନା ନଦୀକୁ ଗୋଟିଏ ନାୟିକା

ରୂପରେ ଉପସ୍ଥାପିତ କରିଛନ୍ତି । ସତେ ଜଳ ଯମୁନାର କଳା ବସ୍ତ୍ରରେ ସ୍ୱର୍ଣ୍ଣସ୍ତମ୍ଭକ ଭେଳା ଶୋଭା ପାଉଅଛି । ତରଙ୍ଗ ପବନ ପାତରେ ଭ୍ରମରଗଣର ନୃତ୍ୟ କରୁଅଛି । ଲକ୍ଷ୍ମୀଦେବୀଙ୍କର ସର୍ବଶୋଭା ହରଣ କରି ନିଜେ କଳା ନୋହିଥିଲେ ସେ ଲକ୍ଷ୍ମୀ ଉପମା ଲଭକରିଥାନ୍ତା । ପ୍ରଷ୍ଫୁଟିତ ପଦ୍ମମୁଖରେ ସେ ସତେଜ ଯେପରି କାର ପ୍ରଶଂସାରେ ରହିଛି ।

ତାଦେଖି ପାଣ୍ଡୁସୁତ କଥାଂବାର୍ତ୍ତା ହେଲେ
ଏଥିରେ ସ୍ତ୍ରୀ ଶୋଭା ହେଉଛି ବୋଇଲେ ।
ପଦ୍ମମୁଖ ଶିଉଳୀ ବାଳେ ହୋଇ ଶୋଭା
କରୁଅଛି ନେତ୍ର ବେନିକ ଅତି ଲୋଭା ।
ଶଫରୀ ନୟନକୁ ଦେଲାଏ ରଙ୍ଗରେ
ନଥିଲେ ହେଲେ କେହି ଏହାର ସଙ୍ଗରେ ।
ଭୁଜ ଦୁଇଗୋଟି ଅଟଇ କଲ୍ଲୋଳ
ହେଉଅଛି ଭଲ ଭଙ୍ଗୀରେ ଅତି ଲୋଳ ।
ଚକ୍ରବାକ ସ୍ତନ ଯୁଗଳ ଯେ ସଘନ
ଆବର୍ତ୍ତଟି ଜାଣିବ ସ୍ତ୍ରୀ ନାଭି ସ୍ଥାନ ।
ଫେକଶ୍ବେତ ବସ୍ତ୍ରକୁ ଅଛି ତ ପଦର
ରଙ୍ଗକଇଁ ଧଡି ନେଉଛି ମନହର ।
ଦରଫୁଟା କୁମୁଦ ବ୍ୟାଜରେ କି ହାସି
କରଣ ନିଜ ଦନ୍ତ ଦେଶରେ ପ୍ରକାଶ ।
ମହୋଦଧି ପତିର ସଙ୍ଗତେ ସୁରତି
ଇଚ୍ଛା କରି ଦେଖ ଗମୁଛି ଝଟତି ।

ଦ୍ରୌପଦୀ ସ୍ୱୟଂବରକୁ ଯିବା ପୂର୍ବରୁ ସଖୀମାନଙ୍କ କର୍ତ୍ତୃକ ସ୍ନାନ ବେଦିକୁ ଯାଇଥିଲେ । ଓ ତାପରେ ପୋଷାକ ପରିଚ୍ଛଦ ଓ ଅଳଂକାର

ପରିଧାନ କରି ସଭାକୁ ଯାଇଥିଲେ । ଏ ବିଷୟ ବ୍ୟାସଦେବ କେବଳ ଦୁଇଟି ଶ୍ଳୋକରେ ସୂଚାଇଛନ୍ତି । କିନ୍ତୁ କବି ନିଜର ବର୍ଣ୍ଣନା ଚାତୁରୀ ଯୋଗକରି ଦ୍ରୌପଦୀଙ୍କ ବେଶ ବର୍ଣ୍ଣନା ଅତି ଚମତ୍କାର ଭାବେ ଦେଉଛନ୍ତି । ବ୍ୟାପୀ ଲେଖାରେ ତାଙ୍କୁ ଜଣେ ଖାଣ୍ଟି ଓଡ଼ିଆଣୀ ଢଙ୍ଗରେ ତାଡ଼, ଚୁଡ଼ି, ବଳପାହୁଡ଼ ପ୍ରଭୃତିରେ ସଜ୍ଜିତକରି ନିଜ ଜାତୀୟ ମମତାର ଜ୍ୱଳନ୍ତ ନିଦର୍ଶନ ଦେଇଛନ୍ତି ।

ଏଅନ୍ତେ ରଙ୍ଗ ଭଣ୍ଡି ଦେଇ ଯା ଜୁଡ଼ାକୁ
ବାନ୍ଧିଲା ଆସିଲା ସେ ଏପରି ମନକୁ ।
ରାହୁ ମୁଖୁ ଭଣ୍ଡିକ ଚିପନ ଯାଉଛି
କିଆପତ୍ରର ବ୍ୟାଜେ ପରିଧି ରାଜୁଛି ।
× × × ×
ନାସାପୁଟେ ଦେଇଣ ପୁଣି ନାକଚଣା
ସଜ୍ଜନମାନେ ନିଜ ବୁଦ୍ଧିକଲେ ବଣା ।
କଣ୍ଠରେ କଣ୍ଠିମାଳ ମାନଙ୍କୁ ଖଞ୍ଜିଲେ
ଫୁଲ ପୃଷ୍ଟଦେଶକୁ ଲମ୍ବାଇ ସେ ଦେଲେ ।
× × × ×
ଯତନେ ବାହୁବେନି ରତନ ତାଡ଼ ପାଇ
ସର୍ବ ଶୋଭାକୁ ସେ ହୁଡ଼ିଲା ଟଙ୍କ କହି ।
ବଳୟ ପଛେ ହୀରା ଚୁଡ଼ି ଯା ଖଞ୍ଜାହେଲା
ବାହୁ ଇନ୍ଦୀବର ମାଳକୁ ଜିଣିଲା ।
ତାହା ଦେଖି ସଖିମାନେ ମନେ ମଣି
ଯମୁନା ବାଟରେ କି ବସୁଛି ହଂସ ଶ୍ରେଣୀ ।

ଦ୍ରୌପଦୀଙ୍କ ବେଶ ବର୍ଣ୍ଣନା ସଂସ୍କୃତ ଗ୍ରନ୍ଥ ଅନୁଯାୟୀ କୃଷ୍ଣସିଂହ କରି ନାହାଁନ୍ତି ! ଆମ ଦେଶର ଲୋକମାନଙ୍କ ହୃଦୟଗ୍ରାହୀ ହେଲା ଭଳି ଏକଚିଯ

ଦେଇଛନ୍ତି । ଏହି ଅଂଶ ଟିକକ ପଢ଼ିଲା ବେଳେ ସତେ ଯେପରି ଗୋଟିଏ ଓଡ଼ିଆ ଲଳନା ଆଖି ଆଗରେ ନାଚିଯାଉଛି । କୃଷ୍ଣସିଂହ ମହାଭାରତର ବେଶ ବର୍ଣ୍ଣନା, କେଳପୁର ବର୍ଣ୍ଣନା, ସଭା ବର୍ଣ୍ଣନା ପ୍ରକୃତି ବର୍ଣ୍ଣନା ପ୍ରଭୃତି ଅନ୍ୟ କୌଣସି ଗ୍ରନ୍ଥରେ ଦେଖାଯାଏ ନାହିଁ । ମହାଭାରତ ରଚନାକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ କବି ଗଭୀର ଭାବେ ଚିନ୍ତାକରି ଯେଉଁଠି ଯେଉଁ ଅଳଂକାରର ଆବଶ୍ୟକ ତାହା ସେଇଠି ସଜାଡି ଦେଇଛନ୍ତି ।

ଓଡ଼ିଆ ମାନଙ୍କର ପର୍ବପର୍ବାଣୀ ଓ ସାମାଜିକ ଚିତ୍ର ଅତି ନିଖୁଣ ଭାବେ ଆଙ୍କି ପାରିଛନ୍ତି । ହିନ୍ଦୁଶାସ୍ତ୍ର ମତରେ ବିବାହ ପ୍ରଥାର ପରିଚୟ ଦେବାକୁ ଯାଇ କୃଷ୍ଣସିଂହ ଉତ୍ତରର ବିବାହ ପ୍ରସଙ୍ଗରେ ଉତ୍ତରା କପରି କୋକିଳ ସ୍ନାନ କରି ବିବାହ ବେଶରେ ଉପସ୍ଥିତ ହୋଇଛି, କୋକିଳ ସ୍ନାନ ପରେ ଗଭାସଜାଡ଼ିବା, ଦେହରେ ହଳଦୀ ଘିଅ ମାଖିଦେବା ଓଦା ବାଳକୁ ନୀଳବସନରେ ଘୁଡ଼ିପିଦେବା, କୁଙ୍କୁକରି ଶାଢ଼ୀ ପିନ୍ଧିବା, ବରକୁ ବାଟବରଣ କରିଦେବା, ପାଟବସ୍ତ୍ର ଉହାଡ଼ରେ ଥାଇ ବରକୁ କନ୍ୟା ଲବଣବୃମରେ ପକାଇବା ହସ୍ତଗ୍ରନ୍ଥି ବେଳେ ହୁଳହୁଳି ପକାଇବା, କନ୍ୟାଦାନ, ଭୋଜନ ଆଗରୁ ଶୀତଳଗୁଣ୍ଡି ପ୍ରଦାନ ଏପରି ବହୁ ବିଷୟ ଉଲ୍ଲେଖ କରିଛନ୍ତି ଯାହାକି ମୂଳ ମହାଭାରତରେ ଦେଖିବାକୁ ମିଳେ ନାହିଁ । କଳିଯୁଗ ବର୍ଣ୍ଣନା ପ୍ରସଙ୍ଗରେ କବି ଓଡ଼ିଶା ଲୋକଙ୍କ ବର୍ତ୍ତମାନ ଖାଦ୍ୟ, ପୋଷାକ, ଚାଲିଚଳଣ, ବୈବାହିକ ସଂପର୍କ, ଜାତିଗତ ବିଚାର ପ୍ରଭୃତିର ଏକ ନିଖୁଣ ବାସ୍ତବ ଚିତ୍ର ପ୍ରଦାନ କରିଛନ୍ତି ।

ଏହାବ୍ୟତୀତ ଭୀଷ୍ମ ପର୍ବରେ ଭଗବଦ୍ ଗୀତାର ଗୂଢ଼ ଭାବ ଗୁଡ଼ିକୁ ଅତ୍ୟନ୍ତ ସରଳ ଭାଷାରେ ଉଲ୍ଲେଖ କରି ଓଡ଼ିଶାର ଧାର୍ମିକ ଜନତାର ମହା-ଉପକାର ସାଧନ କରିଛନ୍ତି । ମହାଭାରତ ଓ ହରିବଂଶ ଗ୍ରନ୍ଥର ଅନୁବାଦ ବ୍ୟତୀତ ସେ ନାନାବିଧ ବୃତ୍ତ ନା ଛନ୍ଦ ବ୍ୟବହାର କରି ବହୁଲୌକିକ ଆଦି ରସାତ୍ମକ ଛନ୍ଦ, ଚୌପଦୀ ଓ ଗୀତ ରଚନା କରିଛନ୍ତି । ଏହି ଛନ୍ଦ ଓ

ଚୌପଦୀ ମଧ୍ୟରୁ ୧୫ ଗୋଟି ମାତ୍ର ଓଡ଼ିଆ ଗୀତିକାବ୍ୟ ସଂକଳନରେ ପ୍ରକାଶ ପାଇଛି । ଏଥିରୁ ଅଧିକାଂଶ ଲେଖା ମୁଦ୍ରଣ ଅଭାବରୁ ଲୋକ ମୁଖରେ ରହିଛି । ଏହି ଗୀତ ମାନଙ୍କରେ ନବାନୁରାଗ ଖଣ୍ଡିତ, ନାୟକର ଧୃଷ୍ଟୋକ୍ତି, ନାୟିକାର ଅନାଦର ଯୋଗୁଁ ନାୟକର ବିଷାଦ, ନାୟିକାର ରୂପବର୍ଣ୍ଣନା, ବିରହିଣୀର ଭାବନା ପ୍ରଭୃତି ବର୍ଣ୍ଣିତ । ସରଳ ଭାଷାରେ କବିଙ୍କ ରଚିତ କବିତା କିପରି ଅଳଂକାର ଯୋଜନା ଯୋଗୁଁ ସୌଷ୍ଠବ ସମ୍ପନ୍ନ ହୋଇ-ପାରିଛି ତାହା ଉଦାହୃତ ଗୀତ ମାନଙ୍କରୁ ଅନୁମେୟ ।

କଣ୍ଠଗତି - ପରିଜନଠାରେ - ଏକ ଖଣ୍ଡିତରେ [ପଦ]

ଶୁଣାଇ ଶ୍ରୀମୁଖ ଅଞ୍ଚଳ କମଳ — ଅଶ୍ରୁଜଳେ ଧୋଇ ଉଜ୍ଜ୍ୱଳ କଜ୍ଜ୍ୱଳ
ବସି କରଜକୁ ଦେଇ ଗଣ୍ଡ-ମଣ୍ଡଳ— କରଜେ ଚିରୁ ଧରାରେ [୧]

× × ×

ମାନକୃଷ୍ଣସିଂହ ନୃପତିର ମାନ—ମାନସରୁ ବାଲୁ ତେଜି ଅଭିମାନ
ଆନନ୍ଦଦାୟୀ ତୋ ଓଷ୍ଠ ସୁଧାପାନ—ଦେଇ ରଖ ତୋ ଛାତିରେ [୪]

ଏଗୁଡ଼ିକ ଆଦି ରସାତ୍ମକ ହେଲେହେଁ ଏଗୁଡ଼ିକ ସଂଯତ ଓ ବହୁ-ପରିମାଣରେ ନଗ୍ନ ଦୈହିକ ସମ୍ଭୋଗବିଳାସ ଭାବନାରୁ ମୁକ୍ତ ।

ଗୀତି କବିତା ବ୍ୟତୀତ କବି "ରାଧା ବିରହ ଚଉତିଶା" ନାମକ ଏକ ଚୌତିଶା ରଚନା କରିଥିଲେ । ଏଥିରେ ରାଧାବିରହ ତାଡ଼ିତ କୃଷ୍ଣଙ୍କର ଦୂତି ନିକଟରେ ସ୍ୱୀୟ ମନୋଭାବ ବର୍ଣ୍ଣିତ ହୋଇଛି । ଏଥିରେ କବିଙ୍କ ଉଜ୍ଜ୍ୱଳ ସ୍ୱାକ୍ଷର ପ୍ରତିଫଳିତ ଏଥିରେ ବିରହୀ କୃଷ୍ଣଙ୍କର - ରାଧା ପ୍ରୀତି ବ୍ୟାକୁଳତା ଅତ୍ୟନ୍ତ ମନୋଜ୍ଞ ଓ ମଞ୍ଜୁଳ ଭାଷାରେ କିପରି ବର୍ଣ୍ଣିତ ହୋଇଛି ନିମ୍ନୋକ୍ତ ଦୁଇଟି ପଦରୁ ଅନୁମେୟ ।

କହିବୁ କରୁଣାନିଧି ସନ୍ନିଧିରେ – ଦିବ୍ୟଅବକାଶେ ଥରେ
କଦେବ ଚରଣରେ ପଥର ପକାଇ—ଦେଇଛୁ ପ୍ରୀତି ପଥରେ
ଘନକୁ ଚାତକ ଆଶାକଲପରି—ଆଶାମୋର ପ୍ରତିଦିନ
ଯେନୁ ନାହିଁ ଚଉେ ଚଉଜ ମୋହିନୀ । ଜଳକୁ ଛାଡ଼େ ମୀନ
ଡମ୍ବରୁ ମଧ୍ୟମା ଡ଼ୋଳା ମଧ୍ୟେ ମୋର—ମିତ୍ତ ତ କଲଣି ଘର
ଡେ଼ରିଛୁ ଶ୍ରୁତିକ ରତେ ଶୁଣିବାକୁ—ନୂପୁର ଧ୍ୱନିକ ତାର
କ୍ଷମା ନିଧି ସିନ୍ଧି ବୁଡ ଯାଉଛୁଟି—କହିବୁ ଥରେ ମଣାଇ
କ୍ଷଣକାନ୍ତ ଆଗେ କହିବୁଟି ସଖୀ – ତାକୁ ଶୋଭ ଦିଶୁନାହିଁ
କ୍ଷମେ କୃଷ୍ଣସିଂହ ନୃପ ଭଣେ ରାଧା – କାନ୍ତ ପଦ ଯୁଗ ଧ୍ୟାଇ

କୃଷ୍ଣସିଂହଙ୍କ ଭାଷା ସରଳ, ସୁନ୍ଦର, ମଧୁର, ସରସ ଓ ସ୍ୱାଭାବିକ ହୋଇଥିବା ହେତୁ ତାଙ୍କ ମହାଭାରତ ଓ ହରିବଂଶ ଜଗନ୍ନାଥଙ୍କ ଭାଗବତପରି ଉଭୟ ଶିକ୍ଷିତ ଓ ଅଶିକ୍ଷିତ ଶ୍ରେଣୀ ମଧ୍ୟରେ ଆଦୃତ ହୋଇ ପାରିଛି । ଜଗନ୍ନାଥ ଦାସଙ୍କ ଭାଗବତକୁ ବାଦ୍ ଦେଲେ କୃଷ୍ଣସିଂହଙ୍କ ମହାଭାରତପରି ଅନ୍ୟ କୌଣସି ପୁରାଣ ସ୍ପର୍ଶ କରି ପାରିନାହିଁ । ଏଥିହେତୁ ଉତ୍କଳର ବ୍ୟାସ-କବି ଫକୀରମୋହନ ତାଙ୍କ "ଅବସର ବାସରେ" କବିତାଗୁଚ୍ଛ ବହିରେ କୃଷ୍ଣସିଂହଙ୍କ ସାରସ୍ୱତ ସାଧନା ଓ ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ଯାହା ଲେଖିଛନ୍ତି ସେଥିରୁ କିୟଦ୍‌ ଅଂଶ ଉଲ୍ଲେଖ କରାଗଲା

ମହାରାଜ କୃଷ୍ଣସିଂହ—ଧରାକୋଟ ପତି
ବାଣାପାଣି ବରପୁତ୍ର – ଯଶସ୍ୱୀ ସୁମତି
ଶୁଣାଇଛ ଉତ୍କଳେ ଯେ ଭାରତ ସଙ୍ଗୀତ
ଯୁଗ ଯୁଗାନ୍ତରେ ନାମ ଥିବ ବିରାଜିତ
ଉତ୍କଳ ମାତାକୁ ପିନ୍ଧାଇଛ ରତ୍ନହାର

ଯାଇଅଛ ପୂର୍ଣ୍ଣ କରି ସାହିତ୍ୟ ଭଣ୍ଡାର
ଭକ୍ତି ଭରେ ଗ୍ରାମେ ଗ୍ରାମେ ନରନାରୀଗଣ
ଚିରକାଳ ତୁମ ନାମ କରିବେ ସ୍ମରଣ

କବିଙ୍କର ସଂସ୍କୃତିକରଣ କରି "ଧରାକୋଟ ଦର୍ଶନ" ନାମକ ଏକ କ୍ଷୁଦ୍ର ବହିରେ କବିବର ଚିନ୍ତାମଣି ମାହାନ୍ତି ଧରାକୋଟ ଓ କୃଷ୍ଣସିଂହଙ୍କ ସାହିତ୍ୟ ସାଧନାରେ ମୁଗ୍ଧ ହୋଇ ଯାହା ଉଲ୍ଲେଖ କରିଛନ୍ତି ସେଥିରୁ କେତୋଟି ପଂକ୍ତି ଉଦ୍ଧାର କରାଗଲା ।

ଧନ୍ୟା ଧରାକୋଟ ଧରଣୀ ମହାକବି ଜନନୀ
ଲକ୍ଷ୍ମୀ ସରସ୍ୱତୀ ମିଳନ ଭୂମି ଶୋଭାରୂପିଣି
ସ୍ୱଗୀବ - ଶୁଦ୍ଧା ତୁ ନଗରୀ ପୁଣ୍ୟ ସୌଭାଗ୍ୟବତୀ
ଧନ୍ୟା ହେଲୁ ଅଙ୍କେ ଧରିଣ କୃଷ୍ଣସିଂହ ନୃପତି
ତେଜ ସେ ରାଜନ୍ୟ ବାଞ୍ଛିତ ସୁଖ ସିଂହ ଆସନ
ବାଗ୍‌ଦେବୀ ମଣ୍ଡପେ ସତତ କରି ଉପବେଶନ
ବୀଣାପାଣି ପାଦ ପୂଜାରେ ଥାଇ ନିତ୍ୟ ନିରତ
ରଚିରେ ପୁରାଣ ଅଠର ପର୍ବ ମହାଭାରତ
ଉତ୍କଳରେ ପୂଜା ପାଉଛି ପ୍ରତି ଘରେ ସେ ଗ୍ରନ୍ଥ
ଗୁରୁ ରୂପେ ପୁଣି ଦେଉଛି ଧର୍ମ ଶିକ୍ଷାର ପନ୍ଥ

ଏଣୁ ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ ଜାତି ଥିବ ସେତେଦିନ ପର୍ଯ୍ୟନ୍ତ କୃଷ୍ଣସିଂହଙ୍କ ମହାଭାରତ ଓ ହରିବଂଶ ଓଡିଶାର ଘରେ ଘରେ ଆଦର ପାଉଥିବ ଓ ଲୋକଙ୍କୁ ଧର୍ମ ଓ ନୀତି ମାର୍ଗରେ ପରିଚାଳିତ କରୁଥିବ । ଦୀର୍ଘ ସାତବର୍ଷ କାଳ ସକଳ ରାଜ ବିଭବ ଓ ଐଶ୍ୱର୍ଯ୍ୟକୁ ଜଳାଞ୍ଜଳି ଦେଇ ଆର୍ଷମୟ ଜୀବନ ଯାପନ କରି ସାରସ୍ୱତ ସାଧନାରେ ନିଜକୁ ଉତ୍ସର୍ଗ କରି ଉତ୍କଳ ସାରସ୍ୱତ ଭଣ୍ଡାରକୁ ସେ ସମୃଦ୍ଧିଶାଳୀ କରି ପାରିଛନ୍ତି ।

ସେ ଜଣେ ଆଦର୍ଶ ନରପତି ଥିଲେ ଓ ପ୍ରଜାଗଣଙ୍କୁ ସୁଖରେ ପାଳନ କରି ଦୀର୍ଘ ୫୯ ବର୍ଷ ବୟସରେ ୧୭୮୮ ଖ୍ରୀଷ୍ଟାବ୍ଦ ବୈଶାଖ ଶୁକ୍ଳ ପଞ୍ଚମୀ ମାନବଲୀଳା ସମ୍ବରଣ କରିଥିଲେ । ମୃତ୍ୟୁପରେ ତାଙ୍କର ମରଣଶରୀରକୁ ପବିତ୍ର ଋଷିକୁଲ୍ୟା ନଦୀର ଉତ୍ତର ତଟରେ ଅବସ୍ଥିତ ସତୀ ମଠରେ ତାଙ୍କର ଶବ ସଂସ୍କାର କରାଯାଇଥିଲା । ଜନଶ୍ରୁତିରୁ ଜଣାଯାଏ ପତି ପରାୟଣା ସତୀ, ସାଧ୍ୱୀ ଚନ୍ଦ୍ରମାଦେବୀ ତାଙ୍କ ପତିଙ୍କ ଚିତାନଳରେ ଆତ୍ମାହୁତି ଦେଇ ସତୀ ହୋଇ-ଥିଲେ । ଯେଉଁଠାରେ ସେ ସତୀ ଯାଇଥିଲେ ସେଠାରେ ଉଭୟ ପତି ଓ ପତ୍ନୀଙ୍କ ସମାଧି ନିର୍ମାଣ କରାଯାଇଅଛି । ପୂର୍ବରୁ ଜୟସିଂହଙ୍କ ସ୍ତ୍ରୀ ଏହି ମଠରେ ସତୀ ଯାଇଥିବା କଥା ଆଗରୁ ଉଲ୍ଲେଖ କରାଯାଇଅଛି । କବିବର ଚିନ୍ତାମଣିଙ୍କ ଲିଖିତ ଦୁଇପଦ ନିମ୍ନରେ ଦିଆଗଲା —

ଏଠାରେ ସଞ୍ଚିତ ହେଲା କୃଷ୍ଣସିଂହ ଚିତା
ସହ ମୃତା ହେଲେ ତାଙ୍କ ପବିତ୍ର ବନିତା
ସେହି ଦିନଠାରୁ ଚିତା ହୋଇଛି ରକ୍ଷିତ
ଚିତାକୁଣ୍ଡ ପରେ ହୋଇ ମଣ୍ଡପ ନିର୍ମିତ
ସତୀ-କବି-ଦାହୀ ସେହି ପବିତ୍ର ଅନଳ
ପାଉଛନ୍ତି ପୂଜା ତହିଁ ଏତାବତ କାଳ ।

ଆଜି କୃଷ୍ଣସିଂହ ନାହାନ୍ତି କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ମହାଭାରତ ଓ ହରିବଂଶ ଥିବ ସେତେଦିନ ପର୍ଯ୍ୟନ୍ତ ସେ ଉତ୍କଳବାସୀଙ୍କ ହୃଦୟ ସିଂହାସନରେ ଜୀବିତ ରହିଥିବେ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

## କବିରାଜ ଭଗବାନ ବ୍ରହ୍ମା

କବିରାଜ ଭଗବାନ ବ୍ରହ୍ମା ଧରାକୋଟ ରାଜ୍ୟାନ୍ତର୍ଗତ ଋଷିକୁଲ୍ୟା ନଦୀର ଉତ୍ତର ତଟରେ ଅବସ୍ଥିତ ଗଙ୍ଗାପୁର ଓରଫ ପୁରୁଷୋତ୍ତମପୁରରେ

ଗୋପାଳ ରଥଙ୍କ ଔରସରେ ଅଷ୍ଟାଦଶ ଶତାବ୍ଦୀର ତୃତୀୟ ଦଶକରେ ଜନ୍ମ ଗ୍ରହଣ କରି ଊନବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଦେହ ତ୍ୟାଗ କରିଥିବା ବିଷୟ ତାଙ୍କ ବଂଶଧରମାନଙ୍କ ମୁଖରୁ ଶୁଣିବାକୁ ମିଳେ । ସେ ଧରାକୋଟର ପ୍ରଖ୍ୟାତ ରାଜା ରାଜେନ୍ଦ୍ର ସିଂହ ଓ କୃଷ୍ଣସିଂହଙ୍କ ସମସାମୟିକ ଥିଲେ । ସେ କୃଷ୍ଣସିଂହଙ୍କୁ ମହାଭାରତ ଅନୁବାଦରେ ସାହାଯ୍ୟ କରିଥିବା ବିଷୟ ଜନଶ୍ରୁତିରୁ ଜଣାଯାଏ । ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ଓଡ଼ିଆ ଅପେକ୍ଷା ସଂସ୍କୃତରେ ଯେଉଁମାନେ କାବ୍ୟ କବିତା ରଚନା କରୁଥିଲେ ସେମାନଙ୍କୁ ସମାଜରେ ଓ ରାଜ୍ୟ ଦରବାରରେ ସେ ସମୟରେ ଉଚ୍ଚ ସମ୍ମାନ ମିଳୁଥିଲା । ଏଣୁ ସେ ଏକ କାଳ୍ପନିକ କଥାବସ୍ତୁକୁ ଅବଲମ୍ବନ କରି ମୃଗୟା ଚମ୍ପୂ ନାମକ ଏକ କାବ୍ୟ ଅତ୍ୟନ୍ତ ପାଣ୍ଡିତ୍ୟପୂର୍ଣ୍ଣ ଭାଷାରେ ସଂସ୍କୃତରେ ପ୍ରଣୟନ କରିଥିଲେ । ଏହି କାବ୍ୟ ଏଯାଏ ମୁଦ୍ରିତ ଆକାରରେ ପ୍ରକାଶ ପାଇନାହିଁ । ଏହାର ପାଣ୍ଡୁଲିପି ତାଳପତ୍ର ବହି ଆକାରରେ ଓଡ଼ିଶା ସାହିତ୍ୟ ମ୍ୟୁଜିଅମରେ ଦେଖିବାକୁ ମିଳେ ଓ ଏହାର ନକଲ ଧରାକୋଟ କେତେକ ପଣ୍ଡିତଙ୍କ ଘରେ ଦେଖିବାକୁ ମିଳେ ।

କବି ଭଗବାନ୍ ଶ୍ରୀ କୃଷ୍ଣଙ୍କ ପରମ ଭକ୍ତ ଥିଲେ । ଏଣୁ ତାଙ୍କର ଚମ୍ପୂ କାବ୍ୟର ଆଦ୍ୟରେ ଶ୍ରୀକୃଷ୍ଣଙ୍କୁ ବନ୍ଦନା କରିବାକୁ ଯାଇ ନିମ୍ନଲିଖିତ ଶ୍ଳୋକ ରଚନା କରିଛନ୍ତି —

ଅଞ୍ଜନାଭ ମଖିଳ ବ୍ରଜବାମା — ରଞ୍ଜନାୟକୃତ ରାସ ବିଳାସଂ
ତଂ ଜନାଭୟଦ ମମ୍ବୁଜ ନେତ୍ରଂ—କଞ୍ଜନାଭମହ ମନ୍ୱହମୀଡ଼େ

ଅର୍ଥ—ସମସ୍ତ ବ୍ରଜାଙ୍ଗନାଙ୍କ ଆନନ୍ଦ ବର୍ଦ୍ଧନ ପାଇଁ ଯିଏ ରାସବିଳାସ କରିଥିଲେ ଯାହାଙ୍କର କାନ୍ତି ଅଞ୍ଜନ ସଦୃଶ, ଯେ ଲୋକଙ୍କୁ ଅଭୟ ପ୍ରଦାନ କରନ୍ତି ସେହି କମଳ ନେତ୍ର ପଦ୍ମନାଭଙ୍କୁ ମୁଁ ସର୍ବଦା ବନ୍ଦନା କରୁଛି । କେତେକ ଶ୍ଳୋକରେ ସେ ନିଜର କଳ୍ପନା ଶକ୍ତିକୁ ସ୍ୱଚ୍ଛନ୍ଦ ଭାବରେ ଖେଳାଇ ନିଜର ଅପୂର୍ବ ରଚନା ପାଠବର୍ଗର ପରିଚୟ ଦେଇଛନ୍ତି ।

ଏତତ୍ ଫଳାଶନ ସତତ ସୁପର୍ବାଣା
ନିର୍ବେଶୟ ସ୍ଥିତ ବିଶାଳ କଳା କଳାପଃ
ସ୍ୱର୍ଭାନୁ-ନିର୍ଭର-ନିପୀଡ଼ କଣ୍ଠଦେଶେ
ଲଗ୍ନୋ ବିମୋକ୍ଷ୍ୟତି କଥଂ ନୁ ନିଶୀଥିନୀଶଃ

ଅର୍ଥ—ଦେବତାମାନେ ଏହି ଚ୍ୟୁତ ବୃକ୍ଷର ଫଳ ରସକୁ ସର୍ବଦା ଅମୃତ-ତୁଲ୍ୟ ଭୋଜନ କରି ଚନ୍ଦ୍ରଙ୍କଠାରୁ ନିର୍ଗତ ଅମୃତ ପାନ ନକରିଥିବା ହେତୁ ଚନ୍ଦ୍ରଙ୍କ ଦେହର ସ୍ଥୂଳାକାର ଧାରଣ କରିଅଛି । ଏଣୁ ରାହୁ ଚନ୍ଦ୍ରଙ୍କୁ ଗ୍ରାସ କରିବା ସମୟରେ ଚନ୍ଦ୍ରଙ୍କର ବିଶାଳବପୁ ରାହୁର ଶୀର୍ଣ୍ଣ ଗଳାରେ ଲାଗି ଯାଇଥିବା ହେତୁ ଚନ୍ଦ୍ର ଏଥିରୁ କିପରି ବିମୁକ୍ତ ଲାଭ କରିବେ ଜଣାଯାଉନାହିଁ ।

କବିଙ୍କ ମୃତ୍ୟୁ ଚମ୍ପୂର ଏକ କ୍ଷୁଦ୍ର କାବ୍ୟ ହେଲେ ମଧ୍ୟ ଏହାର ଭାଷା କାଦମ୍ବରୀ ଓ ଦଶକୁମାର ସହିତ ତୁଳନୀୟ ବୋଲି ବହୁ ପଣ୍ଡିତ ମତ ବ୍ୟକ୍ତ କରିଛନ୍ତି ।

ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରାକୁ ଉଦ୍ଦେଶ୍ୟ କରି କବିରାଜ ଭଗବାନ-ବ୍ରହ୍ମା ପାରଳାର ବନ୍ଧୁବାକ୍ ଚକ୍ରପାଣି ପଟ୍ଟନାୟକ ଓ କବିଚନ୍ଦ୍ର ପୀତାମ୍ବର-ମିଶ୍ରଙ୍କ ଦ୍ୱାରା ତିନିଗୋଟି ଚମ୍ପୂକାବ୍ୟ ରଚିତ ହୋଇଥିବା ଜଣାଯାଇଛି । ଏଥିରେ ଯଥାକ୍ରମେ ୧୧୭, ୧୦୭ ଓ ୧୦୦ ଗୋଟି ଶ୍ଲୋକ ଅଛି । କବିରାଜ ବ୍ରହ୍ମାଙ୍କ ଲେଖା "ଗୁଣ୍ଡିଚା ଶତକ ଚମ୍ପୂ" ନାମରେ ଅଭିହିତ । ଏହି ଚମ୍ପୂର କେତେକ ଶ୍ଲୋକ ପଣ୍ଡିତ ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମା ତାଙ୍କ ମନୋରମା ମାସିକ ସଂସ୍କୃତ ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶ କରିଥିଲେ ।

ଉଭୟ ଗ୍ରନ୍ଥରେ କବି ନିଜ ବଂଶର ପରିଚୟ ପୃଷ୍ଠପୋଷକ ଗ୍ରନ୍ଥ ରଚନାର ସମୟ ସମ୍ବନ୍ଧରେ କୌଣସି ସୂଚନା ଦେଇ ନାହାନ୍ତି । ସ୍ୱର୍ଗତ ଜଗବନ୍ଧୁ ସିଂହଙ୍କ ପ୍ରାଚୀନ ଉତ୍କଳ ପୁସ୍ତକରେ ଭଗବାନ କବିରାଜ ଓ

କବି ଚକ୍ରପାଣି ପଟ୍ଟନାୟକଙ୍କ ମଧ୍ୟରେ ଉକ୍ତି ପ୍ରତ୍ୟୁକ୍ତି ଛନ୍ଦରେ ରଚିତ ଦୁଇଟି ସୁନ୍ଦର ଶ୍ଳୋକ ନିମ୍ନରେ ଉଦ୍ଧାର କରାଗଲା । ଏହି ଶ୍ଳୋକ ଦ୍ୱୟରୁ ଉଭୟ କବିଙ୍କ ବାକ୍ ବିଭୁତି, ପ୍ରତ୍ୟୁତ୍ପନ୍ନମତିତା ଓ ଅଗାଧ ପାଣ୍ଡିତ୍ୟର ସୂଚନା ମିଳେ । ଉଭୟ କବିଙ୍କ ସାକ୍ଷାତ୍ ପୁରୀ ଶ୍ରୀ ମନ୍ଦିର ନିକଟରେ ହୋଇଥିବା ଜଣାଯାଏ । ବିଦଗ୍ଧ ଚକ୍ରପାଣିଙ୍କ ସୁନ୍ଦର ପୋଷାକ, କୁଞ୍ଚିତକେଶ ଓ ବଙ୍କୁଲିବାଡିକୁ ଦେଖି କବିରାଜ ପରିହାସ ଛଳରେ ପ୍ରଶ୍ନ ପଚାରିଛନ୍ତି –

କିଂବା ସଖା ଚିକ୍କଣ କୁଞ୍ଚିତେନ
କିଂ ଦାରୁଣା ବନ୍ଧୁର ଟଙ୍କୁରେଣ
ଯଦ୍ୟସ୍ତି କାଚିତ୍-ବିଚସାଂ ବିଭୂତି
ସ୍ତୁଦୋହି ମେ ସ୍ୟାତ୍ ମନସୋ ବିତୃପ୍ତିଃ

( ଭଗବାନ ବ୍ରହ୍ମା )

ଶ୍ରୀ ପଟ୍ଟନାୟକ ଉତ୍ତର ଦେଇଛନ୍ତି –

କିଂ ବା ସଖା ନାବ ବିବୃଣୀଷ୍ୱଂ
ବାସଃ ପ୍ରଧାନଂ ଖଳୁଯୋଗ୍ୟତାୟାଃ
ପୀତାମ୍ବରମ୍ ବୀକ୍ଷ ଦଦୌତନୁଜାମ୍
ଦିଗାମ୍ବରମ୍ ଯତ୍‌ଗରଳଂ ପୟୋଧିଃ

ଉଭୟ କବି ଗୁଣ୍ଡିଚି ଯାତ୍ରା ସମ୍ବନ୍ଧରେ ଗ୍ରନ୍ଥ ରଚନା କରିଥିବା ହେତୁ ଦୁହିଁଙ୍କ ମଧ୍ୟରେ ସାହିତ୍ୟ ସାଧନାର ପ୍ରତିଯୋଗିତା ହୋଇଥିବା ମନେ ହୁଏ ସେତେବେଳେ ସଂସ୍କୃତ ସାହିତ୍ୟ କ୍ଷେତ୍ରରେ ଗଞ୍ଜାମର ବଡ଼ଖେମଣ୍ଡି, ଆଠଗଡ଼, ଚିକିଟି, ଘୁମୁସର, ଧରାକୋଟ ପ୍ରଭୃତି ଅଞ୍ଚଳର ଲେଖକ ଓ କବି ମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ଲାଗି ରହିଥିଲା । କବିଙ୍କ ବଂଶଧର ମାନେ ପୁରୁଷାନୁକ୍ରମେ ପଣ୍ଡିତ ଥିଲେ । ତାଙ୍କର ବଂଶଧରମାନେ ଏପର୍ଯ୍ୟନ୍ତ ଗଙ୍ଗାପୁରରେ ବାସ କରୁଛନ୍ତି । କବି କୌଣସି ବ୍ରହ୍ମରାକ୍ଷସଙ୍କ ଠାରୁ ଶିକ୍ଷା ଲାଭ କରିଥିବା ଧରାକୋଟରେ ପ୍ରବାଦ ଅଛି । କବିଙ୍କ ରଚନା ପାଟବ ଓ ପାଣ୍ଡିତ୍ୟ ସମ୍ବନ୍ଧରେ "ମନୋରମା"ରେ ପ୍ରକାଶିତ ଗ୍ରନ୍ଥାଲୋଚନା ଦ୍ରଷ୍ଟବ୍ୟ ।

# ପଣ୍ଡିତ ଗୋପୀନାଥ ମହାପାତ୍ର

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଧରାକୋଟ ରାଜ୍ୟାନ୍ତର୍ଗତ ରାଜେନ୍ଦ୍ରପୁର ଶାସନରେ ଶୋତ୍ରୀୟ ବ୍ରାହ୍ମଣ ପରିବାରରେ ପଣ୍ଡିତ ଗୋପୀନାଥ ଜନ୍ମ ଗ୍ରହଣ କରିଥିଲେ । ସେ ଧରାକୋଟର ପ୍ରତ୍ୟକ୍ଷ ଓ ପ୍ରସିଦ୍ଧ ସ୍ୱୟମ୍ଭୁ ଶ୍ରୀ ଚନ୍ଦ୍ରକଳେଶ୍ୱର ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ସଂସ୍କୃତ ଭାଷାରେ ଏକ ଅଷ୍ଟକରଚନା କରିଥିଲେ । ସେ ସମୟରେ ରାଜେନ୍ଦ୍ରସିଂହ ଓ କୃଷ୍ଣସିଂହଙ୍କ ପୃଷ୍ଠପୋଷକତା ଲାଭକରି ସ୍ଥାନୀୟ ପଣ୍ଡିତମାନେ ବହୁ ଧାର୍ମିକ କବିତା, ସ୍ତୋତ୍ର ସାହିତ୍ୟ ଓ ମାନ୍ତପୂର୍ଣ୍ଣ କବିତା ସଂସ୍କୃତ ଓ ଓଡ଼ିଆରେ ରଚନା କରିଥିବା ଦୃଷ୍ଟିଗୋଚର ହୁଏ । ଏହି ଅଷ୍ଟକଟି ଦାର୍ଶନିକତା ଓ ସାହିତ୍ୟ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ । ଏଥିରେ ମଞ୍ଜୁଳ ପଦ ବିନ୍ୟାସ ଓ ସାଙ୍ଗୀତିକତାର ମଧୁର ମିଶ୍ରଣ ଦେଖାଯାଏ ଏହି ଭକ୍ତିରସାତ୍ମକ ଅଷ୍ଟକରୁ ଦୁଇଟି ଶ୍ଳୋକ ଦିଆଗଲା ।

ଯସ୍ୟାଙ୍କେ ଧରଣୀ ଧରେନ୍ଦ୍ର ତନୁଜା ଗଙ୍ଗୋତ୍ତମାଙ୍ଗେ ଶୁଭ
ଭାଲେଚେନ୍ଦୁକଳା କଣ୍ଠେ ଶିଖରେ ବକ୍ଷସ୍ଥଳେ ବାସୁକିଃ
ପାଣୌବ୍ରହ୍ମଶିରଃ ଶ୍ମଶାନ ଭସିତଂ ପ୍ରତ୍ୟଙ୍ଗ ମଙ୍ଗୀକୃତମ୍
ତଂ ବନ୍ଦେ ଦିବସାନ୍ତ ନାଟ୍ୟକୃତନଂ ଶ୍ରୀଚନ୍ଦ୍ରକଳେଶ୍ୱରଂ । (୧)

ଅର୍ଥ :— ଯାହାଙ୍କର କୋଳରେ ହିମାଳୟଙ୍କ କନ୍ୟା ଉମା, ମସ୍ତକରେ ପବିତ୍ର ଗଙ୍ଗା, କପାଳରେ ଚନ୍ଦ୍ରଙ୍କର କଳା, ମସ୍ତକରେ କଣ୍ଠେ, ବକ୍ଷସ୍ଥଳରେ ବାସୁକି, ହସ୍ତରେ ବ୍ରହ୍ମକପାଳ, ଦେହର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗରେ ଶ୍ମଶାନ ଭସ୍ମ ବିଲେପିତ, ସନ୍ଧ୍ୟା ସମୟରେ ନାଟ୍ୟରତ — ଏପରି ଚନ୍ଦ୍ରକଳେଶ୍ୱରଙ୍କୁ ମୁଁ ବନ୍ଦନା କରୁଅଛି ।

ପାଂଗବାର ବିଗଲଡ଼ନଷ୍ଟ ଗରଳ ଜ୍ୟୋସ୍ନା ବିଗଜଦ୍ ଗଳଂ
କୈଳାସାଦ୍ରି ନିକେତନଂ ମୁନିଜନ ଜ୍ଞାନ ପ୍ରଦାନା ଧୃତଂ
ବନ୍ଧୁକ ପ୍ରସବାରୁଣାଧର ପୁଟଂ ନ୍ୟଗ୍ରୋଧ ମୂଳାଶ୍ରୟଂ
ବନ୍ଦେ ନିର୍ଜ୍ଜର ବୃନ୍ଦ ବନ୍ଦିତଂ ପଦଂ ଶ୍ରୀ ଚନ୍ଦ୍ରକଳ୍ଲେଶ୍ୱରଂ । (୨)

ଅର୍ଥ :—ସମୁଦ୍ର ମନ୍ଥନରୁ ବାହାରିଥିବା ଗରଳର ଜ୍ୟୋସ୍ନାର ଶୋଭିତ ଗଳା, କୈଳାସ ପର୍ବତ ଗୃହ, ମୁନିଜନମାନଙ୍କୁ ଜ୍ଞାନ ପ୍ରଦାନ କରୁଥିବାରୁ ଆଦୃତ, ବନ୍ଧୁକ ପୁଷ୍ପ ସଦୃଶ ଅରୁଣବର୍ଣ୍ଣପରି ଅଧରପୁଟ, ବଟବୃକ୍ଷର ମୂଳହିଁ ଆଶ୍ରୟ ସ୍ଥଳ, ଦେବତାମାନଙ୍କ ଦ୍ୱାରା ବନ୍ଦିତ ଅଟେ ପଦ, ଏପରି ଅଟନ୍ତି ଯେଉଁ ଚନ୍ଦ୍ରକଳ୍ଲେଶ୍ୱର ତାଙ୍କୁ ମୁଁ ବନ୍ଦନା କରୁଅଛି ।

ଉପରୋକ୍ତ ଅଷ୍ଟକ ବ୍ୟତୀତ ସେ ଭଗବତୀ ଶତକ ମଧ୍ୟ ସରଳ ସଂସ୍କୃତ ଭାଷାରେ ରଚନା କରିଥିଲେ । ଉଭୟ ଅଷ୍ଟକ ଶତକ କବିଙ୍କ ବଂଶଧର ମାନଙ୍କ ନିକଟରେ ଅପ୍ରକାଶିତ ଅବସ୍ଥାରେ ପଡ଼ିରହିଛି ।

## ନାରୀ କବି ରାଧାରାଣୀ

ରାଧାରାଣୀ ରାଜା ରାମଚନ୍ଦ୍ର ସିଂହଙ୍କ ଗୁରୁଦେବ ସ୍ୱର୍ଗୀୟ ନରସିଂହ ମିଶ୍ରଙ୍କ ଦୁହିତା । ନରସିଂହଙ୍କ ଅଷ୍ଟାଦଶ ଶତାବ୍ଦୀର ଧରାକୋଟର ଜଣେ ଅଦ୍ୱିତୀୟ ଦାର୍ଶନିକ ଓ ସକଳ ଶାସ୍ତ୍ରଜ୍ଞ ପଣ୍ଡିତ ଥିଲେ । ତାଙ୍କର ବାସସ୍ଥାନ ଋଷିକୁଲ୍ୟା ନଦୀର ଉତ୍ତର ତୀରରେ ଅବସ୍ଥିତ ରାମଚନ୍ଦ୍ରପୁର ଶାସନରେ ଅବସ୍ଥିତ ଥିଲା । ତାଙ୍କର ଏକମାତ୍ର କନ୍ୟା ନାମ "ରାଧା" ବାଲ୍ୟବିଧବା ହୋଇ ଆଜୀବନ ପିତୃଗୃହରେ କଟାଇଥିଲେ । ସେ ନିଜ ପିତାଙ୍କଠାରୁ ଓଡ଼ିଆ ଓ ସଂସ୍କୃତ ଶିକ୍ଷା ଲଭି କରି ଉଭୟ ଭାଷାରେ ଦକ୍ଷତା ହାସଲ କରିଥିଲେ । ଏହି ବଦୂଷୀଲଳନା ସାରା ଜୀବନ ସାରସ୍ୱତ ସାଧନାରେ ନିଯୁକ୍ତ ରହି ଓଡ଼ିଆରେ

ବହୁ ଚଉତିଶା, ଚଉପଦୀ, ଗୀତ, ବୋଲି ଓ ସଂସ୍କୃତ ଶ୍ଳୋକ ରଚନା କରିଛନ୍ତି । ଏହି ଅପ୍ରକାଶିତ ଶ୍ଳୋକ ଚଉତିଶା ପ୍ରଭୃତି ଧର୍ମକୋଟରେ ବୟୋବୃଦ୍ଧ ଲୋକଙ୍କ ମୁଖରୁ ଶୁଣିବାକୁ ମିଳେ । ତାଙ୍କ ରଚିତ ଗୋଟିଏ ଶ୍ଳେଷାର୍ଥ ବୋଧକ ସଂସ୍କୃତ ଶ୍ଳୋକରୁ ତାଙ୍କ ନାରୀ ଚିତ୍ତ ଓ ଅନ୍ତରର ବୈଧବ୍ୟ ଜନିତ ସମସ୍ୟାର ଏକ ସୁନ୍ଦର ଚିତ୍ର ମିଳେ ।

କାଳେ ତଡ଼ିତ୍‌ଲତା ଜାଳେ ଘନ ଚୀନ ପଯୋ ଧରେ
କାନ୍ତ ସର୍ବଗୁଣୋ ପେତୋ ବାଳେନ୍ଦୁ ଖେ ନଲଭ୍ୟତେ ।

ଏହି ବହୁଶୀଳଜନାଙ୍କ ଅନ୍ୟ ଏକ ସୁନ୍ଦର ନୀତି ଗର୍ଭକ ଶ୍ଳୋକ ନିମ୍ନରେ ଦିଆଗଲା ।

ପାତକ ପ୍ରକରବହ୍ନି ମମ ଭୂୟଃ—ପୁଣ୍ୟ ପୁଞ୍ଜାମପି ନାଥଲୁନୀହି
କାନକା ବତଲୌହ ମୟୀବା—ଶୃଙ୍ଖଳା ଯନ୍ଧ ପଦେ କ୍ୱ ବିଶେଷଃ ।

ଏହି ଲେଖିକା ରାଜେନ୍ଦ୍ରପୁର ଶାସନରେ ବିବାହ କରିଥିଲେ । ଏଣୁ ରାମଚନ୍ଦ୍ରପୁର ଶାସନର ଏକ ଦୃଢ଼ୀଭୂତ ପଥରବନ୍ଧ (ରକ୍ଷିକୁଲ୍ୟା) ନଦୀତୋଟକୁ ତାଙ୍କ ବଂଶଧର ୯ ଭୁବନେଶ୍ୱର କବିବାଲ୍ଲଭ "ରାଧାନାଥ ଘାଟ" ନାମରେ ନାମିତ କରିଛନ୍ତି ।

ହେ ପ୍ରଭୁ ! ମୋର ପାପ ସମୂହ ବିନାଶ କରିବା ସଙ୍ଗେ ସଙ୍ଗେ ପୁଣ୍ୟ ସମୂହକୁ ମଧ୍ୟ ଲୀନ କରିଦିଅନ୍ତୁ । ଯେହେତୁ ଲୁହାର ହେଉ କିମ୍ବା ସୁନାର ଶିକୁଳି ହେଉ ଉଭୟ ବନ୍ଧନର କାମକରେ । ଏଣୁ ଉଭୟ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଉଭୟ ଶିକୁଳି ଯେପରି ପାଦକୁ ବନ୍ଧନ କରିବା ପାଇଁ କ୍ଷମ ସେହିପରି ଏ ସଂସାରର ବନ୍ଧନ ପାଇଁ ପାପ ଓ ପୁଣ୍ୟ—ଉଭୟ ସମାନ—ମଣିଷର ଚରମଲକ୍ଷ ଏ ସଂସାରର ବାହାରକୁ ଯିବା । ଏଣୁ ଭଲ ଓ ମନ୍ଦ ଏ ଉଭୟକୁ ତ୍ୟାଗକଲେ ମଣିଷ ତାର ଲକ୍ଷସ୍ଥଳ ଅର୍ଥାତ୍ ସ୍ୱ ପ୍ରଦେଶକୁ ଯାଇପାରିବ ।

ସେ ବାଳ ବିଧବା ଥିଲେ । ଏଣୁ ସ୍ୱାମୀଙ୍କର ମୃତ୍ୟୁ ବିଚ୍ଛେଦ ଜନିତ ଦୁଃଖରାଶିକୁ ଉପେକ୍ଷା କରି ସଂସ୍କୃତରେ ବହୁ ଶ୍ଳୋକ ରଚନା କରିବା ସଙ୍ଗେ ସଙ୍ଗେ ବହୁ ଦେବଦେବୀଙ୍କଠାରେ ନିଜର ଦୁଃଖ ଜଣାଇ ବହୁ ଭଜନ ଓ ଜଣାଣ ରଚନା କରି ଓଡ଼ିଆ ସାହିତ୍ୟକୁ ବୃଦ୍ଧିମନ୍ତ କରିପାରିଛନ୍ତି । ସେ ଅତି ମଧୁର ଓ ବିଷାଦଭରା କଣ୍ଠରେ ଦେବୀଙ୍କ ନାମ ଓ ଭଜନ ଆବୃତ୍ତିକରି ଏହି ଦୁଃଖ ପୂର୍ଣ୍ଣ ସଂସାର ସାଗରରୁ ତାଙ୍କୁ ନିସ୍ତାର କରିବା ପାଇଁ କାତର କରୁଣ ନିବେଦନ କରିଛନ୍ତି ତାର ଦୁଇଟି ପଦ ପାଠକମାନଙ୍କ ପାଇଁ ଉଦାହୃତ ହେଲା ।

ନନ୍ଦନ ବିନା ଅଗ୍ନି ହୃଦୟ ଦହେ—ଯାହାବେଦନା ତହିଁ ଘୃତ ପରିଏ
ମାଗୋ ! ନାହିଁଟି ସାହା
ନିରକ୍ଷଜନ ସାହା ଦେବୀ ଅଭୟା
ଠାବ ନାହିଁଟି ଆଉ ଏହି ଜଗତେ – ିକି ମୁଖୀ ମୁଁ ଏହା କହିଲି ଗୀତେ
ମାଗୋ ଠଣି ଶରଣ
ିକେ ରାଧିକା ତହିଁ ପଶେ ଶରଣ

## ରାଜା ଜଗନ୍ନାଥ ସିଂହ ( ୧୭୯୮—୧୮୩୦ ଖ୍ରୀ )

ରାଜା କୃଷ୍ଣସିଂହଙ୍କ ମୃତ୍ୟୁ ପରେ ତାଙ୍କର ଜ୍ୟେଷ୍ଠ ପୁତ୍ର ଜଗନ୍ନାଥ-ସିଂହ ନାବାଳକ ଥିବା ହେତୁ ରାଜ୍ୟ ପ୍ରାୟ ନଅବର୍ଷ ( ୧୭୮୯ ୧୭୯୭ଖ୍ରୀ ) ସରକାରଙ୍କ ପରିଚାଳନାଧୀନରେ ରହିଲା । ସେ ଅଷ୍ଟାଦଶ ଶତାବ୍ଦୀର ସପ୍ତଦଶକର ଶେଷ ଭାଗରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ନାବାଳକତ୍ୱ ଅତିକ୍ରମ ହେବାପରେ ସରକାର ତାଙ୍କୁ ରାଜ୍ୟ ଭାର ୧୭୯୮ ଖ୍ରୀଷ୍ଟାବ୍ଦରେ ଅର୍ପଣ କରିଥିଲେ । ସେ ଦୀର୍ଘ ୩୩ ବର୍ଷ ରାଜତ୍ୱ କରି ୧୮୩୦ ଖ୍ରୀଷ୍ଟାବ୍ଦରେ ଇହଧାମ ତ୍ୟାଗ କରିଥିଲେ । ସେ ଦେବତା ଓ ବ୍ରାହ୍ମଣମାନଙ୍କ ପରମ ଭକ୍ତ ଥିଲେ । ଏଣୁ ବହୁଗୋଟି ବ୍ରାହ୍ମଣ ଶାସନ ନିଜ ନାମରେ ପ୍ରତିଷ୍ଠା କରିଥିଲେ ।

ସେଥିରୁ ପଦ୍ମପୁର ନିକଟସ୍ଥ ଜଗନ୍ନାଥପୁର ଓ ସାହସପୁର ନିକଟସ୍ଥ ବ୍ରାହ୍ମଣ-ବଗଡ଼ ଜଗନ୍ନାଥପୁର ବୈଦିକ ବ୍ରାହ୍ମଣମାନଙ୍କୁ ଦାନ କରାଯାଇଥିଲା । ଏହି ଶାସନ ଦାନ କରି ପଦ୍ମପୁର ଜଗନ୍ନାଥପୁର ବ୍ରାହ୍ମଣମାନଙ୍କ ଭରଣ ପୋଷଣ ପାଇଁ ୧୦୬୦ ଭରଣ ଭୂମି ଏକଠକଡ ଦାନ କରିଥିଲେ । ସାହସପୁର ନିକଟସ୍ଥ ଜଗନ୍ନାଥପୁରକୁ ମଧ୍ୟ ଏକହଜାର ଭରଣ ଭୂମି ଦାନ କରିଥିଲେ । କିନ୍ତୁ କେତେକ ଅନିବାର୍ଯ୍ୟ କାରଣ ଯୋଗୁଁ ବ୍ରାହ୍ମଣ ବଗଡ ଶାସନ ଲୋପ ପାଇଛି । କିନ୍ତୁ ଗ୍ରାମର ଗ୍ରାମଦେବତା ଅଦ୍ୟାପି ସେଠାରେ ପୂଜା ପାଉଛନ୍ତି ଓ ଗ୍ରାମର ଧ୍ୱଂସାବଶେଷ ସେଠାରୁ ମିଳୁଛି ।

ଉପରୋକ୍ତ ଶାସନ ଛଡ଼ା ସେ ଅନ୍ୟ ଦୁଇଗୋଟି ଶାସନ ଯାଜପୁରରୁ ପାଠିଆ ବ୍ରାହ୍ମଣମାନଙ୍କୁ ଅଣାଇ କମାଗଡ଼ ନିକଟରେ ଜଗନ୍ନାଥ-ପୁର ନାମରେ ଏକ ଶାସନ ଦାନ କରି ଅସୁରେଶ୍ୱରପଲ୍ଲୀରେ ୫୦୦ ଭରଣ ଭୂମି ଦାନ କରିଥିଲେ ଓ ଅନ୍ୟ ଗୋଟିଏ ଶାସନ ମୁଣ୍ଡପଡ଼ା ଗ୍ରାମ ନିକଟରେ ନିଜ ନାମରେ ଏକ ଶାସନ ବସାଇ ୫୦୦ ଭରଣଭୂମି ଗ୍ରାମ ନିକଟରେ ଦାନ କରିଥିଲେ ।

ତାଙ୍କର ପିତା କୃଷ୍ଣସିଂହଙ୍କ ଅମଳରେ ବର୍ତ୍ତମାନ ଧରାକୋଟ-ଗଡ଼ରେ ଦେଖାଯାଉଥିବା ଶ୍ରୀଜଗନ୍ନାଥଙ୍କ ବିମାନ ବା ମୁଖ୍ୟ ମନ୍ଦିରର ନିର୍ମାଣ କାମ ଆରମ୍ଭ ହୋଇଥିଲା । ରାଜା ଜଗନ୍ନାଥ ସିଂହ ଉକ୍ତ ବିମାନ ମନ୍ଦିରର ଅପୂର୍ଣ୍ଣ କାମକୁ ସମ୍ପୂର୍ଣ୍ଣ କରି ତିନି ବିଗ୍ରହଙ୍କୁ ମନ୍ଦିରରେ ବିଜେ କରାଇଥିଲେ ଓ ଜଗନ୍ନାଥଙ୍କ ସ୍ନାନ ମଣ୍ଡପର କାମ ମଧ୍ୟ ଆରମ୍ଭ କରିଥିଲେ । କୃଷ୍ଣକାନନ ନିକଟରେ ଆଡ଼ପ ମନ୍ଦିର ତାଙ୍କର ଦ୍ୱାରା ନିର୍ମିତ ହୋଇଥିଲା ।

ସେ ଅତ୍ୟନ୍ତ ସାହିତ୍ୟ ଓ କଳାପ୍ରେମୀ ଥିଲେ । ସେ ସୁଯୋଗ୍ୟ କବି ଓ ପଣ୍ଡିତ ମାନଙ୍କୁ ସମ୍ମାନ ଓ ଗ୍ରାସାଚ୍ଛାଦନ ଦାନ ପୂର୍ବକ ସର୍ବଦା ନିଜ

ନିକଟରେ ରଖିଥିଲେ । ରାଜାଙ୍କ ଏତାଦୃଶ ଉଦାରତା ଦେଖି ଯେଉଁ ସାହିତ୍ୟ ପ୍ରେମୀ ଲେଖକ ଓ ପଣ୍ଡିତ ଓଡ଼ିଆରେ ବହୁ ପୁରାଣ, ଗ୍ରନ୍ଥ, କବିତା, ସଂସ୍କୃତ କାବ୍ୟ ଓ ଶ୍ଳୋକ ରଚନା କରିବାରେ ସମର୍ଥ ହୋଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଧରାକୋଟର କୃଷ୍ଣଚରଣ ପଟ୍ଟନାୟକ, ମଙ୍ଗଳପୁରର ଶ୍ୟାମ କବି, ରାଜେନ୍ଦ୍ରପୁରର ପୀତାମ୍ବର ବିଦ୍ୟାଭୂଷଣ ଓ ଲକ୍ଷ୍ମଣାପରିଣୟ କୋକିଳଦୂତ ଓ ସଂସ୍କୃତରେ ନୃସିଂହ ଶତକର ଲେଖକ ଗଙ୍ଗାଧର – ରାଜଗୁରୁ ।

## କବି କୃଷ୍ଣଚରଣ ପଟ୍ଟନାୟକ

କବି କୃଷ୍ଣଚରଣ ପଟ୍ଟନାୟକ ଗଙ୍ଗାଧର ଶ୍ରୀକରଣ ପଟ୍ଟନାୟକଙ୍କ ଔରସରେ ୧୭୭୪ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । କବିଙ୍କ ପିତା– ରାଜକବି କୃଷ୍ଣସିଂହଙ୍କ ସମ ସାମୟିକ ଥିଲେ ଓ ସେ କିଛି ସମୟ ମଞ୍ଜୁଷାରେ ଦେବାନ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । କବିଙ୍କ ବାଲ୍ୟଶିକ୍ଷା ଧରାକୋଟର ଜଣେ ଗୃହଶାଳୀ ଅବଧାନଙ୍କ ନିକଟରେ ହୋଇଥିଲା । ପ୍ରାଥମିକ ଶିକ୍ଷାପରେ ସେ ରାଜେନ୍ଦ୍ରପୁରଶାସନ ନିବାସୀ ଦ୍ୱିଗ୍ୱିଜୟୀ ଗୋଟେର ରାଜଗୁରୁଙ୍କ ଅଧୀନରେ ରହି ସଂସ୍କୃତ ଶିକ୍ଷା କରିଥିଲେ ।

କୃଷ୍ଣଚରଣ ଦେଖିବାକୁ ଅତ୍ୟନ୍ତ କୃଷ୍ଣକାୟ ଥିଲେ । ଆଜୀବନ ସୁସ୍ଥ ଜୀବନ ଯାପନ କରି ୯୬ ବର୍ଷ ବୟସରେ ୧୮୬୦ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗାରୋହଣ କରିଥିବା ତାଙ୍କ ବଂଶଧର ମାନଙ୍କ ଠାରୁ ଜଣାଯାଏ । କବି କୃଷ୍ଣସିଂହ ଓ କୃଷ୍ଣଚରଣଙ୍କ ଜୀବନୀ ଆଲୋଚନା କରି ଓଡ଼ିଆ ପୂର୍ଣ୍ଣଚନ୍ଦ୍ର ଭାଷା କୋଷାକାର ଓ ଉତ୍କଳ ପ୍ରତିଭାର ଲେଖକ କବି କୃଷ୍ଣଚରଣ କୃଷ୍ଣସିଂହଙ୍କ ସମସାମୟିକ ଥିଲେ ଓ ତାଙ୍କୁ ମହାଭାରତ ଲେଖାରେ ସାହାଯ୍ୟ କରିଥିଲେ ବୋଲି ଯାହା ଉଲ୍ଲେଖ କରିଛନ୍ତି ତାହା ସମ୍ପୂର୍ଣ୍ଣ ଭୁଲ ବୋଲି ମନେ ହୁଏ । ଉଭୟ କବିଙ୍କ

ଗ୍ରନ୍ଥ ଆଲୋଚନା କଲେ ଜଣାଯାଏ ଯେ କୃଷ୍ଣସିଂହଙ୍କ ରାଜତ୍ୱ ବେଳକୁ କୃଷ୍ଣଚରଣଙ୍କୁ ମାତ୍ର ୮ ବର୍ଷ ଓ ମହାଭାରତ ରଚନା ଶେଷ ବେଳକୁ କବିଙ୍କୁ ୧୪ ବର୍ଷ ମାତ୍ର ହୋଇଥିଲା । ଏଣୁ କବି କୃଷ୍ଣସିଂହଙ୍କର ନୌକର ନଥିଲେ କିମ୍ବା ମହାଭାରତ ରଚନାରେ ସାହାଯ୍ୟ କରିନଥିଲେ ।

କବି ତାଙ୍କର ଶିକ୍ଷା ଗୁରୁଙ୍କ ସାହଚର୍ଯ୍ୟରେ ବହୁ ସଂସ୍କୃତ ଓ ଓଡ଼ିଆ ଗ୍ରନ୍ଥ ଅଧ୍ୟୟନ କରି ଉଭୟ ଭାଷାରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । କବି ୨୫ ବର୍ଷ ବୟସରେ ବିବାହ କରିଥିଲେ ଓ ତାଙ୍କର ସହଧର୍ମିଣୀ ମଧ୍ୟ ଅତି ଲ ବିଦୁଷୀ ଥିବା କଥା ତାଙ୍କ ବଂଶଧର ମାନଙ୍କ ମୁଖରୁ ଜଣାଯାଏ ।

କବିଙ୍କର ବୈଷ୍ଣବ ଧର୍ମ ପ୍ରତି ପ୍ରଗାଢ଼ ନିଷ୍ଠା ଥିଲା ମଧ୍ୟ ସେ ଅଷ୍ଟ ଧାତୁ ନିର୍ମିତ ଏକ ଦୁର୍ଗାମୂର୍ତ୍ତିଙ୍କ ଆରାଧନାରେ କିଛି ସମୟ ବ୍ୟୟ କରୁଥିଲେ । ଦେବୀଙ୍କ ଅପାର କରୁଣାରୁ ଓ ଶ୍ରୀ ସରସ୍ୱତୀଙ୍କ ଆଶୀର୍ବାଦରୁ ତାଙ୍କର କବିତ୍ୱ ଶକ୍ତିର ସ୍ଫୁରଣ ହୋଇଥିଲା । ଏଣୁ ମର୍ଯ୍ୟାଦାବନ୍ତ ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କୁ ନିଜ ଶ୍ରୀମଦ୍ଭାଗବତର ପ୍ରଥମ ସ୍କନ୍ଧ ପ୍ରଥମ ସର୍ଗରେ ବନ୍ଦନା କରିବା ସଙ୍ଗେ ସଙ୍ଗେ ମା ଭାରତୀ ସରସ୍ୱତୀଙ୍କୁ ବନ୍ଦନା କରିବାକୁ ଭୁଲି ନାହାଁନ୍ତି ।

ଭଗବତୀ ଶ୍ରୀମତୀ ଭାରତୀ ଦେବୀ ପଦେ
ଏ ବାହାରେ ବନ୍ଦନା କରୁଛି ଅପ୍ରମାଦେ ।

କବିଙ୍କର ଧନରତ୍ନ ଆହରଣ କରି ଏକ ବିଳାସ ବୃଦ୍ଧକ୍ୟମୟ ଜୀବନ ଯାପନ କରିବା ଉଦ୍ଦେଶ୍ୟ ନଥିଲା । ସେ ଆଜୀବନ ବାଣୀ ଆରାଧନାରେ ନିଜର ସମସ୍ତ ସମୟ ବିତାଉଥିଲେ । କିନ୍ତୁ ପରିବାରର ଭରଣ ପୋଷଣ ପାଇଁ ଅର୍ଥାଭାବ ହେତୁ ତାଙ୍କର ପୃଷ୍ଠପୋଷକ, ଗୁଣଗ୍ରାହୀ ରାଜା ଜଗନ୍ନାଥ ସିଂହଙ୍କ ରାଜତ୍ୱ ସମୟରେ ରାଜାଙ୍କର ସାମାନ୍ୟ କର୍ମଚାରୀ ରୂପରେ

ନିଯୁକ୍ତି ଲାଭ କରିଥିଲେ । କିଛିକାଳ ବିକଶି ପରେ ଜଗନ୍ନାଥସିଂହଙ୍କ ସହିତ ତାଙ୍କର ମନୋମାଳିନ୍ୟ ହେତୁ ସେ ସପରିବାର ବଡ଼ଗଡ଼ ରାଜ୍ୟକୁ ବାହାରି ଯାଇଥିଲେ । ସେଠାରେ ବଡ଼ଗଡ଼ ରାଜା ତାଙ୍କ ବଦାନ୍ୟତା ଓ ଗୁଣରେ ମୁଗ୍ଧ ହୋଇ ତାଙ୍କୁ ଆଗ୍ରହରେ ଆଶ୍ରୟଦାନ କରିଥିଲେ । ବଡ଼ଗଡ଼ ରାଜାଙ୍କ ଆଶ୍ରୟରେ ଥିବା ସମୟରେ ଧରାକୋଟ ରାଜା ଜଗନ୍ନାଥସିଂହଙ୍କର ତାଙ୍କ ପ୍ରତି ପୁଣି ଅନୁକମ୍ପା ଜାତ ହେଲା । ଏଣୁ ରାଜା ନିଜ ପଣ୍ଡିତ ମଣ୍ତ୍ରୀଙ୍କ ଅନୁରୋଧ କ୍ରମେ କୃଷ୍ଣଚରଣଙ୍କୁ ପୁଣି ରାଜକାର୍ଯ୍ୟରେ ନିଯୁକ୍ତ କଲେ । ଏଠାରେ ସେ ସ୍ୱ ହୃଦୟ ନିହିତ ପ୍ରତିଭାର ମଧୁର ଆହ୍ୱାନରେ ମା ବୀଣାପାଣିଙ୍କ ଆରାଧନାରେ ମନ ପ୍ରାଣ ଢାଳିଦେଲେ । ସେ କହିଛନ୍ତି—

> ବସିଥିଲି ବୋଲି ଆରମ୍ଭିଲି ଗୀତ
> ସାଧୁଜନେ ଏଥିକି କର ଦୟା ଚିତ୍ତ ।
>
> ( ଆଦିକାଣ୍ଡ )

କବିଙ୍କ ଅବସ୍ଥା ସ୍ୱଚ୍ଛଳ ନଥିଲେ ମଧ୍ୟ ପରିବାର ଭିତରେ ପତ୍ନୀ ଓ ପୁତ୍ରଙ୍କ ପ୍ରତି ତାଙ୍କର ଯେଉଁ ଅନାବିଳ ପ୍ରେମ ଓ ବାତ୍ସଲ୍ୟ ଭାବ ଥିଲା ସେଥି-ଯୋଗୁଁ ତାଙ୍କର ଗାର୍ହସ୍ଥ୍ୟ ଜୀବନ ଅତ୍ୟନ୍ତ ମଧୁମୟ ଥିଲା । କବି ତାଙ୍କ ଗ୍ରନ୍ଥରେ ଏ ବିଷୟ ବହୁବାର ଉଲ୍ଲେଖ କରିଛନ୍ତି ।

> ପୀରତି ଲତା ନାରୀ ସୁରତି ଫଳ ପାଇ
> ନିରତେ ମୋର ମତି ହେଉଅଛି ବାଇ
> ସୁତପାରେ ମୋହିତ ହୋଇ ଚିତ୍ତ ମୋର
> ରହିଅଛି ସ୍ନେହରେ ଜାଣ ହେ ରାଧାବର ।

କବି କିଛିକାଳ ବିଷ୍ଣୁଙ୍କ ଆଦର୍ଶ ଗାର୍ହସ୍ଥ୍ୟ ଜୀବନଯାପନ ପରେ ତାଙ୍କର ସାଂସାରିକ ଜଞ୍ଜାଳରେ ଲିପ୍ତ ରହିବାକୁ ଆଉ ମନ ବଳିଲା ନାହିଁ । ପରିଣତ ବୟସରେ ବିଷୟ ଜାଲରୁ ନିଜକୁ ମୁକ୍ତ ରଖିବାକୁ ଚେଷ୍ଟା କରିଥିଲେ କିନ୍ତୁ ଜୀବନରେ ଶେଷ ପର୍ଯ୍ୟନ୍ତ ତାହା ରକ୍ଷାକର ନପାରି କାତର କଣ୍ଠରେ ପ୍ରାର୍ଥନା କରିଛନ୍ତି ।

ମୁଁ ତ ମହାପାତକୀ ଅଟଇ ଆହେ ହରି
ଆଚରି ହୀନ କର୍ମ ଦିନକୁ ଦିଏ ସାରି
ବିଷୟ ବାଲି ପଡ଼ି ମୋର ଆଖି ଅନ୍ଧ
ହୋଇଛି ତେଣୁ ଜାଣି ନପାରେ ଭଲମନ୍ଦ
ଆପଣଙ୍କ ରଚନ କରୁଣା ଅଞ୍ଜନ
ଲଗିଲେ ଏକାଦୃଶ୍ୟ ହେବ ହେ ଭଗବାନ (ସୁନ୍ଦରାକାଣ୍ଡ)

କବି ତାଙ୍କର ବଳିଷ୍ଠ ଲେଖମୀ ଚାଳନା କରି ସଂସ୍କୃତ ବାଲ୍ମୀକି ରାମାୟଣକୁ ଓଡ଼ିଆରେ ଅନୁବାଦ କରିଥିଲେ । ଏହା ବ୍ୟତୀତ ସେ କଳ୍କି-ପୁରାଣ, ବାମନ ପୁରାଣ ଓ ଶ୍ରୀମଦ୍ ଭାଗବତକୁ ମଧ୍ୟ ଅନୁବାଦ କରିଥିଲେ । ରାମାୟଣ ଗ୍ରନ୍ଥ ଅନୁବାଦ କରିବାକୁ କବିଙ୍କୁ ଦୁଇବର୍ଷ ସମୟ ଲାଗିଥିଲା । କବି ଉତ୍ତରାକାଣ୍ଡରେ କହିଛନ୍ତି ।

ସେ କାଳକୁ ଗଣିକ ଗଣନେ ସତରଶ
ଅଷ୍ଟତ୍ରିଂଶ ବୋଲି ହୋଇଥିଲା ଶେଷ ।

ଉପରୋକ୍ତ ରଚନାରୁ ଜଣାଯାଏ ସେ ୧୭୩୮ ଶକାବ୍ଦ ବା ୧୮୧୬ ଖ୍ରୀଷ୍ଟାବ୍ଦରେ ଗ୍ରନ୍ଥ ରଚନା ସମାପ୍ତ କରିଥିଲେ । ରାମାୟଣ ପରେ କବି କଳ୍କି-ପୁରାଣ ଅନୁବାଦ କରିଥିବା ବିଷୟ ତାଙ୍କ ପୁରାଣ ଶେଷ ଲେଖାରୁ ଜଣାଯାଏ ।

ଏକାଳକୁ ଗଣକ ଗଣନେ ସତରଶ
ଏକୋତ୍ତୋଷ୍ଟ ଶକାବ୍ଦ ହୋଇଥିଲି ଶେଷ ।

ଏହି ସମୟକୁ ୧୭୬୧ ଶକାବ୍ଦ ବା ୧୮୪୯ ଖ୍ରୀଷ୍ଟାବ୍ଦ ହୋଇଥିଲା । କଲ୍କି ପୁରାଣ ପରେ କବି ବାମନ ପୁରାଣ ଓ ପରିଶେଷରେ ଶ୍ରୀମାଦ୍ଭାଗବତର ଅନୁବାଦ କରିଥିଲେ । ଭାଗବତ ଶେଷରେ କବି ଉଲ୍ଲେଖ କରିଛନ୍ତି ।

ଏକାଳକୁ ଗଣକ ଗଣନେ ସତରଶ
ନବତି ଶକାବ୍ଦ ହୋଇଥିଲି ଶେଷ ।

ଏହା ୧୭୯୦ ଶକାବ୍ଦ ବା ୧୮୬୮ ଖ୍ରୀଷ୍ଟାବ୍ଦରେ ଶେଷ ହୋଇ-ଥିଲା । ଉକ୍ତ ଗ୍ରନ୍ଥଟି ରଚନା କରିବାର ଦୁଇବର୍ଷ ପରେ କବି ଦେହ ତ୍ୟାଗ କରିଥିବା ବିଷୟ କବିଙ୍କ ବଂଶଧର ମାନଙ୍କ ମୁଖରୁ ଜଣାଯାଏ । ଉପରୋକ୍ତ ତିନିଗୋଟି ଗ୍ରନ୍ଥରୁ ରାମାୟଣ ସର୍ବପ୍ରଥମେ ୧୯୨୮ ଖ୍ରୀଷ୍ଟାବ୍ଦରେ ସତ୍ୟବାଦୀ-ପ୍ରେସରେ ମୁଦ୍ରିତ ହୋଇଥିଲା । କବିଙ୍କ ଶେଷ ରଚନା ଭାଗବତ ବହୁକାଳ ହେଲା ଅପ୍ରକାଶିତ ଅବସ୍ଥାରେ ପଡ଼ି ରହିଥିଲା । ୧୯୩୮ ଖ୍ରୀଷ୍ଟାବ୍ଦରେ ଧରାକୋଟଗଡ଼ ନିବାସୀ ୰ ଉଦୟନାଥ ନାୟକଙ୍କ ଆପ୍ରାଣ ଉଦ୍ୟମରୁ ପ୍ରଥମ ସ୍କନ୍ଦରୁ ଦଶମ ସ୍କନ୍ଦ ଯାଏ ମୁଦ୍ରିତ ଆକାରରେ ପ୍ରକାଶ ପାଇଲା । ଶ୍ରୀ ନାୟକ ଗଞ୍ଜାମ ଜିଲ୍ଲା ବୋର୍ଡ଼ ପରିଚାଳିତ ହାଇସ୍କୁଲରେ କଳାଶିକ୍ଷକ ରୂପେ ଶିକ୍ଷକତା କରୁଥିବା ସମୟରେ ଜନସାଧାରଣଙ୍କ ଠାରୁ ଅର୍ଥ ସଂଗ୍ରହ କରି ଏହାର ମୁଦ୍ରଣ ବ୍ୟୟ ଭାର ଗ୍ରହଣ କରି ୧୮୩୮ ଖ୍ରୀରୁ ୧୯୪୨ ଖ୍ରୀ ମଧ୍ୟରେ ଏହି ଗ୍ରନ୍ଥ ପ୍ରକାଶ କରିବାକୁ ସମର୍ଥ ହୋଇଥିଲେ ।

ଅନ୍ୟ ଦୁଇଟି ଗ୍ରନ୍ଥ କଲ୍କି ପୁରାଣ ଓ ବାମନ ପୁରାଣର ତାଳପତ୍ର ଲିଖିତ ବହି ଗୁଡ଼ିକ କବିଙ୍କ ଘରେ ଯତ୍ନରେ ରଖାଯାଇଥିଲା । କିନ୍ତୁ କବିଙ୍କ ଘରପୋଡ଼ି ବେଳେ ତାହା ସମ୍ପୂର୍ଣ୍ଣ ଭାବେ ନଷ୍ଟ ହୋଇଗଲା । ଘରପୋଡି

ପୂର୍ବରୁ ଅଳ୍ପ କେତେକ ଜଣ ବ୍ୟକ୍ତି ତାଙ୍କ ବହିରୁ ଗ୍ରନ୍ଥ ଦୁଇଟିର ଲେଖା ଲେଖାଇ ନେଇ ଥିବାରୁ କୌଣସି କୌଣସି ବ୍ୟକ୍ତିଙ୍କ ନିକଟରେ ତାହା ମିଳେ ।

କୃଷ୍ଣଚରଣ କୃଷ୍ଣସିଂହଙ୍କ ପରବର୍ତ୍ତୀ କବି ହୋଇଥିବା ହେତୁ କୃଷ୍ଣସିଂହଙ୍କ ଲେଖାର ପ୍ରଭାବ କୃଷ୍ଣଚରଣଙ୍କ ଉପରେ ପଡିଥିବା ତାଙ୍କ ଗ୍ରନ୍ଥରୁ ଜଣାଯାଏ । ଉଭୟଙ୍କ ଭାଷା, ଛନ୍ଦ ଓ ଲିଖନ ପ୍ରଣାଳୀ ଭିତରେ ବିଶେଷ ସାମଞ୍ଜସ୍ୟ ଥିବା ଦେଖାଯାଏ । କୃଷ୍ଣସିଂହଙ୍କ ଛନ୍ଦ ପରି କୃଷ୍ଣ-ଚରଣଙ୍କ ଛନ୍ଦରେ ଅଧିକାଂଶ ସ୍ଥଳରେ କୌଣସି ଅକ୍ଷର ନିୟମ ନାହିଁ । କେବଳ ଶେଷାକ୍ଷରର ମିଳନ ବ୍ୟତୀତ ଅନ୍ୟ କୌଣସି ନିୟମ ମାନ ନାହିଁ । ନିମ୍ନଲିଖିତ ଦୃଷ୍ଟାନ୍ତରୁ ତାହା ସ୍ପଷ୍ଟ ଜଣାଯାଏ ।

ସେ ବାଣୀ ଯାକ ହୃଦକୁ କୁଠାର (୧୧)
ହୋଇ ହାଣି ଦେଲା ବିଳମ୍ବ କଲି ଦୂର (୧୩)

କେତେକ ସ୍ଥଳରେ ନିୟମ ଲଂଘନ ସତ୍ତ୍ୱେ ଅଧିକାଂଶ ପଦ ଭିତର ଅକ୍ଷର ବିଶିଷ୍ଟ, ଭାବ ଓ ଭାଷାରେ ଉଭୟ କବିଙ୍କ ଲେଖାରେ କିପରି ସାଦୃଶ୍ୟ ଦେଖାଯାଏ ନିମ୍ନୋକ୍ତ ଦୃଷ୍ଟାନ୍ତରୁ ଜଣାଯାଏ ।

କୃଷ୍ଣସିଂହ (କବି ପର୍ବ)—ଏକାନ୍ତ ତ ବନପର ଅଟଇ ଗହନ
କି ରୂପେ ଏଥି ପଶି ପାରିବ ମୋ ମନ

କୃ. ଚରଣ—(ଆରଣ୍ୟକ)—ଆରଣ୍ୟକ ପର୍ବତ ଅଟଇ ମହାରଣ୍ୟ
ତହିଁରେ ଗଳି ପାରିବ କି ମୋ ମନ

କୃ. ସିଂହ (ଆଦିପର୍ବ) – ଭୀତ ପାଣ୍ଡବାର ଦେଖିଣ ଝଟଝଟ
ହଲାଇ ମୁକୁଟକୁ ରଚିଲା କୁକ୍‌କୁଟ ।

କ. ଚରଣ (ବନପଦ)—କୁକ୍‌କୁଟ ମାନେ କର୍ଣ୍ଣ ତଟକୁ ହଲାଇ
ରଡିଲେ ରବ୍ବ ରବ୍ବ ମୁକୁଟ ହଲାଇ ।

କବିଙ୍କର ଭାଷା ଅତ୍ୟନ୍ତ ସରଳ, ସୁନ୍ଦର ଓ ସ୍ୱାଭାବିକ ଏହା ରାମାୟଣର ଲେଖାରୁ ଜଣାଯାଏ । କବିଙ୍କର ସଂସ୍କୃତ ଭାଷାରେ କିପରି ଅଗାଧ ପାଣ୍ଡିତ୍ୟ ଥିଲା ତାହା କଳଙ୍କି ପୁରାଣର କିଛି ପଂକ୍ତିରୁ ଜଣାଯାଏ ।

ମଧୁର ବଂଶୀଧାରୀ ଶ୍ରୀ ବୃନ୍ଦାବନ ବନ
ଗଗନ ବଧୂ ବଧୂ ନାମରେ ଶୋଭବନ
ଅଞ୍ଜନତମ ପୁଷ୍ପ ଗଞ୍ଜନ ଘନ ଗାତ୍ର
ରଞ୍ଜନ ଶତଦଳ ଦଳ ଚାରୁ ନେତ୍ର
ଭକତ ଭବ ବନ୍ଧୁ କରୁଣାମୟ ସିନ୍ଧୁ
କଳିହୃଦ କୁମୁଦକୁ ପୂର୍ଣ୍ଣଇନ୍ଦୁ

× × ×

କଳଙ୍କି ପୁରାଣକୁ ଭାଷାବନ୍ଧ ରୀତି
ରଚନା କରିବାକୁ ଭାବୁଅଛି ଚିତ୍ତେ ।

କବି ରାମାୟଣର ବିଷୟ ବସ୍ତୁକୁ ଅବିକଳ ଭାବେ ଅନୁବାଦ କରିଥିଲେହେଁ, ସ୍ଥାନେ ସ୍ଥାନେ ଆଶ୍ରମ ବର୍ଣ୍ଣନା, ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା ବେଳେ ତାଙ୍କର କଳ୍ପନା ଶକ୍ତିକୁ ସ୍ୱଚ୍ଛନ୍ଦ ଭାବେ ଖେଳାଇ ବର୍ଣ୍ଣନା ଗୁଡ଼ିକୁ ଅତ୍ୟନ୍ତ ପ୍ରାଞ୍ଜଳ, ଜୀବନ୍ତ ଓ ମନୋହର କରିପାରିଛନ୍ତି । ଶ୍ରୀମଦ୍ ବାଲ୍ମୀକି ରାମାୟଣରେ ବଶିଷ୍ଠାଶ୍ରମ ବର୍ଣ୍ଣନା ପ୍ରସଙ୍ଗରେ ବାଳ କାଣ୍ଡରେ ନିମ୍ନମତେ ବର୍ଣ୍ଣନା କରାଯାଇଛି ।

ବଶିଷ୍ଠସ୍ୟାଶ୍ରମ ପଦଂ ନାନା ପୁଷ୍ପଲତା ଦ୍ରୁମଂ
ନାନାମୃଗ ଗଣାକୀର୍ଣ୍ଣଂ ସିଦ୍ଧଚାରଣ ସେବିତଂ
ଦେବ ଦାନବ ଗନ୍ଧର୍ବୈଃ କିନ୍ନରୈ ରୂପ ଶୋଭିତଂ
ପ୍ରଶାନ୍ତ ହରିଣାକୀର୍ଣ୍ଣ ଦ୍ୱିଜ ସଂଘ ନିଷେବିତଂ

ଏହାର ଅନୁବାଦ ନିମ୍ନରେ ଦର୍ଶାଗଲା—

ଯେଉଁଣ ଆଶ୍ରମ ମଧ୍ୟେ ବୃକ୍ଷକୁଳ ରହି
ଫଳ କୁସୁମରେ ସଦାଛନ୍ତି ମଣ୍ଡିହୋଇ ।
ସେ କୁସୁମ ଚୟେ ମାନଙ୍କୁ ଯେ ମଧୁହାରୀ
ଆସୁଛନ୍ତି ପବନ ମାର୍ଗେ ଅନୁସରି ।
ତପସୀ ସକଳ ପତ୍ର ଗହ୍ୱରରେ ବସି
କରୁଥାନ୍ତି ଶ୍ରୁତି ପ୍ରୀତି ମିଷ୍ଟାକର ଭାଷି ।
ଶୁକ ସାରିକାମାନେ ଯେ ପଢି ହରି ହରି
ନେଉଛନ୍ତି ସାଧୁଜନଙ୍କ ମନହରି ।
ପୋଷିବାର ପରି ସେହୁ ମୃଗମାନେ ଆସି
ହୋଇଛନ୍ତି ଆଶ୍ରମ ପାଶରେ ହୋଇ ତୋଷି ।
ସିଦ୍ଧ ଚାରଣରେ ସେହୁ ହେବାରୁ ସେବିତ
ହୋଇଅଛି ଗନ୍ଧର୍ବ ଭୁବନ ପରିଖ୍ୟାତ ।

କବିଙ୍କ ବର୍ଣ୍ଣନା ଗୁଡିକ ଅତ୍ୟନ୍ତ ମନୋହର । ସୀତାଙ୍କର ବିବାହ କାଳୀନ ବେଶ ବର୍ଣ୍ଣନାରେ କବି ସୀତାଙ୍କୁ ମଲ୍ଲିକଢି, ଝଲକା, ତିଳଫୁଲ, କଳି, ନାକଚଣା, କସ୍ତୂରୀ ପ୍ରଭୃତି ଅଳଙ୍କାରରେ ବିଭୂଷିତ କରିଛନ୍ତି ଓ ବସନ ପରିଧାନରେ ଓଡିଆ ପରିପାଟୀକୁ ଅନୁସରଣ କରିଛନ୍ତି । ଏପରି

କେତେକ ବର୍ଣ୍ଣନାରେ ମୂଳଗ୍ରନ୍ଥର ବିଷୟ ବର୍ଜିତ ହୋଇଛି ଓ କେତେକ କାଳ୍ପନିକ ବିଷୟ ସନ୍ନିବେଶିତ ହୋଇଅଛି । ଏହି ରଚନା ଗୁଡ଼ିକ ସ୍ୱାଭାବିକ, ଭାବପୂର୍ଣ୍ଣ ଓ ଚିତ୍ତାକର୍ଷକ ହୋଇପାରିଛି । ମୂଳ ରାମାୟଣରେ କବି ବାଲ୍ମୀକି ସୀତାଙ୍କ ବେଶଭୂଷା ବର୍ଣ୍ଣନା କେବଳ ଗୋଟିଏ ଶ୍ଳୋକରେ ଉଲ୍ଲେଖ କରିଛନ୍ତି ।

ତତଃ ସୀତାଂ ସମାସଦ୍ୟ ସର୍ବାଭରଣ ଭୂଷିତାଂ
ସମକ୍ଷମଗ୍ନେଃ ସଂସ୍ଥାପ୍ୟ ରାଘବାଭି ମୁଖେତଦା ।

ଓଡ଼ିଆରେ କବିଙ୍କ ବର୍ଣ୍ଣନା—

ମଦନ ବା ମରକତ ବେଣିଟିକ ଆଣି
ରଖିଅଛି ରାମ-ମନ-ମୀନ ନେବା ଘେନି
ନୋହିଲେ ବା ମୁଖଚନ୍ଦ୍ର ତେଜ ଜାଣି ତମ
ଏକାଠାରେ ଗୋଟି ହୋଇଛି କରି ତମ
ଶ୍ରବଣ ତ ବନ୍ଧ ଆଉ ହୋଇଅଛି ବାମ
ଗମିଲେକ ମନ ବନ୍ଦୀ ନହେବ ତା ପ୍ରାଣ
ତାର ପରେ ରହିଲା ସେ ଝଳକା ଝଳକ
ଝଳକିବାରୁ ସେ ଦୂର କରିଲା ପଲକ
ହୀରକର ମଲ୍ଲୀକଢ଼ି ଅକାଳ ଶୋଭଇ
ରହିଲା ମହାସୁଖରେ ଦନ୍ତେ ସଖୀ ନେଇ
ମାଳମଣି ବସନ୍ତୀ ମାଣିକ ବିବିଗୁଣା
ଦେବାରୁ ସେ ସଖୀ ସୁଷମାରେ ହେଲା ଜଣା
କିବା ତିଳଫୁଲ ଉପରେ ସେ ମଧୁକର
ବସିଅଛି ଉତଫୁଲ୍ଲ କରି ମତ ତାର

× × ×

ଭ୍ରମରିକା ମକରିକା ଗୁଣ୍ଡିରେ ମକଷି
ଲେଖିଦେଲେ ସେହି ସଖୀମାନେ ପତ୍ର କରି
ଏଅନ୍ତରେ ଝୀନ ବସନକୁ କୁଞ୍ଚା ଦେଇ
ପିନ୍ଧାଇ ଦେଲେ ସଖୀ ମାନସ ରଞ୍ଜାଇ
କିଅବା ମନ୍ମଥରାଜ ନିଜ ରଥ ସାଜି
ଅଛି ସେ ଦିଗ ବିଜୟ କରିଯିବ ଆଜି

ଉଲ୍ଲିଖିତ ବର୍ଣ୍ଣନାରୁ ଜଣାଯାଏ କବି ସୀତାଙ୍କୁ ଜଣେ ଖାଣ୍ଟି ଓଡ଼ିଆଣୀ ବେଶରେ ଭୂଷିତ କରି ସ୍ୱଦେଶ ଓ ପର ପରମ୍ପରା ପ୍ରତି ଗଭୀର ଅନୁରାଗ ପ୍ରକାଶ କରି ନିଜର ଜାତୀୟ ଭାବ ଓ ଦେଶାତ୍ମବୋଧର ପରିଚୟ ଦେଇଛନ୍ତି ।

ସୀତାଙ୍କ ବିବାହ ସମୟରେ ଜନକ ରାଜାଙ୍କ ଦ୍ୱାରା ବିବାହ ମଣ୍ଡପ ମଣ୍ଡଣି ମୂଳ ରାମାୟଣରେ ବାଲ୍ମୀକି ଦୁଇଟି ମାତ୍ର ଶ୍ଳୋକରେ ବର୍ଣ୍ଣନା କରିଥିବା ସତ୍ତ୍ୱେ କବି ଉକ୍ତ ବିଷୟ ଦୁଇପୃଷ୍ଠା ବ୍ୟାପୀ ଅତ୍ୟନ୍ତ ମନୋଜ୍ଞ ଭାଷାରେ କିପରି କରିଛନ୍ତି ତାର କେତେକ ପଂକ୍ତି ଏଠାରେ ଉଦ୍ଧାର କରାଗଲା ।

ସେ ବେଦିକୁ ଯିବାକୁ ସେ ସ୍ୱଚ୍ଛ ମର୍କତରେ
ନିର୍ମିତ ହୋଇଅଛି ପାବଛ ମନୋହରେ
ତା ଉପରେ ପୁଞ୍ଜି ପୁଞ୍ଜି ହୋଇଣ ସେ ହୀରା
ମାଣିକ୍ୟାଦି ଦିଶିବାରୁ ଦିଶୁଅଛି ଚୋରା
କାଳନ୍ଦୀ ଜଳରେ ପଦ୍ମ ପୁଷ୍ପ ବିକଶିତ
ହେଲାପରି ଆନନ୍ଦିତ କରୁଅଛି ଚିତ୍ତ

ଏହି ସକାଶୁଟି ହଂସ ବଂଶମାନେ ଆସି
ବ୍ୟର୍ଥ ସ୍ନାନ କରନ୍ତ ଯେ ହୋଇ ସେ ଲାଳସୀ
ଖଣ୍ଡ ଦୂରୁ ଶିଖଣ୍ଡୀ ସକଳେ ବୃହିଁଦେଇ
ନାଚୁଛନ୍ତ ଘନର ଉଦୟ ବୋଲି ସେହି

ଏହି ପୂର୍ବଣର ସୁଦୀର୍ଘ ପରିସରରେ ନଦୀ, ପର୍ବତ, ପାହାଡ଼,ଜଙ୍ଗଲ ପ୍ରଭୃତି ପ୍ରାକୃତିକ ବସ୍ତୁ ସନ୍ଧ୍ୟା ଓ ପ୍ରଭାତ କାଳୀନ ବର୍ଣ୍ଣନାବଳୀ ଅବାରିତ ମନ୍ଦାକିନୀପରି ରସର ବନ୍ୟାରେ ଗ୍ରାହକ ଓ ରସିକର ପ୍ରାଣକୁ କିପରି ପ୍ଲାବିତ କରି ରସାଳ କରିଦିଏ, ତାହା ନିମ୍ନୋକ୍ତ ଉଦାହରଣରୁ ଜଣାଯାଏ ।

କିଅବା ସନ୍ଧ୍ୟା-ଅଙ୍ଗନାର ଅନୁରାଗ
ପରକାଶ ହୋଇଲା ହୃଦୟୁ ମଧ୍ୟଭାଗ
ନୋହିଲେ ଅଥବା ମାର ବୀର କ୍ରୋଧ ହୋଇ
ମାରିବାକୁ ବିରହୀ ନାରୀଙ୍କୁ ଯେ ଗ୍ରାସଇ
ଆପଣାର କର ଚନ୍ଦ୍ର ତୋର ଦେଇଛୁ
ପାଣି ଦେବ ପଶ୍ଚିମ ଜଳଧିରେ ଇଛି
ନୋହିଲେ ଅଥବା ଜବା କୁସୁମ ସ୍ତବକ
ସେ ଦିଗ ଅଙ୍ଗନା ଖୋସିଅଛି କି ମସ୍ତକ

× × ×

ଏକାଳେ ପୂର୍ବ ପର୍ବତ ଶିଖରେ ଆସି
ରହିଲେ ଶର୍ବରୀ ଈଶ କରକୁ ପ୍ରକାଶି
ମାଣିକ୍ୟ ଥାଳଟି ଧରି କିବା ଦିଗ ଆଳୀ
ରହିଅଛି ଶଚୀବର ବନ୍ଦାଇବ ଭାଳି

ଓଡ଼ିଆ ଭାଷାରେ ଏପରି ଶବ୍ଦାଳଂକାର ଓ ଅର୍ଥାଳଂକାର ବିମଣ୍ଡିତ ସୁରାଣ ପଦାବଳୀ ପାଠକ ମନରେ ବିଶିଷ୍ଟ ସୁନ୍ଦରାନୁଭୂତି ସୃଷ୍ଟି କରିଥାଏ । କବି କୃଷ୍ଣଚରଣ ୧୮୧୭ ଖ୍ରୀଷ୍ଟାବ୍ଦରେ ରାମାୟଣ ଅନୁବାଦ କରି ନିଜର ପୃଷ୍ଠ-ପୋଷକ ରାଜା ଜଗନ୍ନାଥ ସିଂହଙ୍କ ହସ୍ତରେ ଅର୍ପଣ କରିଥିଲେ । ରାଜା ଜଗନ୍ନାଥ ଗ୍ରନ୍ଥର ଅମୂଲ୍ୟ କବିତା ମାଧୁରୀରେ ମୁଗ୍ଧ ହୋଇ ଧର୍ମ୍ମସର ରାଜା ଶ୍ରୀକର ଭଞ୍ଜଙ୍କ ସାହିତ୍ୟ ରସିକତା ବୁଝିବା ପାଇଁ ଗ୍ରନ୍ଥ ଖଣ୍ଡିକ ତାଙ୍କ ନିକଟକୁ ପଠାଇଥିଲେ । ଗ୍ରନ୍ଥର ସାରବତ୍ତା ବୁଝିବା ପାଇଁ ଶ୍ରୀକର ଭଞ୍ଜଙ୍କର ସେତେ ସାମର୍ଥ୍ୟ ନଥିଲା । ସେ ବାଧ୍ୟ ହୋଇ ତାଙ୍କର ସଭା ପଣ୍ଡିତ ସୂର୍ଯ୍ୟମଣିଙ୍କୁ ଗ୍ରନ୍ଥ ସମ୍ବନ୍ଧରେ ଖଣ୍ଡିଏ ମନ୍ତବ୍ୟ ଲେଖି ଦେବାକୁ କହିଲେ । ସେ ମନ୍ତବ୍ୟ ଦେବେ କଅଣ ଦେବବ୍ୟାସକୃତ ଅାଧ୍ୟାତ୍ମ୍ୟ ରାମାୟଣ ଓଡ଼ିଆରେ ଅନୁବାଦ କରି ୧୮୨୮ ଖ୍ରୀଷ୍ଟାବ୍ଦରେ ନିଜ ପୃଷ୍ଠପୋଷକ ରାଜା ଶ୍ରୀକର ଭଞ୍ଜଙ୍କୁ ଉପହାର ଦେଲେ । ସୂର୍ଯ୍ୟମଣି ଧରାକୋଟରେ କବିଙ୍କ ବଂଶରେ ଏକ ବିଦୁଷୀ ଲଳନାଙ୍କୁ ବିବାହ କରିଥିଲେ । ଏଣୁ ଧରାକୋଟରେ ହେଉଥିବା ସାରସ୍ୱତ ସାଧନା ପ୍ରତି ତାଙ୍କର ଦୃଷ୍ଟି ଥିଲା । ଏଣୁ କୃଷ୍ଣଚରଣଙ୍କ କବି ପ୍ରତିଭାରେ ପ୍ରଭାବିତ ହୋଇ ନିଜ ରାଜାଙ୍କ ସମ୍ମାନ ରକ୍ଷା କରିବା ପାଇଁ ସେ ଉପରୋକ୍ତ ଗ୍ରନ୍ଥ ରଚନା କରିଥିବା ଜଣାଯାଏ ।

କୃଷ୍ଣଚରଣଙ୍କ ରାମାୟଣ ଓ ଭାଗବତ ପାଠ କଲାବେଳେ ଭାଷାର ସରଳତା ଓ ମନୋହାରିତା ମନରେ ଅପାର ଆନନ୍ଦ ଜାତ କରାଏ । ଅତି କଠିନ ଦାର୍ଶନିକ ତତ୍ତ୍ୱ ଗୁଡିକ ସେ ଯେପରି ମନେ ରଖିବା ଭଳି ଭାଷା ପ୍ରୟୋଗ କରି ସରଳ ଭାବରେ ବୁଝାଇଛନ୍ତି ଜଗନ୍ନାଥ ଦାସଙ୍କ ଭାଗବତକୁ ଛାଡିଦେଲେ ଓଡିଆ ଭାଷାରେ ଏଭଳି ଅନୁବାଦ ବିରଳ କହିଲେ ଚଳେ । ଭାଗବତର ଜଟିଳ ତତ୍ତ୍ୱକୁ ଅନୁବାଦ କରିବାରେ ସୌଜନ୍ୟ ଦୃଷ୍ଟିରୁ ସେ ନିଜର ଅକ୍ଷମତା ପ୍ରକାଶ କରିଛନ୍ତି ଅଷ୍ଟମ ସ୍କନ୍ଧର ଆଦ୍ୟରେ ।

ଦୁର୍ବଳ ଦନ୍ତାବଳ ମୃଣାଳ ସୂତ୍ରେ ବନ୍ଧ
କରିବାକୁ ଯେ ରୂପେ ହେଉଥାଏ ବୋଧ ।

ତଥାପି ଭାଷାର ସରଳତା ଓ ଲିଖନ ଭଙ୍ଗୀର ଚମତ୍କାରିତା ଯୋଗୁଁ ଓଡ଼ିଶାର କ ସ୍ତ୍ରୀ କ ପୁରୁଷ ବହୁଲୋକ ଏଥିରୁ ପଦେ ଅଧେ ମନେ ରଖି ବ୍ୟବହାର କରିଥାନ୍ତି । ଏହି ସର୍ବଜନାଦୃତ ଗ୍ରନ୍ଥ ଦୁଇଟି ଆଜି ଓଡ଼ିଶାର ଘରେ ଘରେ ପଞ୍ଚନାୟକ ଭାଗବତ ଓ ରାମାୟଣ ନାମରେ ଖ୍ୟାତି ଲାଭ କରି-ଅଛି । ଭାଷାର ବିଶୁଦ୍ଧତା ଓ ସରଳତା ଯୋଗୁଁ ଗତ ଶତାବ୍ଦୀର ଦ୍ୱିତୀୟ ଓ ତୃତୀୟ ଦଶକରେ ମାନ୍ଦ୍ରାଜ ଓ ଆନ୍ଧ୍ର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଛାତ୍ରମାନଙ୍କ ପାଇଁ ଏହି ପୁରାଣ ଗୁଡ଼ିକର କେତେକାଂଶ ପାଠ୍ୟପୁସ୍ତକରେ ଅନ୍ତର୍ଭୁକ୍ତ କରାଯାଇଥିଲା ।

ଏହି ଆକ୍ଷରିକ କୀର୍ତ୍ତି ଯୋଗୁଁ ସେ ଉତ୍କଳ ଇତିହାସରେ ଅମର ହୋଇ ରହିଛନ୍ତି ।



# ଶ୍ୟାମ କବି

ଧରାକୋଟ ରାଜ୍ୟାନ୍ତର୍ଗତ ପବିତ୍ର ଋଷିକୁଲ୍ୟା ତୀରବର୍ତ୍ତୀ ମଙ୍ଗଳପୁର ଗ୍ରାମରେ ଶ୍ୟାମସୁନ୍ଦର ଏକ ବ୍ରାହ୍ମଣ କୁଳରେ ଅଷ୍ଟାଦଶ ଶତାବ୍ଦୀର ଶେଷ ଦଶକରେ ଜନ୍ମ ଗ୍ରହଣ କରିଥିଲେ । କବିଙ୍କ ସମ୍ବନ୍ଧରେ ଗୋଟିଏ କୌତୁ-ହଳୋଦ୍ଦୀପକ କାହାଣୀ ଶୁଣାଯାଏ । ଯୌବନ ସମୟରେ ଶ୍ୟାମସୁନ୍ଦର ତାଙ୍କର କବିତା ଶକ୍ତିର ସ୍ଫୁରଣ ପାଇଁ ନିଜ ଗ୍ରାମର ଗ୍ରାମଦେବତୀଙ୍କୁ ଆରାଧନା କଲେ । କିନ୍ତୁ କବି ପ୍ରତିଭାର ପ୍ରସ୍ଫୁଟନ ନହେବା ହେତୁ କିଛି ଦିନପରେ ଆରାଧନାରୁ ବିରତ ହୋଇ ପ୍ରତିଦିନ ସ୍ନାନ ଉତ୍ତାରୁ ଗ୍ରାମଦେବତୀଙ୍କୁ ଦୁଇଟି ଲେଖା ଢେଲା ଫିଙ୍ଗିଲେ । ଏହାର କିଛିଦିନ ପରେ ଦେବୀଙ୍କ ଅନୁକମ୍ପା ଓ

ପ୍ରେରଣାରୁ କବିଙ୍କ ଅପୂର୍ବ କବିତ୍ୱ ଶକ୍ତିର ବିକାଶ ହୋଇ ଓ କବି ବହୁ ଉଚ୍ଚ କୋଟୀର ବିଷ୍ଣୁପ୍ରେମ ଆଧାରିତ ଅନେକ ଜଣାଣ ଓ ଭଜନ ଲେଖିବାକୁ ସକ୍ଷମ ହେଲେ । କବିତାଙ୍କର ଗୋଟିଏ ଜଣାଣରେ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ଅନ୍ତରଙ୍ଗତା ପ୍ରକାଶ କରିବା ସଙ୍ଗେ ସଙ୍ଗେ କୃଷ୍ଣଙ୍କୁ ନିଜର ଆତ୍ମୀୟରୂପେ ଗ୍ରହଣ କରି ତାଙ୍କର ସମସ୍ତ ଦୁଃଖ ଓ ସନ୍ତାପ ଦୂର କରିବା ପାଇଁ ପ୍ରାର୍ଥନା କରିଛନ୍ତି । ଏହି ଭଜନର ଶେଷ ପଦରେ କବି କିପରି ନିଜର ଅସହାୟତା ପ୍ରକାଶ କରିଛନ୍ତି ଦେଖାଯାଉ ।

ରାଗ ପଞ୍ଚମ ବରାଡ଼ି

ସଂସାରେ ମୋ ପରି ହୋଇ - ଅଛାରେ ନଥିବେ କେହି

ଦଶାରୁ ଅବଳ ହେଲି କ୍ଷୀଣ

ଉଷା ଶାଶୁର ଶଶୁର - ସୁଧାରସ ଶ୍ରୀପୟର

ମୁଁ ପାର ନକରି ନେଲି ଦିନ ହେ ! କଂସା ରାତି

ମୁଁ ଶ୍ୟାମ ଯେ ବିଶାଖା ଅଟଇ—ନିଶାକର ଭୂଷାଙ୍କର

ଯୋଷା ଯାନ— ବଂଶ ବୀର ରସା ପତିଙ୍କର ପୋଷା ମୁହିଁ ହେ ।

(ଅର୍ଥ—ଉଷା ଶାଶୁର ଶଶୁର - କୃଷ୍ଣ; ନିଶାକର ଭୂଷା – ଶିବ, ଯୋଷା – ପାର୍ବତୀ; ତାଙ୍କର ଯାନ - ସିଂହ )

ଏଥିରୁ ଜଣାଯାଏ କବି ଧରାକୋଟ ସିଂହ ବଂଶ ନରପତିଙ୍କର ପୃଷ୍ଠପୋଷକତା ଲାଭ କରିଥିଲେ । ଧରାକୋଟ ରାଜା ଜଗନ୍ନାଥ ସିଂହ ତାଙ୍କୁ ଜଣେ କର୍ମଚାରୀ ରୂପେ ନିଯୁକ୍ତ ଦେଇଥିଲେ । କବି ବୋଧହୁଏ ନିଃସନ୍ତାନ ଥିଲେ । ଏଣୁ ନିଜକୁ ନିଃଶାଖା ଅଟଇ ବୋଲି ଲେଖିଛନ୍ତି । କବିଙ୍କ ଭାଷା ଅତ୍ୟନ୍ତ ଆଡ଼ମ୍ବର ପୂର୍ଣ୍ଣ ଓ ଅଳଂକାର ବିମଣ୍ଡିତ । ଉପରୋକ୍ତ ଜଣାଣ କବିଙ୍କର ବହୁ ଜଣାଣ ଅପ୍ରକାଶିତ ଅବସ୍ଥାରେ ପଡ଼ିରହିଛି ।



# ପୀତାମ୍ବର ବିଦ୍ୟାଭୂଷଣ

ରାଜେନ୍ଦ୍ରପୁର ଶାସନର ସ୍ୱର୍ଗୀୟ ପଣ୍ଡିତ ଗୋପୀନାଥ ମହାପାତ୍ରଙ୍କ ପୁତ୍ର ପୀତାମ୍ବରଙ୍କର ମଧ୍ୟ ସଂସ୍କୃତ ଭାଷାରେ ଅଗାଧ ପାଣ୍ଡିତ୍ୟ ଥିଲା । ଅଷ୍ଟାଦଶ ଶତାବ୍ଦୀର ଶେଷ ଦଶକରେ ରାଜା ଜଗନ୍ନାଥ ସିଂହ ଧରାକୋଟରେ ରାଜଗାଦି ଆରୋହଣ କରିଥିଲେ । ପଣ୍ଡିତ ପୀତାମ୍ବର ତାଙ୍କର ସମସାମୟିକ ବ୍ୟକ୍ତି ଥିବା ଜନଶ୍ରୁତିରୁ ଜଣାଯାଏ । କବି ରାଜାଙ୍କ ନାମରେ କୌଣସି ଶ୍ଳୋକ ରଚନା କରି ଭଣିତା କରିନାହାଁନ୍ତି ତଥାପି ତାଙ୍କ ପାଣ୍ଡିତ୍ୟ ଓ କବି ପ୍ରତିଭାରେ ମୁଗ୍ଧ ହୋଇ ରାଜା ତାଙ୍କୁ ବିଦ୍ୟାଭୂଷଣ ଉପାଧିରେ ଭୂଷିତ କରିଥିଲେ । ସେ ସକଳ ଶାସ୍ତ୍ରରେ ବିଦ୍‌ବତ୍ତା ଲାଭ କରିବା ପାଇଁ ଜୀବନର ସମସ୍ତ ସମୟ ଅତିବାହିତ କରିଥିଲେ କିନ୍ତୁ ଭଗବତ ଆରାଧନାରେ ଓ ଈଶ୍ୱର ଚିନ୍ତାରେ ଆଦୌ ମନୋନିବେଶ କରି ପାରିନଥିବା ହେତୁ ସେ ବହୁ ଅନୁତାପ କରିଅଛନ୍ତି । ଏଣୁ ଜୀବନର ବାର୍ଦ୍ଧକ୍ୟ ଅବସ୍ଥାରେ ରୋଗ ଶଯ୍ୟାରେ ପଡ଼ି ଭାବ ଗଦ୍‌ଗଦ୍ ଚିତ୍ତରେ ଶିବଙ୍କ ଉଦ୍ଦେଶ୍ୟରେ ଯେଉଁ ଏକଶତ ଶ୍ଳୋକ ରଚନା କରିଥିଲେ ସେଥିରୁ କେତେଗୋଟିର ଉଦାହରଣ ଦିଆଗଲା । ଏହି ଶିବ ଶତକରେ ପାର୍ଥିବ ବସ୍ତୁ ଓ ଭୋଗ ବିଳାସର ଅଳୀକତା ଓ କ୍ଷୋଭ-ଭଙ୍ଗୁରତା ପ୍ରତି ମଣିଷକୁ ସଚେତନ କରାଇ ସେଥିରୁ ମନକୁ ନିବୃତ୍ତ କରାଇ ଶିବଙ୍କଠାରେ ଭକ୍ତି ଜାଗ୍ରତ କରିବା ପାଇଁ ତାଙ୍କ ଶିବ ଶତକରେ ଉଲ୍ଲେଖ କରିଛନ୍ତି ।

ଆଦୌ ବ୍ୟାକରଣେଽଥ ତର୍କଗହନେ ସାଂଖ୍ୟେଽଥ ପାତଞ୍ଜଳେ
ବେଦାନ୍ତେଽପିମୁଧା ବିଧାୟ ଖୁରଳୀଂ କାଲୋମୟା ଯାପିତଃ
ହାହାଜନାତୀବର୍ଗ ଫଳଦଃ କ୍ଷିପ୍ରଃ ପ୍ରସାଦଃ ଶିବୋ
ଦେବଃ କିଂ କରୁଣାନିଧେ ପ୍ରତିଦିନଂ ନାରାଧି ବିଶ୍ୱେଶ୍ୱରଃ ।

ଅର୍ଥ :—ପ୍ରଥମରୁ ମୁଁ ବ୍ୟାକରଣ, ତର୍କଶାସ୍ତ୍ର, ସାଂଖ୍ୟ, ପାତଞ୍ଜଳ, ବେଦାନ୍ତ ପ୍ରଭୃତି ଶାସ୍ତ୍ର ଅଧ୍ୟୟନ ତଥା ଅଭ୍ୟାସରେ ( ଖୁରଳୀ ) ବୃଥାରେ ( ମୁଧା ) କାଳଯାପନ କଲି । କିନ୍ତୁ ଯେଉଁ ଶିବ ଶୀଘ୍ର ମଙ୍ଗଳପ୍ରଦ, ପ୍ରସାଦପ୍ରଦ ଓ ଭକ୍ତଜନଙ୍କର ମୁକ୍ତି ପ୍ରଦ ସେହି କରୁଣାମୟ ବିଶ୍ୱେଶ୍ୱରଙ୍କୁ ଆରାଧନା କଲିନାହିଁ ।

ମାୟାଗ୍ରସ୍ତ ସଂସାର ସାଗରରୁ ଉତ୍ତୀର୍ଣ୍ଣ ହେବା ପାଇଁ ଶିବ କେବଳ ମାତ୍ର କାରଣ ଏଣୁ ସେ ଲେଖିଛନ୍ତି—

ଦୀନଂ ହୀନଂ ବିବେକେନାର୍ତ୍ତମଳସଂ ମୂର୍ଖଂ ତଥା ପାପିନଂ
କାମାଦ୍ୟୈଃ ରିପୁଭିର୍ବିଲୁପ୍ତ ହୃଦୟଂ ଦୁଃଖାକୃତଂ ବାନ୍ଧବୈଃ
ଆଚାରେଣ ବିବର୍ଜିତଂ ଚ ଶୁଚନା ପୂର୍ବେଣ ହୀନଂ ସତ
କାଳୀକାନ୍ତ ଜଗତ୍ପତେ କରୁଣୟା ସର୍ବଜ୍ଞ ମାଂ ପାଳୟ ।

ମୁଁ ଦରିଦ୍ର, ଅବିବେକୀ, ଆର୍ତ୍ତ, ଅଳସ, କାମାଦିରିପୁ ଦ୍ୱାରା ହୃଦୟହୀନ ବନ୍ଧୁ ଓ ଆଚାର ବର୍ଜିତ ଓ ସାଧୁ ବ୍ୟକ୍ତିମାନଙ୍କ ଦ୍ୱାରା ପରିତ୍ୟକ୍ତ ଏଣୁ ହେ କାଳୀକାନ୍ତ, ଜଗନ୍ତପତି ସର୍ବଜ୍ଞ ଆପଣ ମୋତେ ରକ୍ଷା କରନ୍ତୁ । ଲେଖକଙ୍କ ଉପରୋକ୍ତ ଶିବଶତକ ଏଯାଏଁ ପ୍ରକାଶ ପାଇନାହିଁ ।



## ରାଜା ରଘୁନାଥ ସିଂହ ( ୧୮୩୧—୧୮୬୩ ଖ୍ରୀ )

ରାଜା ଜଗନ୍ନାଥ ସିଂହଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ର ରଘୁନାଥସିଂହ ୧୮୩୧ ଖ୍ରୀଷ୍ଟାବ୍ଦରେ ରାଜପଦରେ ଅଭିଷିକ୍ତ ହୋଇ ୧୮୬୩ ଖ୍ରୀ ଯାଏ ରାଜ-କାର୍ଯ୍ୟ ପରିଚାଳନା କରିଥିଲେ । ତାଙ୍କର ପିତୃ ପିତାମହଙ୍କ ପରି ସେ

ଅତ୍ୟନ୍ତ ଧର୍ମନିଷ୍ଠ, କର୍ମନିଷ୍ଠ ଓ ଦାନଶୀଳ ରାଜା ରୂପେ ସେ ସମୟରେ ଗଞ୍ଜାମରେ ଖ୍ୟାତିଲାଭ କରିଥିଲେ । ତାଙ୍କର କବିତା, ବିଦ୍ୟୋତ୍ସାହିତା, ପାଣ୍ଡିତ୍ୟ ଓ କାବ୍ୟିକ ପ୍ରତିଭା ଯୋଗୁଁ ସୁଧୀ ସମାଜ ତାଙ୍କୁ ଜଣେ ଆଦର୍ଶ ନରପତି ବୋଲି ଅଭିହିତ କରୁଥିଲେ । ତାଙ୍କର ରାଜସଭା କେଉଁ କେଉଁ ପଣ୍ଡିତ ଓ କବିମାନଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା ତାହା ଜଣା ଯାଉନଥିଲେ ମଧ୍ୟ ରାଜକବିଙ୍କ "ବିରାଟ ରାମଲୀଳା" ନାଟକ ଅତ୍ୟନ୍ତ ଉଚ୍ଚକୋଟୀର ଥିଲେ ବୋଲି ବହୁ ପଣ୍ଡିତ ମତ ବ୍ୟକ୍ତ କରୁଛନ୍ତି ।

ଏଥିପୂର୍ବରୁ ଧରାକୋଟର ରାଜନ୍ୟବୃନ୍ଦ ଓ ଅନ୍ୟାନ୍ୟ ସାହିତ୍ୟିକ ମାନେ ସ୍ୱହସ୍ତ ଲେଖନୀ ଚାଳନା କରି ବିରାଟ ମହାଭାରତ, ରାମାୟଣ, ହରି-ବଂଶ, ଭାଗବତ ପ୍ରଭୃତି ଅନ୍ୟାନ୍ୟ କେତେକ ଗ୍ରନ୍ଥର ଅନୁବାଦ କରିଥିଲେ । କିନ୍ତୁ ଓଡିଆ ଭାଷାରେ ଲୀଳା, ଯାତ୍ରା ଓ ସୁଆଙ୍ଗ ସାହିତ୍ୟକୁ ଚୁର୍ଦ୍ଧିମନ୍ତ କରି ଗଣସାହିତ୍ୟ ରଚନା କରିବାରେ କୌଣସି କବି ଚେଷ୍ଟା କରିଥିବା ଏଯାଏଁ ଲୋକ ଲୋଚନକୁ ଆସି ପାରିନାହିଁ । ଆମର ଯାତ୍ରା ଓ ଲୀଳା ସାହିତ୍ୟକୁ ଓଡିଶାର ଯେଉଁ ଅନ୍ୟାନ୍ୟ କବି ଓ ଲେଖକ ମାନେ ସମୃଦ୍ଧ ଓ ଲୋକପ୍ରିୟ କରିପାରିଛନ୍ତି । ସେମାନଙ୍କ ମଧ୍ୟରେ ରଘୁନାଥ ସିଂହଙ୍କ ସ୍ଥାନ ଯେ ଉଚ୍ଚା-ସନରେ ରହିବ ଏଥିରେ ସନ୍ଦେହ ନାହିଁ ।

ପ୍ରତ୍ୟେକ ସମାଜରେ ଧର୍ମୀୟ ନୃତ୍ୟ ଗୀତରୁ ଲୋକନାଟ୍ୟର ଉଦ୍ଭବ ହୋଇଛି । ଏହି ଲୋକ ନାଟକର ଉଦ୍ଦେଶ୍ୟ ହେଉଛି ଏହି ଅଦୃଷ୍ଟ ଶକ୍ତିକୁ ସନ୍ତୁଷ୍ଟ କରି ନାନା ବିଷୟରେ ନିଜର ଓ ଜନସମାଜର ମଙ୍ଗଳ କାମନା କରିବା ସଙ୍ଗେ ସଙ୍ଗେ ପୌରାଣିକ ଚରିତ୍ର ଗୁଡିକୁ ଲୋକ ସମକ୍ଷରେ ଉପ-ସ୍ଥାପିତ କରି ଜନ ଜୀବନକୁ ବିଶୁଦ୍ଧ ଓ ନିର୍ମଳ ଭାବେ ଗଠନ କରିବା । ଜନ ଚିତ୍ତକୁ ଅନୁରଞ୍ଜନ କରି ଭାଷା ଓ ସାହିତ୍ୟର ବିକାଶ ସାଧନ କରିବା ମଧ୍ୟ ଏହାର ଅନ୍ୟ ଏକ ମୁଖ୍ୟ ଲକ୍ଷ୍ୟ ବୋଲି ଧରାଯାଇପାରେ । ସେଥିପାଇଁ

ପ୍ରାଚୀନ ଓ ଅର୍ବାଚୀନ ବହୁକବିଙ୍କ ଦ୍ୱାରା ରଚିତ ରାମଲୀଳା, କୃଷ୍ଣଲୀଳା, ରାସଲୀଳା ବିଭିନ୍ନ ରାଗରାଗିଣୀରେ ଲିଖିତ ହୋଇ ବିଭିନ୍ନ ଗୀତ ମାଧ୍ୟମରେ ମୁକ୍ତାକାଶ ରଙ୍ଗମଞ୍ଚରେ ପାତ୍ର ପାତ୍ରୀଙ୍କ ଦ୍ୱାରା ପରିବେଷିତ ହେଉଛି ।

ରାଜା ରଘୁନାଥ ସିଂହଙ୍କ ରାମଲୀଳା ଏପର୍ଯ୍ୟନ୍ତ ଅପ୍ରକାଶିତ ଅବସ୍ଥାରେ ପଡ଼ି ରହିଥିଲେ ମଧ୍ୟ ଏହା ଧରାକୋଟ ତଥା ଗଞ୍ଜାମର ବହୁ ଗ୍ରାମାଞ୍ଚଳରେ ଦେବାଦେବୀଙ୍କ ଯାତ୍ରା ଉତ୍ସବ ବେଳେ ଅଭିନୀତ ହେଉଥିବା ଦେଖାଯାଏ । ଏହାର ପାଣ୍ଡୁଲିପି ଧରାକୋଟର ବହୁ ସାହିତ୍ୟ ପିପାସୁ ଓ ଲୀଳା ନାଟକ ପ୍ରିୟ ବ୍ୟକ୍ତିଙ୍କ ନିକଟରେ ଦେଖିବାକୁ ମିଳେ । ଏହି ଗ୍ରନ୍ଥଟି ଗଞ୍ଜାମରେ ଧରାକୋଟ ରାମଲୀଳା ଭାବେ ଖ୍ୟାତି ଲାଭକରିଛି ।

ଏହି ଗ୍ରନ୍ଥଟିରେ କବି ଦଶରଥଙ୍କର ପୁତ୍ରେଷ୍ଟି ଯଜ୍ଞଠାରୁ ଆରମ୍ଭ କରି ରାବଣ ବଧ ପରେ ରାମଚନ୍ଦ୍ରଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଓ ରାଜପଣ ପର୍ଯ୍ୟନ୍ତ ସାତଗୋଟି କାଣ୍ଡରେ ରାମଙ୍କ ଚରିତ ଶତାଧିକ ରାଗରାଗିଣୀ ବ୍ୟବହାର କରି ରଚନା କରିଛନ୍ତି । ଆଦିକାଣ୍ଡ – ୭୨, ଅଯୋଧ୍ୟା – ୯୭, ଆରଣ୍ୟକ – ୧୫୭, କିଷ୍କିନ୍ଧ୍ୟା – ୧୬୯, ସୁନ୍ଦର – ୨୫୦, ଲଙ୍କାକାଣ୍ଡ ପୂର୍ବାର୍ଦ୍ଧ ଉତ୍ତରାର୍ଦ୍ଧ–୫୨୭ ଓ ଉତ୍ତରକାଣ୍ଡ-୪୨୯ ଗୋଟି ଗୀତରେ ରଚିତ ହୋଇଛି । ଗ୍ରନ୍ଥର ବହୁଳତା ଦୃଷ୍ଟିରୁ ଏହାର ବିଶେଷ ଆଲୋଚନା ଏଠାରେ ସମ୍ଭବପର ନୁହେ ତଥାପି ଅଳ୍ପ କେତେକ ଦୃଷ୍ଟାନ୍ତ ଦ୍ୱାରା କବିଙ୍କ କୃତିତ୍ୱ ବିଷୟରେ କ୍ଷୀଣ ଆଭାସ ଦେବାକୁ ଉଚିତ ମନେ କରୁଛି ।

ବହୁପୂର୍ବକାଳରୁ ଉତ୍କଳ ଜଗନ୍ନାଥ ଦେଶନାମରେ ପ୍ରଖ୍ୟାତ । ଜଗନ୍ନାଥହିଁ ଉତ୍କଳୀୟମାନଙ୍କ ଆରାଧ୍ୟ ଦେବତା । ଉତ୍କଳର ଧର୍ମ ଜଗନ୍ନାଥ ଧର୍ମ, ଉତ୍କଳର ସଂସ୍କୃତି ଜଗନ୍ନାଥ ସଂସ୍କୃତି । ଜଗନ୍ନାଥ ଏଜାତିର ସମସ୍ତ ମାନ ମର୍ଯ୍ୟଦାର ଅଧିକାରୀ, ଜଗନ୍ନାଥ ସମସ୍ତ ଧର୍ମର ମୂଳପିଣ୍ଡ । ସେ ହେଉଛନ୍ତି ପରମାତ୍ମା,

ପରମେଶ୍ୱର ଓ ସ୍ୱୟଂବସ୍ତୁ । ଏଣୁ କିଷ୍କିନ୍ଧ୍ୟା କାଣ୍ଡ ଆରମ୍ଭରେ ଜଗନ୍ନାଥଙ୍କୁ ବନ୍ଦନା କରିବାପରେ କବି ରାମନାମର ମାହାତ୍ମ୍ୟ ଉଲ୍ଲେଖକରି ସ୍ୱୀୟ ଭକ୍ତି-ମୂଳକ ଲୀଳାଗ୍ରନ୍ଥ ଆରମ୍ଭ କରି ଗ୍ରନ୍ଥଲେଖିବା ପାଇଁ ବିଭୁଙ୍କ ପଦାରବିନ୍ଦରେ ପ୍ରଣତି ଜଣାଇଛନ୍ତି ।

ଜୟଜୟ ଜଗନ୍ନାଥ ଜୟ ନୀଳଗିରିବାସୀ ଜୟ ଶଙ୍ଖଚକ୍ରଧର ଜୟ ବ୍ରହ୍ମରାଶି
ଜୟଦେବ ହେ ।
ଜୟ କୃପାମୟ ଲକ୍ଷ୍ମୀଧବ ହେ
ଜୟ ଜୟ ଦାରୁବ୍ରହ୍ମ ଭକ୍ତ ଚିତ୍ତ ଚୋର ଜୟ ଖଗେଶ୍ୱର ଧ୍ୱଜ ଜୟ ନିର୍ବିକାର
ଭୂଜ ଟେକ ହେ !
ଶରଣି ଡାକୁଛି ଦୀନ ଡାକ ହେ ।

## ଉତ୍ତରକାଣ୍ଡରେ କବି ଲେଖିଛନ୍ତି

ରାମାୟଣ ଗ୍ରନ୍ଥ ପାରାବାର ତ ଅଟଇ
ପଙ୍ଗୁ ହୋଇ ସାଗର କି ଲଂଘି ମୁଁ ପାରଇ
କୃପା ହେବ ହେ
ପଦ ବିସ୍ତରିଲେ କହିଦେବ ହେ ।
ସ୍ୱରେ ରଘୁନାଥ ସିଂହ ଧରାକୋଟ ନୃପ
ତବ ପଦାମ୍ବୁଜ ବାରି ପାଇଲେ ଅଳପ
ଶେଷ କରି ହେ
ଏ ଗ୍ରନ୍ଥ ସାଗରୁ ହେବ ପାରି ହେ ।

ଆରଣ୍ୟକ କାଣ୍ଡରେ ରାମଚନ୍ଦ୍ରଙ୍କ ବ୍ୟତୀତ କବି ସରସ୍ୱତୀ ଓ ଗଣେଶଙ୍କୁ ଭକ୍ତିଭରି କଣ୍ଠରେ ଏହି ବିରାଟ ଗ୍ରନ୍ଥକୁ ପ୍ରାକୃତ ଭାଷାରେ ରଚନା କରିବା ପାଇଁ ସାହାଯ୍ୟ ଭିକ୍ଷା କରି ଅନ୍ତରର ନିବେଦନ ଜ୍ଞାପନ କରିଛନ୍ତି ନିମ୍ନୋକ୍ତ ଗୋଟିଏ ଦୃଷ୍ଟାନ୍ତରୁ ଜଣାଯାଏ ।

ଜୟ ଜୟ ଶାରଦା ଗୋ ନାରାୟଣ ରାଣୀ
ଧବଳ ବରନ ବୀଣା ଯନ୍ତ୍ରର ଧାରଣୀ
ଚତୁର୍ଭୁଜା ଗୋ
ସକଳ ପଣ୍ଡିତ ତୋତେ ପୂଜେ ଗୋ
ତବ କଟାକ୍ଷ ପତନ ନୋହିଲେ ଗୋ ମାତ
ତୁର ଧରିକୋଠ ପଡ଼ କରିବକ ଗୀତ
କଲି ମୁକ୍ତି ଗୋ
ନମୋ ନମୋ ଦେବୀ ସରସ୍ୱତୀ ଗୋ ।

କବି ଶ୍ରୀ ସରସ୍ୱତୀ ଓ ଗଣେଶଙ୍କର ମଧ୍ୟ ପରମ ଭକ୍ତଥିଲେ । ଏଣୁ ପ୍ରଶସ୍ତିଗାନ ଶେଷରେ ନିଜର ସମସ୍ତ ଆତ୍ମ ଦ୍ରବ୍ୟଗୁର ବଳିଦାନ କରି ଜଗତ ନିୟନ୍ତା ଜଗଦୀଶ୍ୱରଙ୍କ ଠାରେ ନିଜର ସମସ୍ତ ଖ୍ୟାତି, ସମ୍ମାନ, ଗୌରବ ଅହଂଭାବ ତଥା କବି କୃତୀକୁ ନୈବେଦ୍ୟ କରି ଛନ୍ଦ ରଚନାରେ ସାହାଯ୍ୟ କରିବା ପାଇଁ ଭକ୍ତିପୂର୍ଣ୍ଣ ନିବେଦନ କରିଛନ୍ତି । ଏତଦ୍‌ବ୍ୟତୀତ କବି କ୍ଷମୋଚିତ ସୌଜନ୍ୟ ରକ୍ଷାକରି ଛନ୍ଦରେ କିଛି ତ୍ରୁଟି ପରିଲକ୍ଷିତ ହେଲେ ସଜ୍ଜନମାନେ ତାହା ମାର୍ଜନା କରିବା ଲାଗି ନିବେଦନ କରିଛନ୍ତି ।

ସାମ ବେଦୁ ଏ ଅଯୋଧ୍ୟା କାଣ୍ଡରସ
ବାଲମିକ ମୁନି ମୁଖ୍ ହୋଇଛି ପ୍ରକାଶ
ନଜାଣି ମୁଁ ଗୀତ ବନ୍ଧେକଲି ଯା ରଚନା
ଜାଣି ସଜ୍ଜନେ ମୋର ନାହିଁ ବିବେଚନା
ଆପଣମାନେ ଅଟନ୍ତି ପଣ୍ଡିତଙ୍କର ସାର
ଦୋଷ ନ ଧେନିବ ମୋର ଦେଖି ଅସୁମାର ।

ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା କରିବାରେ କବି ସିଦ୍ଧ ହସ୍ତଥିଲେ । ପ୍ରକୃତି ଜଡ଼ ହେଲେ ମଧ୍ୟ ସ୍ଥଳ ବିଶେଷରେ ତାକୁ ଜୀବନ୍ତ ଓ ମାନବ ଧର୍ମରେ ଗାଷିତ କରି କବିମାନେ ହୃଦୟର ଚ୍ଛାୟାକୁ ପ୍ରକୃତି ମୁଖ ଦର୍ପଣରେ ପ୍ରତି-ବିମ୍ବିତ କରିଛନ୍ତି । ବିବାହ, ଯଜ୍ଞ, ଯୁଦ୍ଧ, ତୀର୍ଥଭ୍ରମଣ, ବନଭ୍ରମଣ ପ୍ରଭୃତିର ବର୍ଣ୍ଣନାରେ କବି ଅତି ସୂକ୍ଷ୍ମ ବିଷୟକୁ ବ୍ୟବହାର କରି ଅତି ବିଶଦ କରି-ଥିଲେ ମଧ୍ୟ ରଚନାକୁ ମନୋରଞ୍ଜନ କରିପାରିଛନ୍ତି । ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନାରେ ଶତାଧିକ ବୃକ୍ଷ, ପୁଷ୍ପ, ଫଳ ପ୍ରଭୃତିର ନାମକରଣ କରି ଏ ବିଷୟରେ ବିସ୍ତୃତ ଥିବାର ପରିଚୟ ଦେଇଛନ୍ତି । ଏହି ପ୍ରକୃତି ଦେବୀ ପୁଣି ରାବଣ ଦ୍ୱାରା ସୀତା ହରଣ ହେବାପରେ ଦୁଃଖୀ କାତର ରାମଚନ୍ଦ୍ରଙ୍କୁ ସୁନ୍ଦର ହିଶୁନାହିଁ । ବିରହୀ ରାମଚନ୍ଦ୍ରଙ୍କୁ ଋତୁରାଜ ବସନ୍ତର ଅପାର ସମ୍ଭାର ଶତ୍ରୁ ପରି ମନେ ହେଉଛି । ସୀତାଙ୍କୁ ରାବଣ ବନରୁ ହରଣ କରି ନେଇଯିବା ପରେ ରାମଚନ୍ଦ୍ର ସ୍ୱକୁଟୀରକୁ ଫେରି ଆସି ଶୋକ ପ୍ରକାଶ କରିଛନ୍ତି ଏବଂ ପର୍ଣ୍ଣକୁଟୀର ଓ ପଞ୍ଚବାଟୀକୁ ଦୋଷ ଦେଇଛନ୍ତି । ନଦୀ, ପର୍ବତ, ଲତା ଓ ବୃକ୍ଷମାନଙ୍କୁ ସମ୍ବୋଧନ କରି ସେମାନେ ସୀତାଙ୍କୁ ରକ୍ଷାକରି ପାରିନଥିବାରୁ ସେମାନଙ୍କୁ ଦୋଷ ଦେଇଛନ୍ତି । ରାମଚନ୍ଦ୍ରଙ୍କର ଏହି ପ୍ରଲାପ ପୂର୍ଣ୍ଣ ଶୋକ ଲଙ୍କାକାଣ୍ଡରୁ ୧୨୯ ଛନ୍ଦ 'ଖଣ୍ଡିତା ରାଗରେ' ବର୍ଣ୍ଣନା କରି କବି ପାଠକ ଓ ନାଟକର ଦର୍ଶକ ମାନଙ୍କୁ କରୁଣ ରସରେ ଦ୍ରବୀଭୂତ କରାଇବାରେ ଯଥା-ସମ୍ଭବ ଚେଷ୍ଟା କରିଛନ୍ତି ତଳ ଉଦାହରଣରୁ ଜଣାଯାଏ ।

ଏତେ ବୋଲି ତରୁବର ମାନଙ୍କୁ ଅନାଇ

ପଚାରିଲେ ରାମ କେହୁ ନେଲା ବଇଦେହୀ

ଦେଖିଥିଲେ ଛେ

କହ ସାକ୍ଷୀମାନେ ମତେ ଭଲେ ହେ ।

ଆହେ ଗିରିବର ମାନେ ଗିରିବରସ୍ତନା

କେଉଁ ଦିଗେ ଗଲା ମତେ ଦେଇ ଏ ବେଦନା

ଦଅ କହି ହେ
ପ୍ରାଣ ହରଇବ ଏଥିପାଇଁ ହେ ।
ଆହେ ପଞ୍ଚବଟୀ ତୁମ୍ଭେ ହେଲକ କପଟୀ
କେଣେ ଯାଇ ରହିଛି ମୋହର କୁଣ୍ଡକଟୀ
ଦେଖିଅଛ ହେ
ପଚାରିଲେ ନକହି ରହୁଛ ହେ ।
ଅନାଇ ମୃଗ ଯୂଥକୁ ଦଶରଥ ସୁତ
ବୋଲନ୍ତି ମୋ ମୃଗନେତ୍ରୀ କାହିଁ ଦେଖିଛତ
ତୁମ୍ଭେ ସୁଖୀ ହେ
ମୁଁ ହେଲି ଏ ବନେ ଘୋର ଦୁଃଖୀ ହେ ।

କବି ପ୍ରକୃତିକୁ ଉପମା ଓ ରୂପକର ଆକର ରୂପେ ବ୍ୟବହାର କରି ଚିତ୍ରକୁ ମନୋରମ କରିବାରେ ସମର୍ଥ ହୋଇଛନ୍ତି । ରାମଚନ୍ଦ୍ର ଓ ସୀତା ବନ ବିହାରରେ ଉତ୍ସୁକ ହୋଇ ଆନନ୍ଦ ଚିତ୍ତରେ ସହାନୁଭୂତିଶୀଳ ପ୍ରକୃତି ଦେବୀର କୋଡ଼ରେ କପରି କ୍ରୀଡ଼ା କରୁଛନ୍ତି ଓ ପ୍ରକୃତି ଦେବୀ ଏମାନଙ୍କ ବ୍ୟବହାରରେ କପରି ଆନନ୍ଦ ଉପଭୋଗ କରି ଅଭିନନ୍ଦନ ଜଣାଉଛି ତାହା ନିମ୍ନୋକ୍ତ ପଦ୍ୟରୁ ଜଣାଯାଏ ।

ବୁଡ଼ା ବୁଡ଼ି ହୋଇ କେ କାହା କରି ଧରନ୍ତି ହିତ
ପାଣି ଫିଙ୍ଗା ଫିଙ୍ଗି ହୋଇଣ ପୁଣି ଲୁଚନ୍ତି ବୁଡ଼ି ।
ସେହି ଚଉପାରୁ ତୋଳିଣ ଶତଦଳ କମଳ
ବହନ୍ତି ସୀତାଙ୍କୁ ଦେଖାଇ ଦଶରଥଙ୍କ ବାଳ ।
ଆବର ବିମ୍ବାଧରି ତୋ ମୁଖ ସମନୁହେ କି ଏହି
ଅବମରେ ଲାଜେ ନରହି ଜଳେ ଲୁଚିଛି ସେହି ।

ଅନାମିନ ସବୁ ମଧ୍ୟମା ଗନ୍ଧିରରେ ଖେଳନ୍ତି
ତୋ ନୟନ ଭୁଲ୍ୟ ନୋହିଲେ ଯନ୍ତୁ ସେ କର ଖିତ ।

× × ×

ଦେଖି ଚନ୍ଦ୍ରାବାସୀ ସକଳ ତରୁ ବାଗନ୍ତ ଶୋଭା
ମନକୁ ଆନନ୍ଦ କରନ୍ତ କାମ କନକ ପ୍ରଭା ।

ରାମଚନ୍ଦ୍ର ରାବଣକୁ ବଧ କରିବା ପରେ ଲଙ୍କାରୁ ସୀତାଙ୍କୁ ପୁଷ୍ପକ ବିମାନରେ ବସାଇ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ମାର୍ଗରେ ଗୋଟି ଗୋଟି କରି ତୀର୍ଥ ଓ ଦର୍ଶନୀୟବସ୍ତୁ ବର୍ଣ୍ଣନା କବି ମୂଳ ସଂସ୍କୃତ ରାମାୟଣର ଅନୁକରଣରେ ନଭୁବା କାଳିଦାସଙ୍କ ରଘୁବଂଶ କାବ୍ୟର ଅବଲମ୍ବନରେ କରିଥିବା ଜଣା-ଯାଏ । ଉପରୋକ୍ତ ଦୁଇଟି ଗ୍ରନ୍ଥରେ ଓଡ଼ିଶାର ବହୁ ସ୍ଥାନ ଓ ତୀର୍ଥକ୍ଷେତ୍ରର ବର୍ଣ୍ଣନା ଦେଖାଯାଏ ନାହିଁ । କିନ୍ତୁ କବି ଏହି ପ୍ରସଙ୍ଗରେ ଭାରତର ବହୁ ଋଷି ଆଶ୍ରମ, ନଦୀ ଓ ତୀର୍ଥ କ୍ଷେତ୍ର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଉତ୍କଳର ବହୁ ତୀର୍ଥକ୍ଷେତ୍ର ନଦୀ ଓ ଶୈବପୀଠ ଗୁଡ଼ିକୁ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରି ସୀତାଙ୍କୁ ସେ ଗୁଡ଼ିକୁ ଦେଖାଇବାରେ ଅବହେଳା ପ୍ରଦର୍ଶନ କରିନାହାନ୍ତି । ବନବାସ ସମୟରେ ପବିତ୍ର ଋଷିକୁଲ୍ୟା ତଟିନୀ ନିକଟସ୍ଥ ଉତ୍ତର ପାର୍ଶ୍ୱରେ ଅବସ୍ଥିତ ପ୍ରତାପୁରଠାରେ ଭୁମ୍ୱେଶ୍ୱର ମହାଦେବ ଓ ତତ୍ପାର୍ଶ୍ୱରେ ଲକ୍ଷ୍ମଣାଚଣ୍ଡୀ ପୁଣି ଏକାମ୍ରକାନନରେ ରାମେଶ୍ୱର, ଚନ୍ଦ୍ରୋତ୍ପଳା ନଦୀନିକଟରେ ବାଲୁଙ୍କେଶ୍ୱର, ଭାସ୍କର ତୀର୍ଥରେ ବିଲ୍ୱେଶ୍ୱର, ବିଶ୍ୱନାଥ ଓ ରାମଚଣ୍ଡୀଙ୍କୁ ପ୍ରତିଷ୍ଠା କରି ତାଙ୍କୁ ଆରାଧନା କରିବା ପରେ ଦାରୁବ୍ରହ୍ମ ମୂର୍ତ୍ତିଙ୍କୁ ଦର୍ଶନ କରିବା ପାଇଁ ନୀଳାଚଳକୁ ଯାତ୍ରା କରିଥିବା ବିଷୟ ଉଲ୍ଲେଖ କରିଛନ୍ତି । ଲୀଳା ମାଧ୍ୟମରେ ସମାଜରେ ଧାର୍ମିକ ଓ ନୈତିକ ଚେତନା ଜାଗ୍ରତ କରିବା ସଙ୍ଗେ ସଙ୍ଗେ ଉତ୍କଳୀୟ ଜନତାଙ୍କୁ ଜାତୀୟ ଭାବରେ ଉଦ୍‌ବୁଦ୍ଧ କରିବା ପାଇଁ କବି ତାଙ୍କ ଲୀଳା କାବ୍ୟରେ ଏହି ବିଷୟ ଗୁଡ଼ିକ ଉଲ୍ଲେଖ କରି ଉତ୍କଳୀୟମାନଙ୍କ

ଦୃଷ୍ଟି ସେ ଗୁଡିକ ପ୍ରତି ଆକର୍ଷଣ କରି ପାରିଛନ୍ତି । କବି ଦେଶବାସୀଙ୍କ ପ୍ରାଣରେ ସ୍ୱଦେଶ ଓ ସ୍ୱଜାତି ପ୍ରତି ଗଭୀର ଆନୁଗତ୍ୟ ଓ ସ୍ୱଦେଶର କଲ୍ୟାଣ ନିମନ୍ତେ ଜନ ଜୀବନରେ ଜାଗୃତି ସଞ୍ଚାର କରିବା ଉଦ୍ଦେଶ୍ୟରେ ଉପରୋକ୍ତ ସ୍ଥାନ ଗୁଡ଼ିକର ତୀର୍ଥ ମହିମା ବନ୍ଦନା କରି ସ୍ୱଦେଶ ପ୍ରେମର ଦୃଷ୍ଟାନ୍ତ ଦେଇଛନ୍ତି । ଏହି ତୀର୍ଥ କ୍ଷେତ୍ର ଗୁଡିକର ମାହାତ୍ମ୍ୟ ବର୍ଣ୍ଣନାରେ ସେ କିପରି ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିପାରିଛନ୍ତି ତାହା ନିମ୍ନରେ ଦର୍ଶାଯାଇଥିବା କତିପୟ ପଦରୁ ଜଣାଯାଏ ।

— ଯାଜପୁର ଗ୍ରାମକେନ୍ଦ୍ରରେ—

ଏହି ଋଷିକୁଲ୍ୟା ତୀରରେ ଉମାବର ଆରାଧି

ମୁନି ଚିହ୍ନାଦେଇ ଏଠାରୁ ଗଲା ଲବଣାମ୍ବୁଧି ।

ଏହିଠାରେ ଶାକମ୍ଭରୀଙ୍କ ସଉମିତ୍ରୀ ପୂଜିଲା

ଏହି ଦେଶ ନାମ ସେ ଦିନୁ ଲକ୍ଷ୍ମଣଚଣ୍ଡୀ ହେଲା ।

ଖ୍ୟାତେ ଧବଳକୋଟ ନଗରେଶ ରାମ ପ୍ରକାଶି ଏହା

ତ୍ରିପୁରାକୁ ବୋଲନ୍ତି ମୁନି ତୁ ବୃହାଁ ଶିରାକ୍ଷଦେହା ।

— ଯାଜପୁର —

ହରଇଛି ଏ ସିନ୍ଧୁ ତଟରେ ମାନଚିର

ଦାରୁବ୍ରହ୍ମ ରୂପେ ଏଥେ ବସିଛନ୍ତି ହରି ଯେ

ଏ ଅର୍କ କ୍ଷେତ୍ର ସୂର୍ଯ୍ୟଦେବଙ୍କ ନିବାସ

ଏହି ଚନ୍ଦ୍ରଭାଗା ତୀର୍ଥ ଦେଖ ନାରାୟଣ ।

ଏଠାରେଟି ଏକାମ୍ବର ବନ ପ୍ରେମଟିଳ

ଏଠାରେ ଭୁବନେଶ୍ୱର ନାମେ ଲିଙ୍ଗ ହେଲା ।

ଏଣେ ନେତ୍ର ପକାରେ ଶାରଦା କଣା ଋଷି

ଏଟି ଅଟେ ହୀରପୁ ଦକ୍ଷିଣ ବାରାଣସୀ ।

କବି ନିଜର ପରିଚୟ ସମ୍ବନ୍ଧରେ ନାମ ଉପାଧି ଓ ବଂଶ ବ୍ୟତୀତ ଅନ୍ୟ ବିଶେଷ କିଛି ତଥ୍ୟ ତାଙ୍କ ଗ୍ରନ୍ଥରେ ଉଲ୍ଲେଖ କରିନାହାଁନ୍ତି । ସେ ବିଭିନ୍ନ ଛାନ୍ଦ ଶେଷରେ ରଘୁନାଥ ସିଂହ, ଧରାକୋଟ ଭୂପତି, ଧରାକୋଟ ଅବନୀପୁରନ୍ଦର ଓ ସିଂହ ନରପତି ବୋଲି ଉଲ୍ଲେଖ କରିଛନ୍ତି । ଉତ୍ତରାକାଣ୍ଡ ୩୮୬ ଛାନ୍ଦରେ ସେ ନିଜକୁ ନଳବଂଶୀ ରାଜା ବୋଲି ପରିଚୟ ଦେଇଛନ୍ତି ।

ଯଥା :—   ଭାଷେ ଧରାକୋଟ ନଳବଂଶୀ ସିଂହ ରାଜା
ରଖାଅ ମୋ ଚିତ୍ତେ ତବ ଚରିତେ ମୋ ମଜ୍ଜା ।

ରଘୁନାଥ ସିଂହଙ୍କ ବ୍ୟତୀତ ଅନ୍ୟ କୌଣସି ଧରାକୋଟର ରାଜବଂଶ କବି ନିଜକୁ ନଳବଂଶ ସମ୍ଭୂତ ବୋଲି ଉଲ୍ଲେଖ କରିନାହାଁନ୍ତି । କିନ୍ତୁ ଖଡ଼ିସିଙ୍ଗି ରାଜ୍ୟର ଅନ୍ୟ ଏକ ଅଂଶୀଦାର ଶେରଗଡ଼ର ରାଜା ଗୋପୀନାଥ-ସିଂହଙ୍କ ଦ୍ୱାରା ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଲିଖିତ "ମଙ୍ଗଳଗିରି ବିହାରୀ" ଗ୍ରନ୍ଥରେ କବି ତାଙ୍କ ବଂଶ ପରିଚୟ ସମ୍ବନ୍ଧରେ ନିମ୍ନମତେ ସୂଚନା ଦେଇଛନ୍ତି ।

ଯେଉଁ କୁଳରେ ଶସ୍ତ ଇଷ୍ଟ ଦୁର୍ଗାଦେବୀ
ପବିତ୍ରେ ଗୋଟି ନଳବଂଶରେ ସମ୍ଭବ
ସେ ବଂଶରେ ବଳୀୟାର ସିଂହ ନାମେ ରାଜ
ପର୍ଶୁରାମ ସିଂହ ନୃପ ତାହାଙ୍କ ତନୁଜ
ଜଗନ୍ନାଥ ସିଂହ ନୃପ ହେଲେ ତାଙ୍କ ସୁତ
କୃପାସିନ୍ଧୁ ନରପତେ ତହିଁରୁ ସମ୍ଭୂତ
ତାହାଙ୍କ ତନୟ ହରେକୃଷ୍ଣ ସିଂହ ନୃପ
ଅରି ଅନ୍ଧକାର ଧ୍ୱଂସେ ହଂସ ଯାର କୋପ

ତାଙ୍କର ଜ୍ୟେଷ୍ଠ ପୁତ୍ର ଅଟଇ ଯେ ମୂର୍ଦ୍ଧ୍ନି
ଗୋପୀନାଥ ସିଂହ ନରବଂଶ ନାମ ବନ୍ଧ୍ନି ।

ଉଲ୍ଲିଖିତ ବୃତ୍ତାନ୍ତରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଖିଡିସିଂଗି ରାଜବଂଶର ରାଜାମାନେ ନଳବଂଶ ସମ୍ଭୂତ ଅଟନ୍ତି । ରାଜା ରଘୁନାଥ ସିଂହ ନିଜ ବଂଶର କଥା ତାଙ୍କ ଗ୍ରନ୍ଥରେ ଉଲ୍ଲେଖ କରି ନିଜକୁ ନଳବଂଶ ସମ୍ଭୂତ ବୋଲି କହି ନିଜର ଗୌରବ ବଢ଼ାଇ ପାରିଛନ୍ତି ।

ସାଙ୍ଗୀତିକତା ଦୃଷ୍ଟିରୁ ଏହି ଗ୍ରନ୍ଥର ଛାନ୍ଦ ଖୁବ୍ ଜନପ୍ରିୟ ହୋଇପାରିଛି । ଏଗୁଡିକ ଅତ୍ୟନ୍ତ ସରଳ, ତରଳ ଓ ଆଳଂକାରିକ ଭାଷାରେ ଲେଖା ଯାଇଥିବା ଯୋଗୁଁ ଗଞ୍ଜାମର ବହୁ ଗ୍ରାମ୍ୟ ନାଟ ଆଖଡ଼ାରେ ଓ ସୁଧୀବର୍ଗଙ୍କ ଭିତରେ ଖୁବ୍ ଆଦର ଓ ପ୍ରସାର ଲାଭକରିଛି । କବି ଏହି ରାମରସ ଚରିତାମୃତ ସାହିତ୍ୟ ଜଗତରେ କୀର୍ତ୍ତି ଅର୍ଜନ କରିଯାଇଛନ୍ତି ।

ରଘୁନାଥ ସିଂହ ସାହିତ୍ୟ ସାଧନାରେ ମନୋନିବେଶ କଲେ ମଧ୍ୟ ପ୍ରଜା ପାଳନରେ ଆଦୌ ଅବହେଳା କରୁନଥିଲେ । ସେ ବହୁ ମନ୍ଦିର ଓ ଧର୍ମାନୁଷ୍ଠାନର ପରିଚାଳନା ଦାୟିତ୍ୱରେ ରହି ବହୁ ଉନ୍ନୟନ ମୂଳକ କାମ କରିଥିବା ବିଷୟ ୧୮୭୨ ମସିହାର ସରକାରୀ ନଥିପତ୍ରରୁ ଜଣାଯାଏ । ଆସିକା ଖମ୍ବେଶ୍ୱରୀ ପାଟଣାରେ ବିଜେ ହୋଇଥିବା ଜଗନ୍ନାଥ ଓ ସୁନାମ୍ବିରେ ବିଜେ ହୋଇଥିବା ନୃସିଂହ ମହାପ୍ରଭୁଙ୍କୁ ଭୂସମ୍ପତ୍ତି ଦାନ କରିଥିଲେ । ସେ ନିଜେ ସାରସ୍ୱତ ସାଧନାରେ ଯେ ବ୍ରତୀଥିଲେ ତାହା ନୁହେଁ ଧରାକୋଟ ଓ ଅନ୍ୟାନ୍ୟ ଅଞ୍ଚଳର ଯେଉଁ ସୁଧୀବର୍ଗ ଓ ପଣ୍ଡିତମାନେ ସାହିତ୍ୟ ସାଧନାରେ ମନୋନିବେଶ କରୁଥିଲେ ସେମାନଙ୍କର ପୃଷ୍ଠପୋଷକତା କରି ସେମାନଙ୍କୁ ଉତ୍ସାହ ପ୍ରଦାନ କରୁଥିଲେ । ଏହି ମହାନୁଭବତା ଓ ଉଦାରତା ଯୋଗୁଁ ଧରାକୋଟ ତଥା ଗଞ୍ଜାମବାସୀ ତାଙ୍କର ଅକ୍ଷୟକୀର୍ତ୍ତି ଘୋଷଣା କରୁଛନ୍ତି ।



# କବିରତ୍ନ ପୁରୋହିତ ସଦାଶିବ ଉଦ୍‌ଗାତା

ଋଷିକୁଲ୍ୟା ନଦୀର ଉତ୍ତର ତୀରରେ ଅବସ୍ଥିତ ତଲେଓମାଦେଇପୁର ଶାସନରେ ସ୍ୱର୍ଗୀୟ ଚନ୍ଦ୍ରଶେଖର ଉଦ୍‌ଗାତାଙ୍କ ଔରସରେ ଅଷ୍ଟାଦଶ ଶତାବ୍ଦୀର ଅଷ୍ଟମ ଦଶକରେ କବି ଜନ୍ମଗ୍ରହଣ କରିଥିଲେ । ସେ ପ୍ରାୟ ୭୫ ବର୍ଷ ଜୀବିତ ରହି ଊନବିଂଶ ଶତାବ୍ଦୀର ଷଷ୍ଠ ଦଶକରେ ଦେହତ୍ୟାଗ କରିଥିବା ବିଷୟ ତାଙ୍କ ବଂଶଧର ମାନଙ୍କଠାରୁ ଜଣାଯାଏ । ସଂସ୍କୃତ ଶ୍ଳୋକାକାରରେ "ଅଭିନବ ଜଗନ୍ନାଥ ପ୍ରସ୍ତାବ" ଗ୍ରନ୍ଥର ଲେଖକ ଆସିକାର ପ୍ରଖ୍ୟାତ ପଣ୍ଡିତ ନରସିଂହ ଦାସଙ୍କର ସେ ଅନ୍ତରଙ୍ଗ ବନ୍ଧୁଥିଲେ । ଉଭୟେ ରାଜା ରଘୁନାଥ ସିଂହଙ୍କ ସମସାମୟିକ ଥିଲେ । ଉଭୟ ସଦା ସଂସ୍କୃତ ସାହିତ୍ୟ ଆଲୋଚନା ଓ ଗ୍ରନ୍ଥରଚନାରେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ପୁରୋହିତ ସଦାଶିବ ଉଦ୍‌ଗାତା ଗୀତ ଗୋବିନ୍ଦର ସୁଲଳିତ ପଦାବଳୀର ଅନୁକରଣରେ ସମୁଦ୍ର ମନ୍ଥନ ବିଷୟକୁ ଆଧାର କରି "ପ୍ରମୁଦିତ ଗୀତଗୋବିନ୍ଦ" ନାମରେ ଏକ "ଛ" ଅଙ୍କ ବିଶିଷ୍ଟ ନାଟକ ସଂସ୍କୃତ ଭାଷାରେ ରଚନା କରିଛନ୍ତି । କବିଙ୍କ ପାଣ୍ଡିତ୍ୟ ଓ ରଚନା ପାଟବରେ ମୁଗ୍‌ଧ ହୋଇ ତତ୍କାଳୀନ ଧରାକୋଟ ରାଜା ରଘୁନାଥ ସିଂହ ତାଙ୍କୁ କବିରତ୍ନ ପୁରୋହିତ ଉପାଧିରେ ଭୂଷିତ କରିଥିଲେ । କର୍ମକାଣ୍ଡ ଓ ଯାଗଯଜ୍ଞ ବିଷୟରେ ତାଙ୍କର ଅସାଧାରଣ ଜ୍ଞାନ ଥିଲା । ନାଟକର ଶେଷରେ କବି ନିଜର ସଂକ୍ଷିପ୍ତ ପରିଚୟ ପ୍ରଦାନ କରିଛନ୍ତି ।

" ଅସ୍ତି ତାବତ୍ ବତ୍ସକୁଳ କୈରବାକର କଳାକରାୟ ମାଣସ୍ୟ
ପ୍ରଥିତ କବିରତ୍ନ ପୁରୋହିତ ରାଜ ପଦବିକସ୍ୟ ସଦାଶିବୋଦ୍‌ଗାତୁରଭିନବଂ
ପ୍ରମୁଦିତ ଗୀତ ଗୋବିନ୍ଦ ନାମ ରୂପକଂ ତତ୍ ପ୍ରଦର୍ଶ୍ୟ ସଭାସଦ୍

ସନ୍ତୋଷେଣାସ୍ମାନଂ କୃତାର୍ଥୟାମଃ "

ଅର୍ଥ :— ବହ୍ନିକୁଳଙ୍କ କୈରବ ବା କଇଁ ସମୂହ ତାର ବିକାଶ ପାଇଁ ଚନ୍ଦ୍ର ସଦୃଶ୍ୟ ଅଟନ୍ତି—ପୁଣି ବିଖ୍ୟାତ କବିରତ୍ନ ପ୍ରଶସ୍ତିତ ରାଜପଦବୀକୁ ଧାରଣ କରିଛନ୍ତି—ଏପରି ଯେଉଁ କବି ସଦାଶିବ ଉଦ୍‌ଗାତା ତାଙ୍କର ନୂତନ ପ୍ରମୁଦିତ ଗୀତ ଗୋବିନ୍ଦ ନାମ ରୂପକକୁ ପ୍ରଦର୍ଶନ କରି ସଭ୍ୟ ସଦ୍‌ଗଣଙ୍କର ସନ୍ତୋଷରେ ନିଜକୁ କୃତାର୍ଥ ମନେ କରୁଅଛି । ଏହି ଗୀତ ଗୋବିନ୍ଦର ପ୍ରଥମ ଶ୍ଳୋକ ସୁଧୀରସ ପିପାସୁ ପାଠକମାନଙ୍କ ରସାସ୍ୱାଦନ ପାଇଁ ଉଦ୍ଧାର କରାଗଲା ।

ଅସ୍ତୋ ଜାତାନି ଚନ୍ଦ୍ରଂ ଦର ମମୃତ ଘୃଣିଃ କୈରବଂ ଚନ୍ଦ୍ରବାକା
ଯେତେ ପାଦାଦି ସଙ୍ଗ ତ୍ରିକଣ୍ଠନ ପଣ୍ଡିତ ଶ୍ଳିଷ୍ଟ ମଧ୍ୟା ସ୍ୟତେଯାନ୍
ଶସ୍ତ୍ରୋମିଙ୍ଗଳ୍ପ ଚର୍ଚ୍ଚାଗମ ମଦ ବହିତାଃ କୌଳୁକାଧାନ ରମ୍ୟାଃ
କ୍ରୀଡ଼ା ସମ୍ଭାର ଯୋଗ୍ୟା ବଦଧିଭୁ କୁଶଳଂ ନନ୍ଦ୍ୟସୁନୋ ବୃନ୍ଦାବଃ ॥

ଏହି ଗ୍ରନ୍ଥ ଏଯାଏଁ ମୁଦ୍ରିତ ଆକାରରେ ପ୍ରକାଶ ପାଇନାହିଁ । ଏହାର ପାଣ୍ଡୁଲିପି ଓଡ଼ିଶା ସାହିତ୍ୟ ମ୍ୟୁଜିଏମରେ ସଂରକ୍ଷିତ ହୋଇଛି ।



## ଗୋବିନ୍ଦ ଦାସ

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଗୋବିନ୍ଦ ଦାସ ନବଶାସନ ଅନ୍ତର୍ଗତ ରାଜେନ୍ଦ୍ରପୁରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଅନନ୍ୟ ସାଧାରଣ ଧୀଶକ୍ତି ଓ ଅସାଧାରଣ ପାଣ୍ଡିତ୍ୟ ଯୋଗୁଁ ସେ ଧରାକୋଟ ତଥା ଗଞ୍ଜାମର ବିଭିନ୍ନ ରାଜଦରବାରରେ ପ୍ରତିଷ୍ଠା ଲାଭ କରିଥିଲେ । ସଂସ୍କୃତ ସାହିତ୍ୟ ଓ ଧର୍ମଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କର ଅଗାଧ

ପାଣ୍ଡିତ୍ୟ ଥିଲେ । ତାଙ୍କର ଅଗାଧ ପାଣ୍ଡିତ୍ୟ ଓ ଏକାନ୍ତ ଧର୍ମନିଷ୍ଠାରେ ଆଗ୍ରହ ପ୍ରକାଶକରି ତଦାମାନ୍ତକ ମଞ୍ଜୁଷାଧିପତି ଶ୍ରୀନିବାସ ରାଜମଣି ତାଙ୍କୁ ତାଙ୍କର ସଭାପଣ୍ଡିତରୂପେ ରଖିଥିଲେ । ହିନ୍ଦୁ ଧର୍ମ ଓ ସମାଜର ସୁରକ୍ଷା ଓ ନିୟନ୍ତ୍ରଣ ନିମିତ୍ତ ସେ "ସର୍ବ ସ୍ମୃତିସାର ସମୁଚ୍ଚୟ" ନାମକ ଶ୍ରୀନିବାସ ରାଜମଣି ନିଜ ରାଜ୍ୟରେ ଗୋଟିଏ ଅଗ୍ନିଷ୍ଟୋମ ଯଜ୍ଞ କରାଇବା ନିମନ୍ତେ ପଣ୍ଡିତ ପ୍ରବର ଗୋବିନ୍ଦ ଦାସଙ୍କୁ ଧରାକୋଟରୁ ନିମନ୍ତ୍ରଣକରି ନେଇଥିଲେ । ଏ ମହାଶୟ ସଫଳତାର ସହ ଯଜ୍ଞ ସମାପନ କରିଥିବାରୁ ରାଜା ତାଙ୍କୁ ଗୋଟିଏ ଉପାଧି ପ୍ରଦାନ କରିବା ସକାଶେ ଇଚ୍ଛାପୋଷଣ କରିଥିଲେ । କିନ୍ତୁ ପଣ୍ଡିତ ମହାଶୟ ଜନ୍ମରୁ ଖ୍ଲୋଟାଥିବାରୁ ରାଜାଙ୍କୁ ଖଞ୍ଜ ଉପାଧି ପ୍ରଦାନ କରିବା ନିମନ୍ତେ ଅନୁରୋଧ କରିଥିଲେ । ସେହି ଦିନଠାରୁ ସେ 'ଖଞ୍ଜ'ବା 'ଖ୍ଲୋଟା ଗୋବିନ୍ଦ ଦାସ ନାମରେ ପରିଚିତ ହେଲେ ।

ସେ ଖଣ୍ଡିଏ ଉପାଦେୟ ଧର୍ମଶାସ୍ତ୍ର ଗ୍ରନ୍ଥ ପ୍ରଣୟନ କରିଥିଲେ । ପଣ୍ଡିତ ପ୍ରବର ମଞ୍ଜୁଷାରେ ପ୍ରଚଳିତ 'ବ୍ରହ୍ମୋତ୍ସବ' 'ରାତିଯାତ୍ରା' ପ୍ରଭୃତିଙ୍କୁ ଏଥିରେ ଉଲ୍ଲେଖକରି ଏହାର ବୈଶିଷ୍ଟ୍ୟ ବୃଦ୍ଧି କରାଇଛନ୍ତି । ନିଖିଳ ସ୍ମୃତି ଶାସ୍ତ୍ର ଓ ବ୍ୟବସ୍ଥା ମନ୍ଥନ ପୂର୍ବକ ଏହି ଗ୍ରନ୍ଥରେ ବର୍ଣ୍ଣାଶ୍ରମ ଧର୍ମୀ ଆର୍ଯ୍ୟ ଜନ ସାଧାରଣଙ୍କର ନିତ୍ୟ ନୈମିତ୍ତିକ କାର୍ଯ୍ୟାନୁଷ୍ଠାନ ସକାଶେ ସମସ୍ତ ନିୟମ ଲିପିବଦ୍ଧ କରି ଗ୍ରନ୍ଥର ଆଦ୍ୟରେ ସ୍ୱୀୟ ପୃଷ୍ଠ ପୋଷକ ମଞ୍ଜୁଷାଧିପତି ଶ୍ରୀନିବାସ ରାଜମଣି ଓ ତଦୀୟ ପିତୃପିତାମହ ଲକ୍ଷ୍ମଣ ରାଜମଣି ଓ ହରିଚରଣ-ରାଜମଣିଙ୍କ ପ୍ରଶସ୍ତି ଗାନକରି ତିନିଗୋଟି ଶ୍ଳୋକ ରଚନାକରି ଗ୍ରନ୍ଥ ଆଦ୍ୟରେ ଉଲ୍ଲେଖ କରିଛନ୍ତି । କିନ୍ତୁ ସେ ଗ୍ରନ୍ଥ ରଚନାକାଳ ଓ ନିଜର ବଂଶର ପରିଚୟ ନିଜ ଗ୍ରନ୍ଥରେ ଉଲ୍ଲେଖ କରିନାହାନ୍ତି । ଏହିଗ୍ରନ୍ଥ ସେ ୧୮୨୦ ଖ୍ରୀ–୧୮୪୦ ଖ୍ରୀ ଭିତରେ ରଚନା କରିଥିବା ଜଣାଯାଏ । ଗ୍ରନ୍ଥରେ ଉଲ୍ଲିଖିତ ଥିବା ଶ୍ଳୋକର ତୃତୀୟ ପାଦଟି ଉଦାହୃତ କରାଗଲା ।

"ତସ୍ୟାମ୍ବଜୋଦ୍ଧଂ ତଦନନ୍ତରପ୍ତ ପ୍ରଜାବଳୀ ପାଳନ କର୍ମଶୀଳଃ
ଶ୍ରୀଶ୍ରୀନିବାସୋ ନୃପରତ୍ନ ରାଜଦେବଃ ସଦୋପାସିତ ବାସୁଦେବଃ"

ଗ୍ରନ୍ଥଆରମ୍ଭରେ ସେ କୌଣ୍ଡିନ୍ୟ ବଂଶୀୟ କୃଷ୍ଣନାମକ ଶ୍ୱଶୁରଙ୍କୁ ବନ୍ଦନା କରିଛନ୍ତି । ତାଙ୍କର ବଂଶଧରମାନେ ଅଦ୍ୟାପି ଧରାକୋଟ ରାଜେନ୍ଦ୍ରପୁରରେ ବାସ କରୁଛନ୍ତି । ଲେଖକଙ୍କ ବଂଶଧର ମାନଙ୍କ ଭିତରୁ କେତେକ ପୂର୍ବରୁ ଘୁମୁସର ଧୂଆଁଗୁଇ ଗ୍ରାମରେ ଓ ମଞ୍ଜୁଷାରେ ବାସ କରୁଥିବା ଜଣାଯାଏ । ଧରାକୋଟ ତଥା ଗଞ୍ଜାମରେ ସେ ଗ୍ରୈଷ୍ଠା ଗୋବିନ୍ଦ ଦାସ ନାମରେ ପରିଚିତ ।

ସେ 'କାମ ବଞ୍ଜନ' ନାମକ ଏକ ଗ୍ରନ୍ଥ ମଧ୍ୟ ରଚନାକରି ଶ୍ରୀନିବାସ ରାଜମଣିଙ୍କ ନାମରେ ଭଣିତା କରିଥିବା ଜଣାଯାଏ ।

ଏହି ଧର୍ମଗ୍ରନ୍ଥ ଏପର୍ଯ୍ୟନ୍ତ ମୁଦ୍ରିତ ଆକାରରେ ପ୍ରକାଶ ପାଇନାହିଁ କିନ୍ତୁ ତାଳପତ୍ରରେ ଲିଖିତ ଗ୍ରନ୍ଥଟି ଧରାକୋଟର ପଣ୍ଡିତ ମାନଙ୍କ ନିକଟରେ ଦେଖିବାକୁ ମିଳିବ ।

## ଭରତ ସେଣ

ରାଜା ରଘୁନାଥ ସିଂହଙ୍କ ରାଜତ୍ୱ ସମୟରେ ଧରାକୋଟ ଗଡ଼ରେ ଅଷ୍ଟାଦଶଶତାବ୍ଦୀର ନବମ ଦଶକରେ କବି ଭରତସେଣ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ବାସୁଦେବ ସେଣ । ସେ ସୁଲୋଚନା ଓ ସୁଭଦ୍ରାପରିଣୟ ନାମକ ଦୁଇଖଣ୍ଡି କାବ୍ୟ ରଚନା କରି ଉତ୍କଳ ସାହିତ୍ୟର ପ୍ରଭୂତ ଉନ୍ନତି ସାଧନ କରିଯାଇଛନ୍ତି । ଉତ୍କଳ ସାହିତ୍ୟର ଇତିହାସ ସଂକଳନ କରିବାକୁ ଗଲେ ତାଙ୍କର ନାମ ଉଲ୍ଲେଖ ବିନା ଏହା ଅସମ୍ପୂର୍ଣ୍ଣ ରହିବ । ଏପର୍ଯ୍ୟନ୍ତ ଉତ୍କଳ ସାହିତ୍ୟ ଭଣ୍ଡାରରେ ଯେତେ କାବ୍ୟ ରତ୍ନ ସଞ୍ଚିତ ଅଛି, ତା ମଧ୍ୟରେ କବିଙ୍କ ରଚିତ ସୁଲୋଚନା ପରିଣୟ କାବ୍ୟ ଯେ ଶ୍ରେଷ୍ଠସ୍ଥାନ ଅଧିକାର କରିବ ଏଥିରେ

ସନ୍ଦେହର ଅବକାଶ ନାହିଁ । ଉତ୍କଳ ସାହିତ୍ୟରେ 'ସୁଲୋଚନା' କାବ୍ୟ ଅନ୍ୟକେହି କବି ଏ ପର୍ଯ୍ୟନ୍ତ ରଚନା କରିଥିବା ଜଣାଯାଏ ନାହିଁ ।

କବିଙ୍କ ଦ୍ୱାରା ରଚିତ ଏହି କାବ୍ୟଟି ୧୮୯୫ ଖ୍ରୀ. ଅରୁଣୋଦୟ ଯନ୍ତ୍ରାଳୟରେ ସ୍ୱର୍ଗୀୟ ଗୋବିନ୍ଦ ରଥଙ୍କ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ହୋଇଛି । ଏହି କାବ୍ୟର ଶେଷ ଛାନ୍ଦରେ କବି ନିଜର ପରିଚୟ ଦେବା ସଙ୍ଗେସଙ୍ଗେ ନିଜର ପୃଷ୍ଠପୋଷକ ରାଜା ରଘୁନାଥ ସିଂହଙ୍କ ରାଜତ୍ୱ ସମ୍ପର୍କରେ ସଂକ୍ଷିପ୍ତରେ ନିମ୍ନଲିଖିତ ମତେ ଦର୍ଶାଇଛନ୍ତି :—

ଏସଉକ ସତରଶ ବୟାସି ଶକାବ୍ଦ
ସୁଗଣକ ଗଣନାରେ ହୋଇଥିଲା ସିଦ୍ଧ
ମହୋଦଧି ସଙ୍ଗମିନୀ ଋଷିକୁଲ୍ୟାତଟ
ସନ୍ନିକଟେ ପ୍ରକଟ ହୋଇଛି ଧରାକୋଟ
କବି ସର୍ବଜ୍ଞପଣ୍ଡିତ ଏରାଜ୍ୟେ ଉତ୍ପତ୍ତି
ଦେବ ବ୍ରାହ୍ମଣେ ସର୍ବଦା ସମ୍ପୂର୍ଣ୍ଣ ଅଛନ୍ତି
ରଘୁନାଥ ସିଂହ ନାମେ ଏହିଦେଶ ରାଜା
ପୁତ୍ରକଳ୍ପିତ କରିଣ ପାଳୁଛନ୍ତି ପ୍ରଜା
ଦାନେ ମାନେ ଅଷ୍ଟ ଅବଧାନସେ ନୃପତି
ଶୂର ସୁନ୍ଦର ପଣରେ ନଥିବେ ଧରଣୀ
ଆଜନ୍ମରୁ ତାହାଙ୍କର ଅଟେ ମୁଁ କୋସ୍ତୁର
ବର୍ତ୍ତିରେ ଶୂଦ୍ର ପଦାତି ବଦ୍ୟାଏକା
ଏ ରାଜ୍ୟ ରାଜଧାନୀରେ ନିଜ ଘର ମୋର
ବାସୁଦେବ ସେଣାଙ୍କର କନିଷ୍ଠ କୁମର

ଉଲ୍ଲିଖିତ ପଂକ୍ତିରୁ ଜଣାଯାଏ କବି ରଘୁନାଥ ସିଂହଙ୍କ ସମସାମୟିକ ଥିଲେ ଓ ତାଙ୍କର ପଦାତିକ କାମରେ ନିଯୁକ୍ତ ରହି ଏହି କାବ୍ୟ ସମାପ୍ତ କରିଥିଲେ ।

ରାଜା ରଘୁନାଥ ସିଂହ ୧୮୩୧ ଖ୍ରୀ. ରୁ ୧୮୬୩ ଖ୍ରୀ. ଯାଏ ରାଜତ୍ୱ କରିଥିବା ବିଷୟ ପୂର୍ବରୁ ଉଲ୍ଲେଖ କରାଯାଇଛି । କବି ଏହି କାବ୍ୟ ୧୭୮୨ ଶକାବ୍ଦ ବା ୧୮୬୦ ଖ୍ରୀ. ରେ ରଚନା କରିଥିବା ବିଷୟ ତାଙ୍କ କାବ୍ୟରୁ ଜଣାଯାଏ । କବି ୮୦ ବର୍ଷ ଜୀବିତ ଥିବା ଧରାକୋଟର ବୟୋବୃଦ୍ଧ ଲୋକଙ୍କ ଠାରୁ ଜଣାଗଲେ ହେଁ ତାଙ୍କ ଜନ୍ମ ଓ ମୃତ୍ୟୁର ଠିକ୍ ମାସ ଓ ସମ୍ବତ୍ସର ଜଣାଯାଏ ନାହିଁ ।

ଭରତ ସେଣ ପଦାତିକ କାମକରୁଥିବା ସଙ୍ଗେ ସଙ୍ଗେ ଅବସର ସମୟରେ ନିଜବାସଭବନ ନିକଟସ୍ଥ ଶୃଙ୍ଗଆ ପର୍ବତ ପାଦ ଦେଶରେ ଅବସ୍ଥିତ ଏକ ନିଘଞ୍ଚ ଆମ୍ର ତୋଟାରେ ବସି ତାଙ୍କର କାବ୍ୟରଚନା କରିଥିଲେ । ସେ ଯେଉଁ ସ୍ଥାନରେ ବସି ଲେଖୁଥିଲେ ଅଦ୍ୟାପି ତାହା ସେଣ ତୋଟା ନାମରେ ପରିଚିତ । ଦୈବୀ ଶକ୍ତି ବିନା ଏ କାବ୍ୟ ସୌଧ ନିର୍ମାଣକରିବା ସମ୍ପୂର୍ଣ୍ଣ ଅସମ୍ଭବ ମନେକରି କବି କାବ୍ୟର ପ୍ରାରମ୍ଭରେ ସମସ୍ତ ଦେବ ଦେବୀଙ୍କୁ ବନ୍ଦନା କରିବାକୁ ଭୁଲିନାହାନ୍ତି ।

ବିଷ୍ଣୁ, ଶିବ, ଦୁର୍ଗା, ଗଣପତିଙ୍କ ସ୍ତୁତି
ପ୍ରବନ୍ଧ ଆଦ୍ୟରେ କରି କବି କରନ୍ତି ।
ଶ୍ରୀ ନାରାୟଣ ଚରିତ ଯହିଁରେ ପୂର୍ଣ୍ଣ ।
ବହୁତ ସ୍ତୁତି ବିଧାନେ କି ପ୍ରୟୋଜନ ।।

ସେ ସମୟରେ ଓଡ଼ିଆ ଭାଷାରେ ରଚନା ପ୍ରତି ଲୋକଙ୍କର ଆଗ୍ରହ ବୃଦ୍ଧି-ପାଉଥିଲେ ମଧ୍ୟ ସଂସ୍କୃତର ଗୌରବ ଓ ମୋହ ତୁଟିନଥିଲା । ସେହି ହେତୁ କବି ନିଜ ମାତୃଭାଷାରେ କାବ୍ୟଟି ରଚନା କରୁଥିବାରୁ ଓ ନିଜେ ଶୂଦ୍ରଜାତିରେ ଜନ୍ମିଥିବା ହେତୁ ନିଜର ଗୌଣ ମନୋଭାବ ପ୍ରକାଶ କରି ଗ୍ରନ୍ଥ ପ୍ରତି ପାଠକ-ମାନଙ୍କ ରୁଚି ଓ ଆଗ୍ରହ ସୃଷ୍ଟି ପାଇଁ କେତେକ ଉଦାହରଣ ପ୍ରଥମ ଛାନ୍ଦରେ ଉଲ୍ଲେଖ କରିଛନ୍ତି ।

ପୁରାଣକୁ ଶୁଣିଁ ଶେଷ କହୁଅଛି ମୁହିଁ
ମୋର ଅପରାଧ କେବେ ନ ଘେନିବ କେହି ହେ ।
ଦେଖ ଚଣ୍ଡାଳ ମୁଖରୁ ହରିନାମ ଜାତ
ହୋଇକରି ଜଗତେ କରନ୍ତି ପବିତ୍ର ହେ ।
ସରଘା ଉଚ୍ଛିଷ୍ଟ ବୋଲି ମଧୁକୁ ଗ୍ରହଣ
କରୁନାହାଁନ୍ତି କି ସର୍ବ ଭୂଦେବ ଗୀର୍ବାଣ ହେ ।
କମଳ ଲତାକୁ କଣ୍ଟ ଦଳଦେଲା ବୋଲି
ବିହରିବେ ନାହିଁକି ତହିଁରେ ଯାଇ ଅଳି ହେ ।

କବି ବିହିତ ରସମୟ ଗ୍ରନ୍ଥ ବା ସାଗରେ ଜମ୍ବୁଦ୍ୱୀପରେ ଅବସ୍ଥିତ ତାଳଧ୍ୱଜ ରାଜ୍ୟର ନୃପତି ବିକ୍ରମ ଓ ତାଙ୍କ ପାଟରାଣୀ ହୀରାବତୀ ଗର୍ଭସମ୍ଭୂତ ରାଜକୁମାର ମାଧବଙ୍କ ସହିତ ପ୍ଲକ୍ଷଦ୍ୱୀପ ଅନ୍ତର୍ଗତ 'ବିଦ୍ୟାନ୍ତି' ନଗର ନରପତି ଗୁଣାକର ଓ ତାଙ୍କ ପାଟରାଣୀ ସୁଶୀଳା ଗର୍ଭରୁ ଜାତ ବିଦ୍ୟାସୁନ୍ଦରୀ 'ସୁଲୋଚନା' ପ୍ରଣୟ ଓ ପରିଣୟ ସରଳ, କୋମଳ ଓ ଅଳଙ୍କାରିକ ପଦାବଳୀରେ ଏକତ୍ରିଂଶ ଛାନ୍ଦରେ ରଚନା କରିଛନ୍ତି । କବି ଏହି କାବ୍ୟଟି ପଦ୍ମପୁରାଣରେ ବର୍ଣ୍ଣିତ ମାଧବ ଓ ସୁଲୋଚନା ବିଷୟ ଅବଲମ୍ବନରେ ରଚନା କରିଛନ୍ତି । କାବ୍ୟର ବିଷୟ ବସ୍ତୁ ସଂକ୍ଷିପ୍ତରେ ଏଠାରେ ଦିଆଗଲା ।

ରାଜା ମାଧବ ଦିନେ ମୃଗୟା ଉଦ୍ଦେଶ୍ୟରେ ବନରେ ଭ୍ରମଣ କରୁଥିବା ସମୟରେ ସେଠାରେ 'ସୁବାହୁ' ନରପତିଙ୍କ ରୂପବତୀ ସହଧର୍ମିଣୀ ପ୍ରେମଶୀଳା 'ଚନ୍ଦ୍ରକଳାର' ରୂପରେ ମୋହିତ ହୋଇ ତାଙ୍କର ପ୍ରେମଭିକ୍ଷା କରନ୍ତେ ଚନ୍ଦ୍ରକଳା ତାଙ୍କଠାରୁ ଏକ ଅପରୂପ ସୁନ୍ଦରୀ ବିଦ୍ୟାନ୍ତିନଗରେ ନରପତିଙ୍କ କନ୍ୟା ସୁଲୋଚନା ସହିତ ବିବାହ କରିବା ନିମିତ୍ତ ପରାମର୍ଶ ଦେଇ ଏହି ମାଙ୍ଗଳିକ କାମ ସମ୍ପାଦନ କରିବାପାଇଁ ସୁଲୋଚନାଙ୍କ ଗୃହରେ ବାସକରୁଥିବା ମାଲୁଣୀର ସାହାଯ୍ୟ ନେବାପାଇଁ ତାଙ୍କୁ ପ୍ରବର୍ତ୍ତାଇ ଥିଲା । ଏଥିପୂର୍ବରୁ ସୁଲୋଚନାର ଚିତ୍ର

କୁଣ୍ଡିନପୁର ରାଜା 'ବୃଦ୍ଧ ମନୋହରଙ୍କ' କୁମାର 'ବିଦ୍ୟାଧର' ସହିତ ତାଙ୍କ ଦୁହିତାକୁ ବିବାହ ଦେବାପାଇଁ ନିଷ୍ପତ୍ତି କରିଥିଲେ । କିନ୍ତୁ ସୁଲୋଚନା ଏହି ବିବାହ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନକରି ମାଧବ ନରପତିଙ୍କୁ ବିବାହ କରିବା ପାଇଁ ସ୍ଥିର କରିଥିବା ବିଷୟ ମାଳୁଣୀ ନିକଟରେ ପ୍ରକାଶ କରିଥିଲା । ରାଜା ମାଧବ ବିଦର୍ଭ ନଗରରେ ଗୁପ୍ତରେ ପ୍ରବେଶକରି ମାଳୁଣୀ ନିକଟରେ ସୁଲୋଚନା ସହିତ ପ୍ରଣୟ ପାଶରେ ଅବଦ୍ଧ ହେବାର ସଙ୍କଳ୍ପ ପ୍ରକାଶକଲେ । ଚତୁରା ମାଳୁଣୀ ରାଜାଙ୍କୁ କହିଲା "ଆସନ୍ତା କାଲି ବିଦ୍ୟାଧର ସହିତ ସୁଲୋଚନାର ବିବାହ ହେବ" । ଏଣୁ ଆପଣ ଭଦ୍ରାଶ୍ୱ ଆରୋହଣ ପୂର୍ବକ ଗଗନ ପୃଷ୍ଠରୁ ବିବାହ ବେଦୀରୁ ସୁଲୋଚନାର ଊର୍ଦ୍ଧ୍ୱମୁଖୀ ବାମ କରକୁ ଧରି କୃଷ୍ଣଚନ୍ଦ୍ର ରୁକ୍ମଣୀଙ୍କୁ ଶୂନ୍ୟରେ ହରଣକଲାପରି ଅଶ୍ୱପୃଷ୍ଠରେ ନେଇ ଯିବାପାଇଁ ରାଜାଙ୍କୁ ପରାମର୍ଶ ଦେଲା । ମାଳୁଣୀ ଏହି କୌଶଳ ରାଜାଙ୍କୁ ବତାଇବା ସମୟରେ ମାଧବଙ୍କ ବୃକର 'ପ୍ରଚେଷ୍ଟା' ସେଠାରେ ଉପସ୍ଥିତ ହେଲା । କିନ୍ତୁ ସୁଲୋଚନାର ବିବାହ ବିଦ୍ୟାଧର ସହିତ ବେଦୀରେ ଅନୁଷ୍ଠିତ ହେଉଥିବା ସମୟରେ ଭାଗ୍ୟର ବିଡ଼ମ୍ବନାରୁ ମାଧବଙ୍କୁ କାଳନିଦ୍ରା ଘେରିବାରୁ ସେ ଅଚେତ ହୋଇ ବିବାହ ବିଷୟ ସମ୍ପୂର୍ଣ୍ଣରୂପେ ଭୁଲିଗଲେ । ରାଜାଙ୍କ ନିଦ୍ରାର ସୁଯୋଗ ନେଇ ତାଙ୍କର ବୃକର 'ପ୍ରଚେଷ୍ଟା' ପୂର୍ବମନ୍ତ୍ରଣା ପ୍ରକାରେ ଆକାଶମାର୍ଗରେ ରହି ସୁଲୋଚନାକୁ ବିଦ୍ୟୁତ୍ ବେଗରେ ବିବାହ ବେଦୀରୁ ଅପହରଣ କରି ନେଇ କାଞ୍ଚିପୁରକୁ ଗମନ କରି ସୁଲୋଚନାକୁ ନିଜର ପ୍ରଣୟିନୀ କରିବା ଉଦ୍ଦେଶ୍ୟରେ ବିବାହର ସମସ୍ତ ଆୟୋଜନ କରିବାପାଇଁ ସ୍ଥିର କରି ବିବାହ ସାମଗ୍ରୀ କ୍ରୟ କରିବା ଉଦ୍ଦେଶ୍ୟରେ ବଜାରକୁ ଗଲା । ଏହି ଅବସରରେ ସୁଲୋଚନା ଭଦ୍ରାଶ୍ୱ ପିଠିରେ ଆରୋହଣ କରି ଗଙ୍ଗାସାଗର ନିକଟକୁ ଯାଇ ସେଠାରେ ମାଧବଙ୍କୁ ପତିରୂପେ ପାଇବାପାଇଁ କଠୋର ତପସ୍ୟାରେ ନିମଗ୍ନ ରହିଲା । ଏହି ଅବସରରେ ଗଙ୍ଗାସାଗରରେ ଏକ ଦିବ୍ୟସୁନ୍ଦରୀ ଅପ୍ସରୀ ସ୍ୱର୍ଗରୁ ଅବତରଣ କରି ସୁଲୋଚନାଙ୍କୁ ଆଶ୍ୱାସନା ଦେଇ ବିଷ୍ଣୁଙ୍କୁ ପୂଜାଆରାଧନା-

ଦ୍ୱାରା ସନ୍ତୁଷ୍ଟ କରିପାରିଲେ ଅଳ୍ପଦିନ ଭିତରେ ସେ ତାଙ୍କର ପ୍ରାଣର ଦେବତା ମାଧବଙ୍କୁ ପତିରୂପେ ପାଇପାରିବ କହି ତାଙ୍କୁ ଐନ୍ଦ୍ରଜାଲିକ ବିଦ୍ୟାପ୍ରଦାନ କଲି ଓ ସେ ଏହି ଐନ୍ଦ୍ରଜାଲିକ ବିଦ୍ୟାଦ୍ୱାରା ପୁରୁଷବେଶ ଧାରଣ କରି ଖାରବର ନାମରେ ନିଜକୁ ନାମିତ କରି ନିକଟରେଥିବା 'ସୁଷେଣ ନାମକ' ଏକ ନରପତିଙ୍କ ସେବାକାର୍ଯ୍ୟରେ ନିଯୁକ୍ତ ରହିବାକୁ ପରାମର୍ଶ ଦେଲି । କିଛିଦିନ ପରେ ରାଜା ଖାରବରଙ୍କୁ ଆଦେଶ ଦେଲେ ଯେ ଯେଉଁ ଲୋକମାନେ ଜୀବନରେ ବିଫଳ ମନୋରଥ ହୋଇ ଗଙ୍ଗାରେ ଝାସ ଦେବାକୁ ଆସିବେ ସେମାନଙ୍କୁ ସେ ତାଙ୍କ ନିକଟକୁ ନେଇ ଆସୁଥିବ । ରାଜାଙ୍କ ଆଦେଶ ପ୍ରକାରେ ଖାରବର ଗଙ୍ଗାସାଗର ଖରରେ ବାସକରି ଶିବ ଓ ରାମଙ୍କ ନାମଜପକରି ବିଫଳ ମନୋରଥ ହୋଇଥିବା ବ୍ୟକ୍ତିଙ୍କ ଅପେକ୍ଷାରେ ରହିଲା । ଏହି ସମୟରେ ଗୋଟିଏ ବିରାଟ ଗଣ୍ଡା ସେଠାକୁ ଆସି ଲୋକଙ୍କ ଧନ ଓ ଜୀବନ ନଷ୍ଟ କରିବାରେ ଲାଗିଲା । ଖାରବର ଗଣ୍ଡାର ଦୌରାତ୍ମ୍ୟରୁ ଲୋକଙ୍କୁ ରକ୍ଷା-କରିବା ଲାଗି ଗଣ୍ଡାକୁ ଶର ନିକ୍ଷେପକରି ହତ୍ୟାକଲା । ଏହି ସମୟରେ ଏକ ଅଲୌକିକ ଘଟଣା ଘଟିଲା । ଗଣ୍ଡାର ପ୍ରାଣଯିବା ପୂର୍ବରୁ ତାର ଶରୀରରୁ ଶଙ୍ଖ ଚକ୍ର ଗଦାଧାରୀ ଏକ ଦିବ୍ୟ ପୁରୁଷଙ୍କ ଗଳାରେ ବରଣ ମାଳ ପକାଇ ଖାରବର ସମ୍ମୁଖରେ ଆବିର୍ଭାବ ହୋଇ ଖାରବରର (ସୁଲୋଚନା) ପ୍ରାଚୀନ ଇତି ବୃତ୍ତାନ୍ତ କହି ବିଷ୍ଣୁ ଅଂଶରେ ଜାତ ମାଧବଙ୍କୁ ସେ ଅଚିରେ ପତିରୂପେ ପାଇବ ବୋଲି ଜଣାଇଲେ ।

ଗଣ୍ଡାର ନିଧନ ପରେ ସୁଷେଣ ଖାରବରର ଖରତ୍ୱ, ପରାକ୍ରମ ଓ କର୍ତ୍ତବ୍ୟନିଷ୍ଠାରେ ସନ୍ତୁଷ୍ଟହୋଇ ନିଜର କନ୍ୟା 'ଜୟନ୍ତୀଙ୍କୁ' ବିବାହ ଦେବାକୁ ମନସ୍ଥକଲେ । କିନ୍ତୁ ଖାରବର କିଛିଦିନ ଏହି ବିବାହକୁ ସ୍ଥଗିତ ରଖିବାପାଇଁ ରାଜାଙ୍କୁ ଅନୁରୋଧ କରିଥିଲେ । ଏଣେ କିଛିଦିନ ପରେ ବିରହକାରେ ମାଧବ, ପ୍ରଚେଷ୍ଟା ଓ ବିଦ୍ୟାଧର ସୁଲୋଚନା ପ୍ରେମରେ ପାଗଳ ହୋଇ

ତାର ଅନେ୍ୱଷଣ ଉଦ୍ଦେଶ୍ୟରେ ବହୁଦେଶ ଭ୍ରମଣକରି ଅତ୍ୟନ୍ତ ମ୍ରିୟମାଣ ହୋଇ ଶେଷରେ ଗଙ୍ଗାସାଗରରେ ପ୍ରାଣ ବିସର୍ଜନ କରିବାକୁ ମନସ୍ଥକରି ଗଙ୍ଗାରେ ଝାସଦେଉଥିବା ସମୟରେ ବରବର ସେମାନଙ୍କୁ ଚିହ୍ନି ନିଜଝିଅଙ୍କୁ ନେଇ ନିଜର ପରିଚୟ ପ୍ରଦାନ କଲା । ମାଧବ ସୁଲୋଚନାଙ୍କୁ ଦେଖି ଅପୂର୍ବ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଲା । 'ପ୍ରଚେଷ୍ଟା' ନରପତିଙ୍କ ପ୍ରତି ବିଶ୍ୱାସଘାତକ କରି ତାକୁ ବଳପ୍ରୟୋଗକରି ଅପହରଣ କରିଥିବା ହେତୁ ତାଙ୍କୁ ବନ୍ଦୀକରି ମାଧବ ଦ୍ୱାରା ନିହତ କଲା । ପୁଣି ବିଦ୍ୟାଧରଙ୍କୁ ବ୍ରହ୍ମକନ୍ୟା ପ୍ରଦାନ କରି ଏହି ମାୟା ବିଜଡିତ ସାଂସାରିକ ବିଷୟପ୍ରତି ଆସକ୍ତ ନହୋଇ ପତିବ୍ରତ ଗ୍ରହଣକରି ମନକୁ ବିଭୁଙ୍କ ଚରଣାରବିନ୍ଦରେ ନିୟୋଜିତ କରିବା ପାଇଁ ଉପଦେଶ ଦେଲା ।

ଏହାପରେ ଛଦ୍ମବେଶଧାରୀ ବରବର ମାଧବ ଓ ଜୟନ୍ତଙ୍କୁ ସଙ୍ଗରେ ନେଇ 'ସୁଷେଣ'ରାଜାଙ୍କ ନିକଟରେ ନିଜ ଜୀବନର ସମସ୍ତ ବୃତ୍ତାନ୍ତ ଜଣାଇ ମାଧବଙ୍କ ସହିତ ନିଜର ବିବାହ ସମ୍ପନ୍ନ କରାଇ 'ଜୟନ୍ତୀ'ଙ୍କୁ ମଧ୍ୟ ମାଧବଙ୍କ ସହିତ ବିବାହ ଦେବାପାଇଁ ରାଜାଙ୍କୁ ଅନୁରୋଧ କଲା । ରାଜା ନିଜ କନ୍ୟାଙ୍କୁ ମାଧବଙ୍କ ହସ୍ତରେ ଅର୍ପଣ କଲେ । ମାଧବ ଓ ସୁଲୋଚନା ଆନନ୍ଦରେ କିଛିକାଳ କଟାଇ ଘୋଷରେ ମୃତ୍ୟୁଲଭ କରିବା ସମୟରେ ଅମରାବତୀରୁ ଏକ ବିମାନ ଅବତରଣ କରି ମାଧବ ଓ ସୁଲୋଚନାଙ୍କୁ ବୈକୁଣ୍ଠ ପୁରକୁ ନେଇଗଲା ।

କବି ଉପେନ୍ଦ୍ରଭଞ୍ଜଙ୍କ କାବ୍ୟ ବିଶେଷତଃ ଲାବଣ୍ୟବତୀର ଅନୁକରଣରେ ବହୁ ବର୍ଣ୍ଣନା ନିଜ ରଚନାରେ ସନ୍ନିବେଶିତ କରିଛନ୍ତି । କାବ୍ୟର ଦ୍ୱାଦଶଛାନ୍ଦରେ କବି 'ଦିବ୍ୟନ୍ତି' ନଗରସ୍ଥ ବିପଣି ମାନଙ୍କର ଯେଉଁ ବର୍ଣ୍ଣନା କରିଛନ୍ତି ତାହା ଉପେନ୍ଦ୍ର ଭଞ୍ଜଙ୍କ ବଜାର ବୋଲିର ଅନୁକରଣରେ ଲିଖିତ କହିଲେ ସତ୍ୟର ଅପଲାପ ହେବନାହିଁ ।

ଯଥା—ଆଖିର ନାୟିକ କେ ବୋଲେ ତୋର ଦୁଧରେ ପାଣିମିଶିଛୁ କି
ନାହିଁ ଭୁଲିଲେ କହି ରମଣୀମଣି ।

ପୁଣି ଏକାଦଶଚ୍ଛନ୍ଦରେ ଲାବଣ୍ୟବତୀରେ ବର୍ଣ୍ଣିତ ହୋଇଥିବା ସିଂହଳ ବର୍ଣ୍ଣନା–ନୁକରଣରେ ବିଷୟ ଓ ପଦବିନ୍ୟାସକରି ବିଦ୍ୟେନ୍ତ ନଗର ବର୍ଣ୍ଣନା କରିଛନ୍ତି । ଯଥା—

କେଉଁ ପ୍ରସାଦେ ସୁବର୍ଣ୍ଣେ ସୁବର୍ଣ୍ଣ ହୋଇଛି
ମେରୁ ପର୍ବତ ପରାୟେ ଦୂରକୁ ଦିଶୁଛି ।
କେତେ ସଦ୍ମ, ପଦ୍ମ, ପଦ୍ମ ହୋଇଣ ସୁନ୍ଦର
ପଦ୍ମଭବ ଭୁବନକୁ କରନ୍ତି ଧିକ୍କାର
ଗୋଟିଏ ସୁବର୍ଣ୍ଣ ଯାକୁ ମିଳେ ସେ ନଗରେ
ଗୋଟିଏ କରିଣ ଖଞ୍ଜା ଅଛି ତାର ପୁରେ ।

କବି ଆଦିରସ ଓ ବୀରରସର ଦ୍ୱାରା କାବ୍ୟକୁ ଅଧିକ ରସାଣିତ କରି ସର୍ବଜନ ଗ୍ରାହ୍ୟ କରିବାକୁ ଚେଷ୍ଟା କରିଛନ୍ତି । ସଂସ୍କୃତ କାବ୍ୟର ପ୍ରଭାବରେ ପ୍ରଭାବାନ୍ୱିତ ପାଠକମଣ୍ଡଳୀର ପିପାସା ଦୂରକରିବା ପାଇଁ ଏପ୍ରକାର ଭାବଧାରାର ଆଶ୍ରୟ ଗ୍ରହଣ କରିଥିବା ମନେହୁଏ । ବିଶେଷତଃ ମାଧବ ନରପତି, ବିଦ୍ୟାଧର ସୁଲୋଚନା ଓ ଚନ୍ଦ୍ରକଳାର ଯୌବନ ବର୍ଣ୍ଣନା ଓ କେଳି ବର୍ଣ୍ଣନା ଆଦି ସମାବେଶ ଉପରେ ଧ୍ୟାନ ଦିଆଯାଇଥିଲେ ମଧ୍ୟ କାବ୍ୟର ଋତୁବର୍ଣ୍ଣନା, ଗଙ୍ଗାସାଗର ବର୍ଣ୍ଣନା, ବିପଣିବର୍ଣ୍ଣନା, ପ୍ରଭାତ ଓ ସନ୍ଧ୍ୟା ବର୍ଣ୍ଣନା, ସବୁଜବନାନ୍ତର ବର୍ଣ୍ଣନାରେ କବି ନିଜର ଅସାଧାରଣ ମୌଳିକତା ଓ ଦକ୍ଷତା ପ୍ରକାଶକରି ପାରିଛନ୍ତି । ଏହି ବର୍ଣ୍ଣନା ଗୁଡ଼ିକରେ ଅଳଂକାର ଶାସ୍ତ୍ରାନୁଯାୟୀ ରୀତି, ଗୁଣ, ଶବ୍ଦାଳଂକାର ଓ ଅର୍ଥାଳଂକାର ସମାବେଶ ପ୍ରଭୃତି ମାନାରେ ପରିଲକ୍ଷିତ ହୁଏ । ବିଭିନ୍ନ ବିଷୟ ଓ ଘଟଣା ବର୍ଣ୍ଣନା ବେଳେ କବି ବହୁ ନୀତିପୂର୍ଣ୍ଣ ବାକ୍ୟ ଅତ୍ୟନ୍ତ ସରଳ ଭାଷାରେ ଲୋକ ଚରିତ୍ରକୁ ମାର୍ଜିତ କରିବା ପାଇଁ ପରିବେଷଣ କରିଛନ୍ତି ।

କବି ଏକବିଂଶ ଛାନ୍ଦରେ ଲେଖିଛନ୍ତି :—

ବିଦ୍ୟା ବପୁମଧ୍ୟେ ସମ୍ପୂର୍ଣ୍ଣ ଥାଇ—କର୍ମହୀନ ହେଲେ ବୃଥା ହୁଅଇ
କର୍ମ ଏକା ମୂଳ
କର୍ମଠାରୁ ନାହିଁ ଅଧିକ ଫଳ

ଅଣତ୍ରିଂଶ ଛାନ୍ଦରେ—

ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ - ହେଳାକରଇ ଯେ ଜନ
ନମରେ ବଢ଼ଇ ବାଧକର ହୋଇ ଆଗୁଁ ହେବ ସାବଧାନ
ଶ୍ରୀହରି ଚରଣ ଦୁଇ - ନଉକା ଯେହ୍ନେ କରଇ
ଏଘୋର ସଂସାର ପାପପାରାବାର କଷ୍ଟେ ତେ ପାରହୁଅଇ ।

ସରୋବର ନିକଟରେ ପ୍ରଥମ ଦର୍ଶନରେ ଚନ୍ଦ୍ରକଳାର ଯୌବନ ହରଣ-ଅବସ୍ଥାରେ ରୂପରାଶି ମାଧବର ମନକୁ କିପରି ହରଣକରିଛି କବି ଷଷ୍ଠଛାନ୍ଦରେ ବର୍ଣ୍ଣନା କରିଛନ୍ତି ।

କରଚମ୍ପକ ମାଳ ଅଙ୍ଗୁଳି ଗନ୍ଧପଂକ୍ତି କରଜ ଜାଣିସୁମନସ୍ୱ
କମ୍ବୁଆକୃତି କଣ୍ଠ କୁଚହେମ ସମ୍ପୁଟ ରୋମାଳୀ କାଳୀବର୍ଣ୍ଣ ଧୂଶ୍ୟେସେ
ଜୀବେଣୀ ସ୍ୱ ।
କଟିକଣ୍ଠୀରବରୁ କ୍ଷୀଣ - ନିତମ୍ବ ଜଘନ ଶୋଭନ

କୋକ ନଦକୁଦଳ ସୁଷମା ପାଦତଳ କୁଞ୍ଜର ପରାଏ ଗମନରେ ନବ ଯୁବତୀ ନାୟିକା ସୁଲୋଚନାର ବେଶ ବିନ୍ୟାସ ଓ ପ୍ରସାଧନ ପ୍ରସଙ୍ଗରେ କବି ତତ୍କାଳୀନ ଓଡ଼ିଆ ସମାଜର ପ୍ରଚଳିତ ରୀତିକୁହିଁ ରୂପଦେଇଛନ୍ତି । ବେଶବିନ୍ୟାସ ବର୍ଣ୍ଣନାରେ କବି ନାୟିକାକୁ ଓଡ଼ିଆ ରଚନାର ସମସ୍ତ ଅଳଂ-କାରରେ ବିମଣ୍ଡିତ କରି କେଶ ପ୍ରସାଧକ ବିଷୟଟିକୁ ଅତିରମଣୀୟ ଓ ଜୀବନ୍ତ କରିପାରିଛନ୍ତି । ଉପମା, ଉତ୍ପ୍ରେକ୍ଷାଦି ଅଳଂକାର, ସୁଲଳିତ ପଦାବଳୀ ପଦ୍ୟରଚନାର ବିଚିତ୍ର ଶୈଳୀ ପଦଗୁଡ଼ିକୁ କାବ୍ୟଜଗତରେ ଅମରକରି ରଖିଅଛି ।

ବରଚଥିଲ ସୁବେଣୀ - ବେଣୀରେ ସୁମନ ଶ୍ରେଣୀ
କଳନ୍ଦ କନ୍ୟାରେ କଢ଼ଂସପନ୍ତ
ବହଲେ ପର ଛବ - ଛବକ କେହ୍ବ ସୁକବ
କବ ହୋଇ କହ୍ବେକ ସେ କାଳ ଦ୍ୟୁତ
ବଷ୍ଟ୍ରପଦେକ ତାରଷ୍ଠିତ - ବଷ୍ଟ୍ରପର୍ଣ ସୁରବାରେ ମିଶିଅଛନ୍ତ

ପ୍ରଭାତ ଓ ସନ୍ଧ୍ୟାକାଳୀନ ବର୍ଣ୍ଣନା ଓ ପ୍ରାକୃତକ ଦୃଶ୍ୟର ଚମତ୍କାର ବର୍ଣ୍ଣନା ଆଳଂକାରକ ଅନୁଶାସନ ଅନୁଯାୟୀ କର ଏହାର ସାହିତ୍ୟିକ ଆବଶ୍ୟକତା ସୁଧୀ ସମାଜକୁ ଦେଖାଇ ଦେଇଛନ୍ତ । କାବ୍ୟର ଅଷ୍ଟାଦଶ ଛାନ୍ଦରେ ଚନ୍ଦ୍ରକା-ସ୍ନାତ ଓ ପରକତ ପ୍ରଦୋଷର ବର୍ଣ୍ଣନା କବ ରୂପର ଏକ ଅମରାବଣ ସୃଷ୍ଟି କରଛନ୍ତ ।

କେ ବୋଲଇ ଚନ୍ଦ୍ରସ୍ଥଳେ ଏ ମୃଗେନ୍ଦ୍ର ଇନ୍ଦ୍ରଙ୍କ ଗିରଗୁହାରେ
ଥିଲେ ଲୋଇ ଏବେ ଚେତାପାଇ ବହରେ ନଭ ଅରଣ୍ୟରେ
କରକରଜେ ବଦାରେ ନିଶାକରକ ।
ମୁକୁତା ପ୍ରକାର ହୋଇଲ୍ ବାହାର ଭୁକ୍ତତାରକା ବୋଲ୍ଏକ ?
କେବୋଲଇ ପୂର୍ବଦଗ ମତ୍ତନାଗ - ଗଗନ କାନନେ ବହରେ
କପଟ କଳଙ୍କ ବୋଲହୋଇ ପଙ୍କ ଗମଇ ବାରୁଣୀ ଆଶାରେ
ନଷ୍ଟେ ପଦ୍ମମା କୂଳକୁ ଦହବ
ପୁରୁଷ ଭ୍ରମର ମରବ ଏଥର ଭ୍ରମି ଭ୍ରମି ହୋଇ କଦର୍ଯ୍ୟ ।

ଉପରୋକ୍ତ ବର୍ଣ୍ଣନା ବ୍ୟତୀତ କବ ପବନ୍ଧ ପାବନୀ ଗଙ୍ଗାନଦୀର ବର୍ଣ୍ଣନା ଅତ୍ୟନ୍ତ ମନୋରମ ଭାଷାରେ ଚବଣ କରବା ସଙ୍ଗେ ସଙ୍ଗେ ଗଙ୍ଗାନଦୀର ଉତ୍ପତ୍ତିର ପୌରାଣିକ ଇତ ବୃତ୍ତ ତେତଶି ଛାନ୍ଦରେ କପର ପ୍ରକାଶ କରଛନ୍ତ । ସେଥିରୁ ଗୋଟିଏ ପଦ ଉଦ୍ଧାର କରାଗଲା ।

ଜୟ ଜୟ ମାତ ସୁରଧାର୍ଧିକା ବୃନ୍ଦାରକ ଓକ ଶିର ଟୀକା
ହିମାଳୟ ପୁତ୍ରୀ ରଜତ ଗାତ୍ରୀ-ପଞ୍ଚର ପାବନୀ କରୁଣା ପାତ୍ରୀ ସେ
କୁନ୍ଦ କର୍ପୂର ହାସିନୀଗୋ ।
ଦୁରିତାଳି ଗଜ ଗରବ ଗଞ୍ଜନୀ ଯାବତ ଜୀବ ଜନନୀଗୋ ।

ଉପରୋକ୍ତ ଦୃଷ୍ଟାନ୍ତରୁ ଜଣାଯାଏ ସ୍ତବୋପଯୋଗୀ ସଙ୍ଗୀତ ମଧ୍ୟ ଛନ୍ଦରେ ତାଙ୍କର କାବ୍ୟ ଲିଖିତ ହୋଇଥିବା ହେତୁ ଏହାର ଭାବଗତ ପ୍ରଭାବ କାନ ଭିତରେ ଦେଇ ମର୍ମକୁ ସ୍ପର୍ଶ କରେ । ଏହି କାବ୍ୟରେ ତାଙ୍କର ନୈସର୍ଗିକ କବିପ୍ରତିଭାର ପରିଚୟ ମିଳେ । ଏହି କାବ୍ୟର କେତେକ ଛାନ୍ଦରେ ସଂସ୍କୃତ ଶବ୍ଦର ବହୁ ପ୍ରାଦୁର୍ଭାବ ଦେଖାଯାଏ; କିନ୍ତୁ ଆଉକେତେକ ଛନ୍ଦର ଭାଷା ସରଳ ଓ ବିଶୁଦ୍ଧ ଅଟେ । ରଚନା ମଧ୍ୟରେ ଅନେକ ଗୁଡ଼ିଏ ଦେଶଜ ଓ ଓଡ଼ିଆ ଶବ୍ଦ ଭାଷା ରୀତିରେ (ରୂଢ଼ି) ବ୍ୟବହାର ଦେଖାଯାଏ ।

ଯଥା :— କେତେ ଭାଲୁ ଟୋଲୁକଲୁ ପଡ଼ି ହୋଇ
ବଲ୍ଲୁକ ମାନଙ୍କୁ ନଖେ ବିଦାରଇ
ସିଂହମାନେ ଯେ ଧିପାଇ ଘୋଡ଼ା
ଦୁଇନାବେ ଚୋଡ଼ିଦେଲା, ଚିନ୍ତାସହିତେ ବୁଡ଼ିଲା

କାବ୍ୟଟିରେ କବିଙ୍କ ସମୟର ଗୀତ, ମନ୍ତ୍ର, ଆଦିର ବ୍ୟବହାର ରାଜାମାନଙ୍କ ବିବାହୋତ୍ସବ ପ୍ରଭୃତିରେ ଗଣିକାନୃତ୍ୟ ଓ ରାଜାଙ୍କ ପାରିଧି ବର୍ଣ୍ଣନା ଅତ୍ୟନ୍ତ ପ୍ରାଞ୍ଜଳ ଓ ମଞ୍ଜୁଳ ଭାଷାରେ ଚିତ୍ରଣ କରାଯାଇଛି । ବାସ୍ତବରେ ଏହି କାବ୍ୟ ସାହିତ୍ୟ ଜଗତରେ ଏକ ଅପୂର୍ବ କୀର୍ତ୍ତି ମଧ୍ୟରେ କହିଲେ ଅତ୍ୟୁକ୍ତି ହେବନାହିଁ ।

--୦--

# ରାଜା ବ୍ରଜସୁନ୍ଦର ସିଂହ (୧୮୬୪ଖ୍ରୀ – ୧୮୮୪ଖ୍ରୀ)

ରଘୁନାଥ ସିଂହଙ୍କ ପରେ ତାଙ୍କର ପୁତ୍ର ବ୍ରଜସୁନ୍ଦର ସିଂହ ଧର୍ମକୋଟରେ ସିଂହାସନାରୋହଣ କଲେ । ସେ ଖଲିକୋଟର ସ୍ୱନାମଧନ୍ୟ ରାଜା ବାଲୁକେଶ୍ୱର ମର୍ଦ୍ଦରାଜଙ୍କ କନ୍ୟା ତଥା ନାରାୟଣ ମର୍ଦ୍ଦରାଜଙ୍କ ଭଗିନୀ ପଦ୍ମମାଳାଙ୍କୁ ବିବାହ କରିଥିଲେ । ସେ ଅପୁତ୍ରିକ ଥିଲେ । ପୁତ୍ର ପ୍ରାପ୍ତି ନିମନ୍ତେ ସେ ବହୁ ବ୍ରତ, ଉପବାସ ଓ ଧର୍ମାନୁଷ୍ଠାନ କରିଥିଲେ । କିନ୍ତୁ ତାଙ୍କ ଭାଗ୍ୟରେ ପୁତ୍ରମୁଖ ଦେଖିବାର ଯୋଗ ନଥିଲା । ଏଣୁ ସେ ନୟାଗଡ଼ର ବାଙ୍କତରାରୁ ତାଙ୍କ ରାଜବଂଶରୁ ମଦନମୋହନ ସିଂହଙ୍କୁ ଅତି ବାଲ୍ୟବୟସରୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ।

ଟି. ଜେ ମାଲଟୋବିଙ୍କ ଗଂଜାମ ମେନୁଏଲରୁ ଜଣାଯାଏ ରାଜା ବ୍ରଜସୁନ୍ଦରଙ୍କ ସମୟରେ ଧର୍ମକୋଟ ରାଜ୍ୟର ମୋଟ କ୍ଷେତ୍ରଫଳଥିଲା ପ୍ରାୟ ୧୨୫ ମାଇଲ ଓ ଗ୍ରାମସଂଖ୍ୟାଥିଲା ୧୮୮ । ଶାସନ କାର୍ଯ୍ୟ ପରିଚାଳନା ଓ ରାଜସ୍ୱ ଆଦାୟ ଦୃଷ୍ଟିରୁ ରାଜ୍ୟକୁ ତିନିଗୋଟି ମୁଠା ବା ଉପ ଖଣ୍ଡରେ ବିଭକ୍ତ କରାଯାଇଥିଲା । ଜାହାଡ଼ା ମୁଠାରେ ୮୫ ଗୋଟି ଗ୍ରାମ କମାଗଡ଼ ମୁଠାରେ ୩୭ ଗୋଟି ଗ୍ରାମ ଓ ସହସ୍ରାଙ୍ଗ ମୁଠାରେ ୬୬ ଗୋଟି ଗ୍ରାମ ଅନ୍ତର୍ଭୁକ୍ତଥିଲା । ୧୮୭୧ ମସିହାର ଜନଗଣନା ଅନୁସାରେ ରାଜ୍ୟର ଜନସଂଖ୍ୟା ଥିଲା ୩୧୬୯୧ ଓ ସେ ସମୟରେ ରାଜ୍ୟର ସରକାରଙ୍କୁ ପେଷ୍କସ ଦେୟ ଥିଲା ଟ ୨୪୯୬୫' ୫.୬ ପାହୁଲା ।

ପୁତ୍ରସନ୍ତାନ ଲାଭରୁ ବଞ୍ଚିତ ହୋଇଥିବା ଯୋଗୁଁ ସେ ପ୍ରଜାମାନଙ୍କୁ ପୁତ୍ରବତ୍ ପାଳନ କରୁଥିଲେ । ଜୀବନର ଅଧିକାଂଶ ସମୟ ଧର୍ମାନୁଶୀଳନ ଓ

ସାହିତ୍ୟାଲୋଚନା କରିବା ସଙ୍ଗେ ସଙ୍ଗେ, ପ୍ରାଚୀନ କୀର୍ତ୍ତିଉଦ୍ଧାର ସଦନୁଷ୍ଠାନ ସ୍ଥାପନ ପ୍ରଜାବର୍ଗଙ୍କ ହିତସାଧନ ଓ ପରୋପକାରରେ ଆପଣାକୁ ନିୟୋଜିତ କରିଥିଲେ । ପିତୃଳ ନିକଟସ୍ଥ ବ୍ରାହ୍ମଣଗ୍ରାମରେ ପ୍ରତିଷ୍ଠିତ ପଞ୍ଚୁଦେବତାଙ୍କ ମନ୍ଦିର ନିର୍ମାଣ ଓ ପୁଷ୍କରିଣୀ ଖନନ ପାଇଁ ପ୍ରଚୁର ଆର୍ଥିକ ସାହାଯ୍ୟ କରି ମନ୍ଦିର ପ୍ରତିଷ୍ଠା ଉତ୍ସବରେ ତା: ୧୮୬୪ଖ୍ରୀ ରେ ରାଜ୍ୟର ବିଶିଷ୍ଟ ପଣ୍ଡିତ ଓ ପ୍ରତିଷ୍ଠାକାର ମାନଙ୍କ ସହିତ ଯୋଗ ଦେଇଥିଲେ । ଏହି ପ୍ରତିଷ୍ଠା କାର୍ଯ୍ୟରେ ରାୟସିଂହପୁରର କଲ୍ପ ସାମନ୍ତରାୟ,ନୃସିଂହ ଉପାଧ୍ୟାୟ ତିଲୋତ୍ତମା ଦେଇପୁର ପୀତାମ୍ବର ହୋତା ଓ ରାଜେନ୍ଦ୍ରପୁରର ରାଜଗୁରୁ ଆନନ୍ଦ ମିଶ୍ର ବିଦ୍ୟାଳଙ୍କାର ପ୍ରତିଷ୍ଠା କାର୍ଯ୍ୟରେ ନିଯୁକ୍ତଥିଲେ । ରାଜା ବ୍ରଜସୁନ୍ଦର ସାହିତ୍ୟ ରସିକ, ସଙ୍ଗୀତପ୍ରିୟ, ଗୁଣଗ୍ରାହୀ ଓ ବିଦ୍ୟୋତ୍ସାହୀ ଥିଲେ । ସାହିତ୍ୟ ମଞ୍ଜୁଳ କାନନରେ ସେ ନିଜେ କଳକଣ୍ଠ ହୋଇ ପାରିଥିଲେ । ତାଙ୍କ ବାହୁ ଛାୟାରେ ଆଶ୍ରୟଲଭି କରି ବ୍ରାହ୍ମଣଗ୍ରାମ ନିବାସୀ ହନୁମାନ କବିଚନ୍ଦ୍ର, ତିଳୋତ୍ତମାଦେଇ ପୁରର ଭୁବନେଶ୍ୱର କବିଚନ୍ଦ୍ର, ରାଜେନ୍ଦ୍ରପୁରର ବାଲବୃନ୍ଦ ସାହିତ୍ୟ ଭୂଷଣ ପ୍ରଭୃତି ଓଡ଼ିଆ ଓ ସଂସ୍କୃତ ଭାଷାରେ ବହୁରମ୍ୟ, ଚୌତିଶା, ଚମ୍ପୂ ଓ ଜଣାଣରୂପକ ସମୁଜ୍ଜ୍ୱଳ ହାରରେ ଉତ୍କଳ ଭାରତୀଙ୍କ ଗଳାକୁ ବିଭୂଷିତ କରିପାରିଥିଲେ ।

# ହନୁମାନ କବିଚନ୍ଦ୍ର

ପୂର୍ବେ ରାଜା ଓ ଋଷିମାନଙ୍କ ସାହଚର୍ଯ୍ୟରେ ଭାରତୀୟ ପୁରାଣ, ଧର୍ମଶାସ୍ତ୍ର ଓ ସାହିତ୍ୟର ବିକାଶଲାଭ କରିଥିଲା । ରଘୁବଂଶର ବଶିଷ୍ଠ ବଂଶରେ ପରମ୍ପରା ପ୍ରତିଷ୍ଠିତ ହେବାପରି ଧରାକୋଟ ରାଜବଂଶ ସହିତ ବ୍ରାହ୍ମଣଗ୍ରାମ ରାୟଗୁରୁ ବଂଶରେ ସମ୍ପର୍କ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିପାରିଛି । ଏହି ବଂଶରେ ଗୁଣଗ୍ରାହୀ, କଳାବିତ୍ ସାହିତ୍ୟ ପ୍ରେମୀ ଧରାକୋଟାଧୀଶ୍ୱର ସ୍ୱର୍ଗୀୟ ବ୍ରଜସୁନ୍ଦର ସିଂହଙ୍କ ବାହୁଚ୍ଛାୟାରେ ଆଶ୍ରୟ ଲଭିକରି ବ୍ରାହ୍ମଣଗ୍ରାମ ନିବାସୀ ସ୍ୱର୍ଗୀୟ ହନୁମାନ କବିଚନ୍ଦ୍ରଙ୍କର ଅଲୌକିକ ପ୍ରସିଦ୍ଧି ସଙ୍ଗେ ସଙ୍ଗେ କବିତ୍ୱ ଶକ୍ତିର ସ୍ଫୁରଣ ହୋଇଥିଲା ।

ସ୍ୱର୍ଗୀୟ କବିଚନ୍ଦ୍ର ପୃତମ୍ବର ଋଷିକୁଲ୍ୟା ନଦୀର ଉତ୍ତର ତୀରରେ ଅବସ୍ଥିତ ଅଷ୍ଟଦୁର୍ଗାନ୍ତର୍ଗତ ବ୍ରାହ୍ମଣଗ୍ରାଇ ଗ୍ରାମରେ ୧୮୨୭ ସମ୍ବତ୍ସରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମଥିଲା ଈଶ୍ୱର ପ୍ରହରାଜ ଓ ମାତାଙ୍କ ନାମଥିଲା ଅମ୍ବିକା । ଶିଶୁ ଅବସ୍ଥାରେ ତାଙ୍କଠାରେ ଚଞ୍ଚଳତା, ଚପଳତା ଓ କ୍ରୀଡ଼ା ସୁଲଭ ଧୂର୍ତ୍ତତା ଅତି ମାତ୍ରାରେ ପରିଦୃଷ୍ଟ ହେଉଥିଲା । ଏଣୁ ପିତାମାତା ତାଙ୍କ ନାମଦେଲେ 'ହନୁ' ସେ ଅତ୍ୟନ୍ତ ବୁଦ୍ଧିମାନ ଓ ପ୍ରତିଭା ସମ୍ପର୍ଣ୍ଣ ବାଳକ ଥିଲେ । ଏଣୁ ଅତ୍ୟଳ୍ପ ବୟସରେ ସେ ସାହିତ୍ୟ ବ୍ୟାକରଣ ଓ ଅଳଂକାର ଶାସ୍ତ୍ରରେ ଅସାଧାରଣ ବିଦ୍ୱତ୍ତାଲାଭ କରିଥିଲେ । ବାଲ୍ୟକାଳରୁ ସେ ଅତ୍ୟନ୍ତ ଧର୍ମପରାୟଣ ଥିଲେ ।

୧୮୫୦ ମସିହାରେ ବଡ଼ଗଡ଼ ରାଜା ଦୁର୍ଗାମାଧବ ସିଂହ ହନୁଙ୍କ ବହୁମୁଖୀ ପ୍ରତିଭାରେ ଆକୃଷ୍ଟ ହୋଇ ତାଙ୍କୁ ନିଜରାଜ୍ୟର ଦେବାନ କାର୍ଯ୍ୟରେ ନିଯୁକ୍ତ କରିଥିଲେ । ସେ ସେଠାରେ ରାଜ୍ୟ ଶାସନ ସୁବ୍ୟବସ୍ଥାରୂପେ ପରିଚାଳନା କରିବା ସଙ୍ଗେ ସଙ୍ଗେ ସାରସ୍ୱତ ସାଧନାରେ ମଧ୍ୟ ସିଦ୍ଧି ଲାଭ କରିଥିଲେ । ସେ ସେଠାରେ "ରାଧା ଗୋବିନ୍ଦ ଚମ୍ପୂ" ଓ "ମାନଭଞ୍ଜନ" ନାମକ ଏକ କାବ୍ୟ ପ୍ରଣୟନ କରି ବଡ଼ଗଡ଼ ରାଜାଙ୍କ ଦ୍ୱାରା କବିଚନ୍ଦ୍ର ଉପାଧିରେ ଭୂଷିତ ହୋଇଥିଲେ । କିଛିକାଳ ପରେ ବଡ଼ଗଡ଼ ଦେବାନ କାର୍ଯ୍ୟରୁ ଅବସର ନେଲାପରେ ଗଡ଼ଗୁରୁ ଧରାକୋଟ ରାଜ୍ୟାଧିପତି ବ୍ରଜସୁନ୍ଦରଙ୍କ ପଣ୍ଡିତ ସଭାରେ ସଭ୍ୟରୂପେ ନିର୍ବାଚିତ ହୋଇ କିଛିକାଳ ଅତିବାହିତ କରିଥିଲେ । ସେହି ସମୟରେ ରାଜାଙ୍କ ପୃଷ୍ଠପୋଷକତା ଲାଭକରି ସେ ଅନେକ କବିତାଲେଖି ରାଜାଙ୍କ ନାମରେ ଉତ୍ସର୍ଗ କରିଥିଲେ । ତାଙ୍କ ପାଣ୍ଡିତ୍ୟ ଓ କବିତା ଗୁଣରେ ମୁଗ୍ଧ ହୋଇ ଚିକିଟି, ଖଲ୍ଲିକୋଟ, ଆଠଗଡ଼, ପାରଳାଖେମୁଣ୍ଡି ଓ କୁମାର ରାଜାମାନେ ନିଜ ରାଜଧାନୀକୁ ତାଙ୍କୁ ଆମନ୍ତ୍ରଣ କରି ବହୁ ପାରିତୋଷିକ ଦେଉଥିଲେ । ସେ ରାଧାପ୍ରେମଲୀଳା, ରାସପଞ୍ଚାଧ୍ୟାୟୀ, କକାରାଦି କ୍ଷକାରାନ୍ତ ଜଣାଣ, ପତିତ-ପାବନାଷ୍ଟକ,ତ୍ରିଘ୍ନା, କିଶୋର କୋଇଲି, ରାମ କୋଇଲି, ପାର୍ଥସାରଥି ଜଣାଣ, ଚୌପଦୀ ଜଣାଣ ପ୍ରଭୃତି ରଚନା କରିଛନ୍ତି ।

କବି ଜଗନ୍ନାଥେଶ୍ୱରଙ୍କ ଜଣାଣଟି 'କ'ଠାରୁ 'କ୍ଷ'ପର୍ଯ୍ୟନ୍ତ ଚଉତିରିଶ ଗୋଟି ଅକ୍ଷରକୁ ଆଗରେ ରଖି ଚଉତିରିଶ ପଦରେ ରଚନାକର ସ୍ୱୀୟ ଗୁଣଗ୍ରାହୀ ରାଜାଙ୍କନାମରେ ଭଣିତକରିଛନ୍ତି । ସେଥିର ଦୃଷ୍ଟାନ୍ତ ନିମ୍ନରେ ଦିଆଗଲା ।

କ୍ଷୋଭ ମୋ ନିବାରିଲେ ହରି କ୍ଷମକେ ଅଛୁ ତନିପୁରି
କ୍ଷିତିପତି ଶ୍ରୀ ବ୍ରଜ ସୁନ୍ଦର ବୋଲେ ଆଜ ମୋ ଜୀବନ ଯିବଟି
ବାହାର ହେ କ୍ଷୀର ତୀରୁ !

ସେ କେତେକ ଚମ୍ପୂ ରଚନାକରି ସ୍ୱୀୟ ଗୁଣଗ୍ରାହୀ ରାଜାଙ୍କ ନାମରେ ମଧ୍ୟ ଭଣିତ କରିଥିଲେ ।

ଠେକି କରୁଥାଏ କେତେ ଠୋକାଙ୍କ ପରି କରଇ ସେ
ମୋତେରେ ଜାଇଫୁଲ ।
ଠାକୁଥିଲା କେତେ ମତେ ।
ଠାରକାହା ହସିହସି, ଠାକୁର ବ୍ରଜସୁନ୍ଦରରେ ରସିରେ
ଜାଇଫୁଲ –
ଠେକେ ସିଂହପଦେ ଭାଷି ।

ତାଙ୍କ ଲେଖାଗୁଡ଼ିକ ଅଳଂକାର—ବିଶିଷ୍ଟ, ନାନାରସ ସମ୍ବଳିତ, ପ୍ରାଚୀନ ଓ ଆଧୁନିକ ସାହିତ୍ୟ ଛିଟା । କବିସୂର୍ଯ୍ୟଙ୍କ କବିତାନୁଯାୟୀ ବିଭିନ୍ନ ଛନ୍ଦ ନିବନ୍ଧ, ଭାବ, ଭାଷା ଓ ପଦ ଲାଳିତ୍ୟରେ ସୁସଜ୍ଜିତ ହୋଇଛି । ତାଙ୍କ କବିତାରୁ ପାଠକ ମାନଙ୍କ ପାଇଁ ଦୁଇଟି ଉଦାହରଣ ଦିଆଗଲା ।

୧) ତବ ପ୍ରସାଦୁଁ ହରି ପାଇଲା ପାଇ କଷ୍ଟି ଆରତଡ଼ାକେ ଦେଲା ଦେଖା
ତମାଳ ଶ୍ୟାମ ତନୁ ରାଧିକା ପ୍ରତିବନ୍ଧୁ ନପାଇଲେ କେ କରି ରକ୍ଷା
ହେ ତେଜୋମୟୀ ।

୨) ଚନ୍ଦ୍ରକପଟ ହେ ! ଚଉ ବଡ଼ୁଛକ ମୋର
ଗୃହକରକୁ ଗୃହ୍ନିବାର ଜଣାହେଲେ ନନ୍ଦାସିନା ପ୍ରଭୁଙ୍କର

ଗଞ୍ଜାମର ବହୁ ରାଜଦରବାରରେ ସମ୍ମାନିତ ଓ ପୁରସ୍କୃତ ହୋଇଥିଲେ ମଧ୍ୟ ରାଜାମାନଙ୍କ ଅନୀତି, ଦୁର୍ମତି ଓ ଅଶୋଭନୀୟ ଆଚରଣ ବିରୁଦ୍ଧରେ ଅତି ନିର୍ଭୀକ ଭାବେ କେତେକ କବିତାରେ ତାଙ୍କ ମତ ଉଲ୍ଲେଖ କରିଛନ୍ତି ।

ରାଜାହୋଇ ମଦମତ୍ତ ନଗୃହ୍ନାନ୍ତି ପରଲୋକ ?
ରାଧାମାଧବଙ୍କ ନାମ ଯେ ଧରଇ ନିନ୍ଦନ୍ତି ତାଙ୍କୁ ଭକ
ରାତ୍ରି ହେଲେ ମାତି ପରଦାରା କତି ରୋଷେ ଭଷନ୍ତି ଗୁମାନେ
ରାମକୃଷ୍ଣ ହରି ବୋଲିବାର ଆଜ ନଶୁଣନ୍ତି ଥରେ କାନେ

ଧରାକୋଟ ରାଜା ବ୍ରଜସୁନ୍ଦର କବିଙ୍କ କବିପ୍ରତିଭା ଓ ଗୁଣରେ ମୁଗ୍ଧ ହୋଇ ପିତଳ ନିକଟସ୍ଥ ହରିପୁର ପାଇତାଇ ଗ୍ରାମରେ ୬୦ ଭରଣ ଭୂମି ଦାନ କରିଥିଲେ । ବ୍ରଜସୁନ୍ଦରଙ୍କ ମୃତ୍ୟୁପରେ ହନୁମାନ ରାଜକାର୍ଯ୍ୟ ସୁଚାରୁରୂପେ ଚଳାଇବା ହେତୁ ତାଙ୍କ ଧର୍ମପତ୍ନୀ ହରିପୁର ପାଇତାଇରେ ପୁନର୍ବାର କବିଙ୍କୁ ୬୦ ଭରଣ ଜମି ଦାନ କରିଥିଲେ । ବ୍ରଜସୁନ୍ଦରଙ୍କ ମୃତ୍ୟୁପରେ ଇଂରେଜ ସରକାର କେତେକ ଦୁର୍ବୃତ୍ତ ପ୍ରଜାଙ୍କୁ ପ୍ରୋତ୍ସାହିତ କରି ରାଜ୍ୟରେ ବିଶୃଙ୍ଖଳା ସୃଷ୍ଟି କରି ରାଜ୍ୟର ସମ୍ପଦ ବଳକାରରେ ଅପହରଣ କରି ଧରାକୋଟ ରାଜ୍ୟରୁ ରାଜପଦ ଲୋପକରି ନିଜ ପରିଚାଳନାଧୀନକୁ ନେଇ ଯିବା ପାଇଁ ଷଡ଼ଯନ୍ତ୍ର କରିଥିଲେ । ସେ ସମୟରେ କବି ଇଂରେଜ ସରକାରଙ୍କ ଅନ୍ୟାୟ ବିରୁଦ୍ଧରେ ଏକ ଦୀର୍ଘପଦୀ ରଚନା କରି ରାଜମାତା ପଦ୍ମମାଳାଙ୍କ ନାମରେ ଭଣିତକରି ବ୍ରିଟିଶ ସରକାରଙ୍କ ଅମଳର ରାଜ ରାଜୁଡ଼ା ଶାସନର ଯେଉଁ ଚିତ୍ର ପ୍ରଦାନ କରିଛନ୍ତି ତାର ଦୁଇଟି ପଦ ଏଠାରେ ଉଦ୍ଧାର କରାଗଲା ।

କନକ ରଜତ ଭୂଷଣ ଯାବତ ସହିତେ ନେଇ
କର ଦୁର୍ବିଧିର ଖୋଜୁଅଛନ୍ତି ମୋର ଇଜ୍ଜତ ନେବାର ପାଇଁ ହେ
କନ୍ଦଳ ଲଗାଇ ତାଲୁକା ଯାକର ପ୍ରଜାଙ୍କୁ କରାଇ ମେଳ
କଉଡ଼ିମାନଙ୍କ ଆସିବା ବାବତ ନଦେଇ କଲେଣି ଗୋଳହେ ।

ହନୁମାନ ଜଣେ କର୍ମନିଷ୍ଠ, ବ୍ରହ୍ମନିଷ୍ଠ, ଦେବନିଷ୍ଠ ଓ ଧର୍ମନିଷ୍ଠ ବ୍ୟକ୍ତି ଥିଲେ ସେନିଜ ଜନନୀଙ୍କ ପରାମର୍ଶ କ୍ରମେ ନିଜଗ୍ରାମରେ ବ୍ରହ୍ମେଶ୍ୱର, ରଘୁନାଥ, ସୂର୍ଯ୍ୟନାରାୟଣ, ଶ୍ରୀ ଚୈତନ୍ୟ ଓ ମାଧବ ମନ୍ଦିର ନିର୍ମାଣ ପାଇଁ ଗଂଜାମର ବିଭିନ୍ନ ରାଜାମାନଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇ ଏକବିଶାଳ କୀର୍ତ୍ତି ପ୍ରତିଷ୍ଠା କରି ପାରିଛନ୍ତି ।

ସଂସ୍କୃତରେ କବିଙ୍କର ଅଗାଧ ପାଣ୍ଡିତ୍ୟଥିଲା । ଏଣୁ ସେ ବହୁ ସଂସ୍କୃତ ଶ୍ଳୋକ ରଚନା କରି ଯାଇଛନ୍ତି । ସେ ହିନ୍ଦୀ, ଓଡ଼ିଆ, ଇଂରେଜୀ ଓ ତେଲୁଗୁ ଛନ୍ଦର ଅପୂର୍ବ ସମନ୍ୱୟରେ କେତେକ ସଙ୍ଗୀତ ରଚନା କରିଛନ୍ତି । ଲେଖାର ବହୁଳତା ଦୃଷ୍ଟିରୁ ତାହା ଏଠାରେ ଉଲ୍ଲେଖ କରିପାରି ପାରୁନାହିଁ । ଓଡ଼ିଶାର ଅନ୍ୟାନ୍ୟ କବିମାନଙ୍କ ପରି ସେ ନିଜ ସାହିତ୍ୟକୁ ଆଦରସରେ ପୂର୍ଣ୍ଣକରି ନାହାଁନ୍ତି ସେଥିଲେ ଭଗବାନଙ୍କର ଏକ ନିଷ୍ଠଭକ୍ତ ଓ ସାଧକ । ଏଣୁ ତାଙ୍କର ଲେଖା ପାଠକଲାବେଳେ ପାଠକ ଅନୁଭବ କରେ ଯେପରି ଭକ୍ତି ରୂପକ ମନ୍ଦାକିନୀ ଧାରାର କଳ କଳ ନାଦ ପ୍ରତିଧ୍ୱନିତ ହେଉଛି ।

ଦୀର୍ଘଦିନ ଧରି ସାରସ୍ୱତ ସାଧନାପରେ ସେ ୧୮୯୧ ମସିହା ପୌଷ ଶୁକ୍ଳ ଏକାଦଶୀ ଦିନ ମର୍ତ୍ତ୍ୟଲୀଳା ସମ୍ବରଣ କରିଥିଲେ ।

# ଭୁବନେଶ୍ୱର ମିଶ୍ର କବିଚନ୍ଦ୍ର

ଭୁବନେଶ୍ୱର କବିଚନ୍ଦ୍ର ଧର୍ମକୋଟର ତିଳୋତ୍ତମାଦେଇ ପୁରରେ ଏକ ଶ୍ରୋତ୍ରିୟ ସାଂସ୍କୃତିକ ଐତିହ୍ୟ ସମ୍ପନ୍ନ ପରିବାରରେ ଜନ୍ମଗ୍ରହଣ କରିଥିଲେ । କବିଙ୍କ ପୂର୍ବପୁରୁଷ କୋଠସାମ୍ୟା ଗୌତମ ଗୋତ୍ରୀୟ ବାସୁଦେବ ଦୀକ୍ଷିତ ପୁରୀ ବଳଭଦ୍ରପୁରରୁ ଆସି ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପ୍ରତିଷ୍ଠିତ ତିଳୋତ୍ତମା ଦେଇପୁର ଶାସନର ପ୍ରଥମ ଦାନାଧ୍ୟକ୍ଷରୂପେ ରାଜାଙ୍କ-ଠାରୁ ଦାନଗ୍ରହଣ କରିଥିଲେ । ଏହି ବଂଶରେ ସ୍ମୃତି, ଶ୍ରୁତି, ପୁରାଣ, ପାରଦର୍ଶୀ ପଣ୍ଡିତ ସ୍ୱର୍ଗୀୟ ହରିହର ମିଶ୍ରଙ୍କ ଔରସରେ କୁନ୍ଦଦେଈଙ୍କ ଗର୍ଭରୁ ୧୮୯୧ ମସିହାରେ କବି ଜନ୍ମଗ୍ରହଣ କରିଥିଲେ । କବିଙ୍କ ପିତା ହରିହର ମିଶ୍ର ଓ ତାଙ୍କ ପିତୃବ୍ୟ ଲୋକନାଥ ମିଶ୍ର ଯଥାକ୍ରମେ ରାଜା ଜଗନ୍ନାଥସିଂହ ରାଜସଭା ଅଳଂକୃତ କରି ଓଡ଼ିଆ ଓ ସଂସ୍କୃତ ସାହିତ୍ୟ ଚର୍ଚ୍ଚାରେ ମନୋନିବେଶ କରିଥିବା ଜଣାଯାଏ । ଲୋକନାଥ ମନ୍ତ୍ରୀଙ୍କ ଦ୍ୱାରା ସରଳ ଓଡ଼ିଆ ଭାଷାରେ ଅନୁବାଦିତ ଏକ ସ୍ମୃତିଗ୍ରନ୍ଥ ଅଦ୍ୟାପି ଏ ଅଞ୍ଚଳର ଜନଜୀବନକୁ ନିୟନ୍ତ୍ରଣ କରୁଥିବା ଜଣାଯାଏ ।

କବି ବାଲ୍ୟକାଳରୁ ପିତୃଶୂନ୍ୟଥିଲେ । ଏଣୁ ତାଙ୍କର ବାଲ୍ୟଶିକ୍ଷା ପିତୃବ୍ୟ ଲୋକନାଥ ମିଶ୍ରଙ୍କ ତତ୍ତ୍ୱାବଧାନରେ ହୋଇଥିଲା । ଏହି ବିଷୟ କବି ସ୍ୱୀୟ ହସ୍ତଲିଖିତ ଗୋବିନ୍ଦ ବିରୁଦାବଳୀ ଗ୍ରନ୍ଥ ସମାପ୍ତିରେ ଉଲ୍ଲେଖ କରିଛନ୍ତି

ଧୀବିଷ୍ଟର ତିଳୋତ୍ତମା ପୁର ଗୋଷ୍ଠୀ ଗରିଷ୍ଠ ଶ୍ରୀ ହରିହର ମିଶ୍ରସ୍ୟ
ସୁତ ଭୁବନେଶ୍ୱରେଣ ଲିଖିତା ବିରୁଦାବଳୀ ଟୀକାଯୁକ୍ତା
ବିଦ୍ୟାପ୍ରଦାନ କୁଳସ୍ୟ ବଶୀଶ୍ୱରସ୍ୟ ଧ୍ୟାୟାମ୍ଭୁକୁନ୍ଦ ପଦପଙ୍କଜ
ଚିହ୍ନ ଷଡ଼ଂଘ୍ରେଃ

ଲୋକେଶ୍ୱରସ୍ୟ ଚପିତୃବ୍ୟ ଗୁରୋଃ ସୁଶିଷ୍ୟୋଃ
ଲେଖଂ ଲାଲେଖ ସକଳଂ ଭୁବନେଶ୍ୱରାଖ୍ୟଃ
(ଲୋକେଶ୍ୱରସ୍ୟ – ଲୋକନାଥ ମିଶ୍ରସ୍ୟ)

ଭୁବନେଶ୍ୱର ନିଜ ପିତୃବ୍ୟଙ୍କଠାରୁ ଶ୍ରୁତି, ସ୍ମୃତି, କାବ୍ୟ, ନାଟକ, ପୁରାଣ, ଅଳଂକାର ଓ ବ୍ୟାକରଣ ଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଲାଭକରି ରାଜା ବ୍ରଜସୁନ୍ଦରଙ୍କ ପରମ ପ୍ରୀତି ଭାଜନ ହେବାକୁ ଲାଗିଲେ । ସେହି ଦିନଠାରୁ ସେ ମୃତ୍ୟୁପାଏ ତାଙ୍କର ପ୍ରଗାଢ ଚେଷ୍ଟା ଓ ନୈସର୍ଗିକ କବିପ୍ରତିଭା ବଳରେ ସେ ବିଭିନ୍ନ ଚୌତିଶା, ଚୌପଦୀ, ବ୍ରଜସୁନ୍ଦର ମୋହନାଖ୍ୟ ଚମ୍ପୂ ପ୍ରଭୃତି ରଚନାକରି ରାଜଦରବାରରେ ସମ୍ମାନ ଲାଭକରିଥିଲେ । ଶିକ୍ଷାଲାଭ ସମୟରେ ସେ ନିଜ ପିତୃବ୍ୟଙ୍କ ଅଙ୍କିତ ସାରରେ ଋଷିକୁଲ୍ୟାନଦୀ ଉତ୍ତର ତଟରେ ଶ୍ରୀ ଚନ୍ଦ୍ରକଲ୍ଲେଶ୍ୱର ଓ ବୈଦ୍ୟନାଥ ମହାପ୍ରଭୁଙ୍କ ମଧ୍ୟରେ ଅବସ୍ଥିତ ମହାଶ୍ମଶାନ ଉଦୁମ୍ବର ତୋଟାରେ ନିଜ କବିତ୍ୱ ଶକ୍ତିର ସ୍ଫୁରଣ ପାଇଁ ରାତ୍ରିରେ ଗୁପ୍ତ ସାଧନ ତନ୍ତ୍ରମତ ଅନୁସାରେ ମନ୍ତ୍ରୋପାସନା କରିଥିଲେ । କିଛି କାଳପରେ ସେ ତାଙ୍କ ସାଧନାରେ ସିଦ୍ଧିଲାଭ କଲେ ଓ ସେହି ଦିନଠାରୁ ତାଙ୍କ କବି ପ୍ରତିଭାର ଚରପ୍ରକାଶ ହୋଇଥିଲା ।

କଥିତ ଅଛି ସେ ସମୟରେ ଗଂଜାମର ବିଭିନ୍ନ ରାଜଦରବାର ଭିତରେ ସଙ୍ଗୀତ, ସାହିତ୍ୟ ଓ ଶାସ୍ତ୍ରାଲୋଚନାରେ ପ୍ରବଳ ପ୍ରତିଦ୍ୱନ୍ଦିତା ଚାଲିଥିଲା । ଯେଉଁ ରାଜଦରବାରର ପଣ୍ଡିତମାନେ ତାଙ୍କର ସାହିତ୍ୟ ରଚନାରେ ଓ ଶାସ୍ତ୍ରାଲୋଚନାରେ ଅନ୍ୟ ରାଜ୍ୟର ଦରବାରର ପଣ୍ଡିତ ମାନେ ଶ୍ରେଷ୍ଠ ବିବେଚିତ ହୋଇଥିଲେ ଗୁଣଗ୍ରାହୀ ରାଜନ୍ୟବୃନ୍ଦ ସେମାନଙ୍କୁ ଉତ୍ସାହିତ କରିବାପାଇଁ ଉପଯୁକ୍ତ ଉପାଧିରେ ଭୂଷିତକରି ପ୍ରଚୁର ଉପଢୌକନ ସହ ଭରଣ ପୋଷଣ ପାଇଁ ଜମିଦାନ କରୁଥିଲେ । ସେ ସମୟରେ ବ୍ରାହ୍ମଣଗ୍ରାମରେ ହନୁମାନ କବିଚନ୍ଦ୍ର, ହିଞ୍ଜିଳି ଚଦ୍ମଚରଣ କବିଚନ୍ଦ୍ର ଓ ଧରାକୋଟରେ

ଭୁବନେଶ୍ୱର କବିଚନ୍ଦ୍ରଙ୍କ ଭିତରେ ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ରଚନାରେ ପ୍ରବଳ ପ୍ରତିଦ୍ୱନ୍ଦିତା ଚାଲିଥିବା ହେତୁ ପ୍ରତ୍ୟେକେ ସେମାନଙ୍କର କାବ୍ୟକବିତା ରଚନାକରି ନିଜର ପୃଷ୍ଠପୋଷକ ରାଜାଧିମାନଙ୍କଠାରୁ ଓ ଅନ୍ୟାନ୍ୟ ରାଜଦରବାରରୁ ଯଥୋଚିତ ସମ୍ମାନଲାଭ କରିଥିଲେ ।

ଜନଶ୍ରୁତିରୁ ଜଣାଯାଏ ଏ ଧରାକୋଟ ନିକଟବର୍ତ୍ତୀ ବଡ଼ଗଡ଼ ରାଜଦରବାରରେ କବିସୁଲଭ ବିଚକ୍ଷଣ ପାଣ୍ଡିତ୍ୟର ନିଦର୍ଶନ ଦେଇପାରି ନଥିବା ବିଷୟ ଅନ୍ୟଜଣେ ମହାରଥୀ ଅସୂୟାପରାୟଣ ପଣ୍ଡିତଙ୍କଠାରୁ ଶ୍ରବଣକରି ରାଜା ବ୍ରଜସୁନ୍ଦର କବିଙ୍କପ୍ରତି କ୍ରୁଦ୍ଧ ହୋଇ ତାଙ୍କୁ ରାଜଦରବାରରୁ ବିତାଡିତ କରି ଦେଇଥିଲେ । ଏହି ନିର୍ବାସନଦଣ୍ଡକୁ ରହିତ କରିବାପାଇଁ ଯେଉଁ ପତ୍ରଖଣ୍ଡି ପଦ୍ୟାକାରରେ ଲେଖିଥିଲେ ତାହା ବ୍ୟର୍ଥ ପ୍ରତିପାଦନ କରୁଛି । ପଦ୍ୟଟି ରାଜାଙ୍କ ନାମରେ ଭଣିତ ହୋଇଛି ସତେ ଯେପରି ରାଧା ଲଳିତାଙ୍କ ଦ୍ୱାରା କୃଷ୍ଣଙ୍କ ନିକଟକୁ ତାଙ୍କର ଅନୁଗ୍ରହ ପ୍ରାର୍ଥୀ ହେବାପାଇଁ ନିବେଦନ କରିଛନ୍ତି । ଅନ୍ୟ ଅର୍ଥରେ କବି ରାଜାଙ୍କ ଆଶ୍ରୟଲାଭ କରିବା ପାଇଁ ତାଙ୍କର ମନୋବାଞ୍ଛା । ରାଜାଙ୍କ ନିକଟରେ ପ୍ରକାଶ କରିବା ପାଇଁ ତାଙ୍କ ବନ୍ଧୁଙ୍କ ନିକଟକୁ ପତ୍ର ଲେଖିଛନ୍ତି । ପତ୍ରର କିୟଦଂଶ ନିମ୍ନରେ ଦିଆଗଲା ।

ଶ୍ୟାମଙ୍କୁ ମୋଦେ କହିବୁ ପଦେ

ସହି ତୁ ମୋହର ପ୍ରାଣ ସଦୃଶ   କହିବିକ ଅବା ଚିତେ ବିଶେଷ
ବ୍ୟଥାପାଅ ଥରେ କଥା ପ୍ରସଙ୍ଗରେ ଯେନକି ସେ ଅବା ନଯେନକୁ ହୃଦେ (୧)
ବଧିବକ ତୁମ୍ଭେ ଅଧୀନଜନ   ବଧିରେତ କ୍ଷମାନିଧି ଆପଣ
ଧରାକୋଟାଧିପ ବ୍ରଜ ସୁନ୍ଦର   କେଶରୀ ଭୂଷଣେ ଏର ସେ ଗିର
ଶଠଭାର ମୋର କୁଳାଳ ବାର   ଜଣାଇଣ ତାଙ୍କ ପଡ଼ ପଦ୍ମପାଦେ

ଏହି ପଦ୍ୟ ପାଠକରି ଗୁଣଗ୍ରାହୀ ରାଜା ତାଙ୍କୁ ପୁନାଙ୍କର ଯଥୋପଯୁକ୍ତ ସମ୍ମାନ ଦେଇ ନିଜର ପୂର୍ବ ସ୍ଥାନକୁ ବରଣ କରିଥିଲେ । ରାଜା ବ୍ରଜସୁନ୍ଦର ଓଡ଼ିଆ ସାହିତ୍ୟ କାନନକୁ ଅମୃତ ମୟୀ ସଙ୍ଗୀତ ନିସ୍ୱନରେ ମୁଖରିତ କରିବା ପାଇଁ କବିଚନ୍ଦ୍ରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ତେଣୁ କବିଚନ୍ଦ୍ର ସ୍ୱକୀୟ ପ୍ରଭୁଦତ୍ତ ଉପାଧିର ମର୍ଯ୍ୟଦା ଅକ୍ଷୁଣ୍ଣ ରଖିବା ପାଇଁ ସ୍ୱହସ୍ତ ରଚିତ ଅଧିକାଂଶ କାବ୍ୟ, କବିତା, ଚଉତିଶା ଓ ଜଣାଣ ଗୁଡ଼ିକ ବ୍ରଜସୁନ୍ଦରଙ୍କ ନାମରେ ଭଣିତ କରିଛନ୍ତି । ତାଙ୍କ ରଚିତ ବ୍ରଜସୁନ୍ଦର ମୋହନ ଚମ୍ପୂର ସଂସ୍କୃତ ଶ୍ଳୋକ ଓ ଓଡ଼ିଆ ପଦ୍ୟର ପଦଲାଳିତ୍ୟ ଓ ଶବ୍ଦବିନ୍ୟାସ କେତେ ସ୍ଥାନରେ କବିସୂର୍ଯ୍ୟଙ୍କ ହିଷାକୁ ଟପିଯାଇଥିବା ମନେହୁଏ । କବି ଉକ୍ତ ଚମ୍ପୂରେ କବିସୂର୍ଯ୍ୟଙ୍କୁ ଅନୁକରଣ କରି ପ୍ରଥମେ ସଂସ୍କୃତ ଶ୍ଳୋକ ଓ ତଦର୍ଥ ବୋଧକ ପଦ୍ୟ ରଚନା କରିଛନ୍ତି । କିଶୋର ଚନ୍ଦ୍ରାନନ୍ଦ ଚମ୍ପୂରେ ଚଉତିଶା ଧରଣରେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ପ୍ରତ୍ୟେକ ଅକ୍ଷରକୁ ଆଦ୍ୟରେ ରଖି ଦୁଇଗୋଟି ଲେଖା ଛାନ୍ଦ ଏପରି ୬୮ ଗୋଟି ଛାନ୍ଦ ବିଭିନ୍ନ ରାଗରେ ରଚନା କରି ନିଜ ପାଣ୍ଡିତ୍ୟର ଅସାଧାରଣ ମୌଳିକତା ଫୁଟାଇ ପାରିଛନ୍ତି । ଏପର୍ଯ୍ୟନ୍ତ ଯେତେଜଣ କବି ଓଡ଼ିଆରେ ଚମ୍ପୂକାବ୍ୟ ରଚନା କରିଛନ୍ତି କବିଚନ୍ଦ୍ରଙ୍କ ଚମ୍ପୂକୁ ବାଦଦେଲେ ସମସ୍ତଙ୍କର ଶୈଳୀ ଓ ଲିଖିତ ଭଙ୍ଗୀ ଗୋଟିଏ ପ୍ରକାରର ହୋଇଛି ।

ତାଙ୍କର ଏହି କାବ୍ୟର ନାୟକ ଶ୍ରୀକୃଷ୍ଣ ଓ ନାୟିକା ରାଧା । ସମସ୍ତ କାବ୍ୟଟି ନାୟକ, ନାୟିକା ଓ ବିଶାଖାର ଉକ୍ତି ପ୍ରତ୍ୟୁକ୍ତିରେ ପର୍ଯ୍ୟବେଷିତ ହୋଇଛି । ଏମାନଙ୍କ କଥାବାର୍ତ୍ତା କବିଙ୍କ ଲେଖନୀରେ ଜୀବନ୍ତ ହୋଇ ପାରିଛି । ହନେ ବିଶାଖା ନିଜର ପ୍ରିୟ ସହଚରୀ ରାଧିକାଙ୍କ ବିଷଣ୍ଣ ବଦନ ଦେଖି ବିବର୍ତ୍ତତାର କାରଣ ଜିଜ୍ଞାସା କରୁଛନ୍ତି । ଏହିଠାରୁ ମଙ୍ଗଳଚରଣଟି ସଂସ୍କୃତ ଶ୍ଳୋକରେ ଉଲ୍ଲେଖ କରାଯାଇ 'କ' ଚମ୍ପୂଟି କିପରି ଆରମ୍ଭ ହୋଇଛି ଦେଖାଯାଉ

କୁଜ୍ଞାନ ଧ୍ୱାନ୍ତ ଧାର-ବୃତ ବିଷମ ମତ ଧ୍ୱସ୍ତ ତ୍ରୋଣ ବିରୂପାମ୍
ଗ୍ରନ୍ଥାରଣ୍ୟସ୍ଥ ଶବ୍ଦ ଭ୍ରମ ଭୁଜଙ୍ଗଭୟ ଭ୍ରଷ୍ଟ ଭକ୍ତାର୍ତ୍ତି ହର୍ତ୍ତ୍ରୀଂ
ପଞ୍ଚାଶଦ୍ଧ ବର୍ଣ୍ଣରୂପା ମଖିଳ ଗଳବଳ ପ୍ରାନ୍ତପୀଠାନ୍ତରସ୍ଥା
ମାଦ୍ୟାଂ ଯାବନ୍ତ କବିଭ୍ୟ ଗ୍ରହିଳ ଜନପରାଂ ଶାରଦାଂ ତାଂ ନମାମି

କିଶୋରି ! କହ କପଟ ନକରି ।
କେଣେ କଳାକର ମଣ୍ଡଳ ସଞ୍ଚର   ମୁଖଦର୍ପଣେ ମ୍ଳାନ ପରିରେ (ପଦ)
କଳ୍ପକରେ କର୍ଣ୍ଣ କେଳ ଉପବନ   ମୁରଳୀ ସ୍ୱର ଶ୍ରବଣେ
କହୁକହୁ ପୁଲକାଇତ ଦେଲୁଣି   ସଖଣ୍ଡ ସାର ଶ୍ରବଣରେ
କିକାଳିନ୍ଦୀତଟ ନିକଟରେ ଭେଟ   ହେଲା ଚନ୍ଦ୍ରକ ମଉଳ
କାହିଁକି କୁନ୍ଦନ କାଞ୍ଚନ ଲତାକୁ   ଯାଉଛୁ ଡେରେ ମଉଳରେ

ଏବେ ଗୃଢ଼ଭାବ ପୂର୍ଣ୍ଣ ବିଶାଖା ପ୍ରେମ ଜର୍ଜରିତ ରାଧାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଅନୁରାଗ ସଞ୍ଚାର କରିବା ପାଇଁ ଶ୍ରୀକୃଷ୍ଣଙ୍କ ନିକଟକୁ ଯାଇ ତାଙ୍କ ଶରୀର ମ୍ଳାନ ଓ ମୁଖଶୋଭା ନିସ୍ତେଜ ଦିଶୁଥିବାର କାରଣ ଜିଜ୍ଞାସା କଲେ । ଶ୍ରୀକୃଷ୍ଣଙ୍କ ମୁଖଭଙ୍ଗୀର ବର୍ଣ୍ଣନା କବି କିପରି କରିଛନ୍ତି ଦେଖାଯାଉ—

ନିଦ୍ରାମୀଳୋପୃକ୍ତ ଭଙ୍ଗୀରୁ ବିକଳ ଦିଶୁଛି ନୟନ ବେନି
ନାସାନଳ କରୁ ଅନଳ ପ୍ରସରୁ ଅଚ୍ଛିତ ତପତ ଘେନିହେ ।
ନନ୍ଦନନ୍ଦନ ହେ !
ନିକୁଞ୍ଜ ମଞ୍ଜୁ ବିଳାସୀ
ବିଶ୍ୱାସ ନିକଟ ହୋଇଛି ପ୍ରକଟ ଝାଞ୍ଜିବାଜ ଗଳାପରିହେ !

ଏହାପରେ କବି ବିଶାଖାଙ୍କ ଦ୍ୱାରା ରାଧାକୃଷ୍ଣଙ୍କ ମଧ୍ୟରେ ଅପୂର୍ବ ପ୍ରଣୟ ସଞ୍ଚାର କରାଇ ଶେଷରେ ଦୁହିଁଙ୍କର ମିଳନ ଘଟାଇଛନ୍ତି । ମିଳନ ପରେ

ଶ୍ରୀକୃଷ୍ଣ ଓ ରାଧାଙ୍କ ଆଳାପ, ସଖୀମାନଙ୍କ ଉକ୍ତି ପ୍ରତ୍ୟୁକ୍ତି ଓ ପରଶେଷରେ ଭଗବାନଙ୍କୁ ପ୍ରାର୍ଥନା କରି କାବ୍ୟଟିକୁ ସମାପ୍ତ କରିଛନ୍ତି ।

ଏହି ଚମ୍ପୂ ବ୍ୟତୀତ କବି କୃଷ୍ଣ ପ୍ରିୟାଚଉତିଶା, ଶଙ୍କର ପ୍ରିୟାଚଉତିଶା ଆଦ୍ୟାହ୍ଲାଦିନୀ ଚଉତିଶା ଓ ସର୍ବସାରୀ ଚଉତିଶା (ରାଗ – ଭୃମ୍ପା) ରଚନା କରିଛନ୍ତି । ଶେଷୋକ୍ତ ଚଉତିଶାରେ 'କ' ଠାରୁ 'କ୍ଷ' ଯାଏ ଓ ପୁନର୍ବାର 'କ୍ଷ' ଠାରୁ 'କ' ଯାଏ ଓଲମ ବିଲୋମରେ ୬୮ ଗୋଟି ପଦ ଜନ ମନୋହର ହାରଣୀ ଭାଷାରେ କପରି ଉଲ୍ଲେଖ କରିଛନ୍ତି ତାର ଦୁଇଟି ପଦ ଦିଆଗଲା ।

## ରାଧାଙ୍କ ଉକ୍ତି (ଭୃମ୍ପା ରାଗ)

କଳଙ୍କାମୃତ ବିଗ୍ରହ ହେ   କଳଙ୍କ ଉଣା ମୋ ସ୍ନେହ
କଞ୍ଜଚରଣ ସେବକୁଟା ମୁଁ ପରା କୃଷ୍ଣ ଚନ୍ଦ୍ରହେ
କାହିଁକି କଅନୁଗ୍ରହ ।
କାନ୍ତ କୃଷ୍ଣଚନ୍ଦ୍ରହେ ! କାହିଁକି କ ଅନୁଗ୍ରହ ।
ନେବରୁ ଝିଙ୍କାଇ ଓ ଜେହେ   ନାହିଁକାଳି ସିନା ଲଜେ
ନତି ଧରାକୋଠ ଧରଣୀ ମୂଲୁଠ ନଠବରହେ
ନଷ୍ଟନେ ତୁମ୍ଭଙ୍କୁ ଭଜେ
ନଷ୍ଟେ ନଠବରହେ   ନଷ୍ଟନେ ତୁମ୍ଭଙ୍କୁ ଭଜେ

## କୃଷ୍ଣଙ୍କ ପ୍ରତ୍ୟୁକ୍ତି

ହରିତ ଚନ୍ଦ୍ରମା ମୁହଁରେ ହରି ମହିମା ମୋ ସହ
ହାରମଣ୍ଡାହାର ହୁଅ ମୋ ହୃଦୟେ ହାଟ ଗତରେ
ହସ୍ତଗତ ଧନ ତୁହ
ହେଲେ ହାଟଗତରେ   ହସ୍ତଗତ ଧନ ତୁହ ।

ତାଙ୍କ ଶଙ୍କର ତ୍ରିପୁରା ଚଉତିଶାରୁ ଗୋଟିଏ ଦୃଷ୍ଟାନ୍ତ ଉଲ୍ଲେଖ କରାଗଲା ।

କ୍ଷୀରସିନ୍ଧୁ ସଙ୍କାଶ କାଶକୁସୁମ ମୋଲ୍ଲାସ ଲାସ୍ୟମଣ୍ଡନ ଶ୍ରୀଅଙ୍ଗଙ୍କୁ

କ୍ଷଣେ ମୋ ନେତ୍ରପୁର ହର ଉଦ୍ଧାର ଧର ଧରମ ପୁରୁଷ ଦାସକୁହେ

କ୍ଷମାନିଧି ।

କ୍ଷମେ ଦ୍ୱିଜ ଭୁବନେଶ୍ୱର   କ୍ଷିପ୍ରେହେଉ କୃପା ଈଶ୍ୱର

ଖ୍ୟାତ ମୁଁ ପୋଷ୍ୟପରା   ପରାଣି ବସୁନ୍ଧରା

ଧରାକୋଠ ନରେଶଙ୍କର ହେ !

ଭାଷା ଓ ଶୈଳୀ ଦୃଷ୍ଟିରୁ ବିଚାର କଲେ ଏଗୁଡ଼ିକ ଏକେଏକ ଅଭିନବ ସୃଷ୍ଟି । ଏଗୁଡ଼ିକର ଭାଷା ଖୁବ୍ ସରଳ, ତରଳ ଓ ସୁଶ୍ରାବ୍ୟ ହୋଇପାରିଛି । ବିଶୁଦ୍ଧ ସଂସ୍କୃତ ଶବ୍ଦ ସଙ୍ଗେ ବିଶୁଦ୍ଧ ଓଡ଼ିଆ ଶବ୍ଦର ବ୍ୟବହାରରେ ସେ ଯେପରି ଅସାଧାରଣ କୃତିତ୍ୱ ଜୀବନର କ୍ଷୁଦ୍ର ପରିସର ମଧ୍ୟରେ ଦେଖାଇ ପାରିଛନ୍ତି ତାହା ଅନ୍ୟତ୍ର ଦୁର୍ଲଭ । କବିଜଣେ ଦେବସ୍ତୁତି ସରଳ ସୁମଧୁର ଭାଷାରେ ରଚନା କରିଛନ୍ତି । ଗୋଟିଏ ସ୍ତୁତିର ଶେଷ ଦୁଇଧାଡ଼ି ଉଦାହୃତ ହେଲା ।

ଡୁବିଯାଉଛି ଶୋକସାଗରେ   ତୁମ୍ଭେ ଦୁଅ ଜନନୀ ଆଗରେ

ଭୁବନେଶ୍ୱର ସ୍ନେହ ସାଗରେ   କବି କୁମୁଦ ବନ୍ଧୁର ମାନସ ଅମ୍ବାଗୋ

ଜଗଦମ୍ବାଗୋ

ସେ ସଂସ୍କୃତ ଭାଷାରେ ମଧ୍ୟ ଗୀତ ଗୋବିନ୍ଦ ଅନୁକରଣରେ ଗୋବିନ୍ଦ ବୃନ୍ଦାବଳୀ କାବ୍ୟ ରଚନାକରି ସଂସ୍କୃତ ସାହିତ୍ୟ ଭଣ୍ଡାରର ମଧ୍ୟ ଶ୍ରୀବୃଦ୍ଧି କରିପାରିଛନ୍ତି । ଉକ୍ତ କାବ୍ୟର ଦଶାବତାର ବର୍ଣ୍ଣନା ସଂସ୍କୃତ ଶ୍ଳୋକ ପୂର୍ବରୁ ଉଲ୍ଲେଖ କରାଯାଇଥିବା ଶ୍ଳୋକଟି ନିମ୍ନରେ ଉଦ୍ଧାର କରାଗଲା ।

ମହ୍ରୀମଧ୍ୟଂ ତନୁତେ ୍ଥ କଚ୍ଛପବପୁଃ ନୋଡ଼ାହୁତଂ ବଭ୍ରତେ
ଶବଂ ମର୍ତ୍ତ୍ୟ ମୃଗେନ୍ଦ୍ର ସମ୍ଭୃତ ବପୁଃ ଖବଦ୍ଦିଜୋ ଭୂପୂନଃ
କୌଠାରସ୍ଥୂଧ ରାମ ଲଙ୍ଗଳଧରୋ ରାମସ୍ତ ସୀତାପତିଃ
କଳ୍କି ବୌଦ୍ଧ ବପୁର୍ଦ୍ଦଶାକୃତି ଧରଃ କୃଷ୍ଣାୟ ତୁଭ୍ୟଂ ନମଃ

କବିଙ୍କ ଲେଖାଗୁଡ଼ିକ ଏଯାଏଁ ମୁଦ୍ରିତ ଆକାରରେ ପ୍ରକାଶ ପାଇନାହିଁ । କବିଙ୍କ ପୌତ୍ର ପଣ୍ଡିତ ଲମ୍ବୋଦର ମିଶ୍ରଙ୍କ (ବର୍ତ୍ତମାନ ବାସସ୍ଥାନ) ବଡ଼ଗଡ଼ ନିକଟରେ ଏହି ଲେଖାଗୁଡ଼ିକ ତାଳପତ୍ର ବହିରେ ରକ୍ଷିତ ଅଛି । କବିଙ୍କ ବହୁଲେଖା ଓଡ଼ିଆ ସାହିତ୍ୟ ମ୍ୟୁଜିଏମରେ ମଧ୍ୟ ଦେଖିବାକୁ ମିଳେ । କବିଙ୍କ ଅଧିକାଂଶ ଛାନ୍ଦ, ଚଉପଦୀ ଓ ଜଣାଣ ଧରାକୋଟ ସୁଧୀବର୍ଗଙ୍କ ମୁଖରେ ଉଜ୍ଜୀବିତ ରହିଛି ।

କବି ତାଙ୍କର ଏହି ବିରାଟ ସାହିତ୍ୟ ସୌଧ ଜୀବନର ସ୍ୱଳ୍ପକାଳ ମଧ୍ୟରେ ନିର୍ମାଣ କରି ୩୨ ବର୍ଷ ବୟସରେ ୧୮୭୩ ଖ୍ରୀଷ୍ଟାବ୍ଦ ମାର୍ଗଶୀର ମାସ କୃଷ୍ଣ ଅଷ୍ଟମୀ ତିଥିରେ ଅମରଧାମର ଯାତ୍ରୀ ହୋଇଥିଲେ । ଧରାକୋଟାଧିପତି ତାଙ୍କ ଗୁଣ ଓ ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ ୧୮୭୦ ମସିହାରେ କବିଚନ୍ଦ୍ର ଉପାଧିରେ ଭୂଷିତ କରିଥିଲେ । ଆଜି ବ୍ରଜସୁନ୍ଦର ନାହାନ୍ତି ଓ ଧରାକୋଟ ରାଜ୍ୟର ପୂର୍ବ ବିଭବ ନାହିଁ ସମସ୍ତ କ ଆସିପାରେ ଏହି ରାଜ୍ୟ କାଳର କରାଳ ଗର୍ଭରେ ଲୀନହୋଇ ଯାଇପାରେ କିନ୍ତୁ କବିଙ୍କ ଚମ୍ପୂ, ଭୁମା ଓ ଅନ୍ୟାନ୍ୟ ରଚନା ଗୁଡ଼ିକର ବିଲୋପ ଅସମ୍ଭବ । ସେଥିପାଇଁ ପଣ୍ଡିତମାନେ କହନ୍ତି "କୀର୍ତ୍ତିରକ୍ଷର ସମ୍ବନ୍ଧା ସ୍ଥିର ଭବତି ଭୂତଳେ" ।

## ମୃତ୍ୟୁଞ୍ଜୟ ସାହିତ୍ୟଭୂଷଣ

ଧରାକୋଟ ରାଜେନ୍ଦ୍ରପୁରର ପ୍ରଖ୍ୟାତ ପଣ୍ଡିତ ବାମଦେବ ବ୍ରହ୍ମାଙ୍କ ପ୍ରପୌତ୍ର ସ୍ୱର୍ଗୀୟ ମୃତ୍ୟୁଞ୍ଜୟ ମିଶ୍ର ଊନବିଂଶ ଶତାବ୍ଦୀର ତୃତୀୟ ଦଶକରେ ଜନ୍ମଗ୍ରହଣକରି ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଦେହତ୍ୟାଗ କରିଥିଲେ । ସଂସ୍କୃତ ଓ ଓଡ଼ିଆ ଭାଷାରେ ତାଙ୍କର ବିଶେଷ ଦକ୍ଷତା ଥିଲା । ଧରାକୋଟ ରାଜା ବ୍ରଜସୁନ୍ଦରଙ୍କଦ୍ୱାରା ସେ ସାହିତ୍ୟ ଭୂଷଣ ଉପାଧିରେ ଭୂଷିତ ହୋଇଥିଲେ । ସେ ଭଟ୍ଟବାଣ କବିରାଜଙ୍କ କୃତ ମୃଗୟାଚମ୍ପୂ, ଶ୍ରୀଗୁଣ୍ଡିଚା ଚମ୍ପୂ ଓ ତାଙ୍କର ବଂଶଧର ଗୋପୀଧର ରାଜଗୁରୁଙ୍କ କୃତ ନୃସିଂହ ଶତକ, ପାଦଶତକ ଓ ଶିବଶତକର ଟୀକା ସଂସ୍କୃତ ଭାଷାରେ ରଚନା କରିଛନ୍ତି । ଗୋପୀଧରଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତତ୍‌କାଳୀନ ବଡ଼ଖେମୁଣ୍ଡି ରାଜା ତାଙ୍କୁ ସସମ୍ମାନେ ନେଇ ବଡ଼ଗଡ଼ରେ ଅବସ୍ଥାପିତ କରିଥିଲେ । ସଂସ୍କୃତ ଓ ଓଡ଼ିଆ କାବ୍ୟ-କବିତାର ଜଣେ ଦକ୍ଷ ବ୍ୟାଖ୍ୟାକାର ରୂପେ ସେ ଖ୍ୟାତିଲାଭ କରିଥିବା ସଙ୍ଗେ ସଙ୍ଗେ ସଂସ୍କୃତରେ 'କୋଠ' କବିତା ରଚନା କରିବାରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ ।

## କବିରାଜ ନୀଳକଣ୍ଠ

କବି ନୀଳକଣ୍ଠ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଧରାକୋଟ ତାଲୁକାର ଗଙ୍ଗାପୁର ଶାସନରେ ୧୮୨୭ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । କବିଙ୍କ ପିତାଙ୍କ ନାମ ଗଙ୍ଗାଧର ପ୍ରହରାଜ ନୀଳକଣ୍ଠ ସୁପଣ୍ଡିତ ଓ ସୁଲେଖକ ଭାବେ ଆପଣାର ଯୋଗ୍ୟତା ଯୋଗୁଁ ଧରାକୋଟ ସମେତ ଓଡ଼ିଶାର କଳାହାଣ୍ଡି, ବାମଣ୍ଡା, କାଶୀପୁର ପ୍ରଭୃତି ରାଜଦରବାରରେ ବିଶେଷ ଖ୍ୟାତିଲାଭ କରିଥିଲେ ।

ତାଙ୍କର ପାଣ୍ଡିତ୍ୟରେ ମୁଗ୍‌ଧ ହୋଇ କଳାହାଣ୍ଡି ରାଜ୍ୟର ଅଧିପତି ନିଜ ସଭା ପଣ୍ଡିତରୂପେ ତାଙ୍କୁ ଗ୍ରହଣ କରି 'କବିରାଜ' ଉପାଧିରେ ଭୂଷିତ କରିଥିବା ଜଣାଯାଏ । ସେ ଓଡ଼ିଆରେ ଓ ସଂସ୍କୃତରେ ବହୁ ଜଣାଣ ଓ ଭଜନ ରଚନା କରିବା ସଙ୍ଗେ ସଙ୍ଗେ ବହୁ ମାତ୍ରା ଗର୍ଭକ ଓ ଉପଦେଶାତ୍ମକ କବିତା ରଚନା-କରି ଉତ୍କଳୀୟ ଭାଷାର ଉତ୍କର୍ଷ କରି ପାରିଛନ୍ତି ।

ଆଜିକାଲି ଭକ୍ତି ସଙ୍ଗୀତ ଗୁଡ଼ିକୁ ସାଧାରଣତଃ ଭଜନ ଓ ଜଣାଣ ନାମରେ ନାମିତ କରାଯାଏ । ଭଜନରେ ସାଧାରଣତଃ ଉପାସ୍ୟ ଦେବଦେବୀ-ଙ୍କର ନାମ,ରୂପ, ଗୁଣ ଓ ଲୀଳାର ବର୍ଣ୍ଣନା ହୋଇଥାଏ । ଜଣାଣରେ ଉପାସ୍ୟ ଦେବଦେବୀଙ୍କ ମହିମା ବର୍ଣ୍ଣନା ହେବା ସଙ୍ଗେ ସଙ୍ଗେ ଭକ୍ତର ଆଶା ଓ ଅଭିଳାଷ ବ୍ୟକ୍ତ ହୋଇଥାଏ । କବିଜଣେ ନୈଷ୍ଠିକ ବ୍ରାହ୍ମଣ ଥିଲେ । ସେ ଶିବ, ଶକ୍ତି ଓ ବିଷ୍ଣୁଙ୍କର ପରମ ଉପାସକ ଓ ଭକ୍ତ ହୋଇଥିବା ହେତୁ ତାଙ୍କ ଲେଖାମାନରୁ ବହୁ ଭକ୍ତିର ସାଣିତ କବିତା ଝରିପଡ଼ୁଛି । ଧର୍ମକୋଟ ଏକ ମନ୍ଦିର ମାଳମାରାଜ୍ୟ ହୋଇଥିବା ହେତୁ ଓ ଏହି ମନ୍ଦିର ଗୁଡ଼ିକରେ ବହୁ ଦେବଦେବୀ ବିଜେ ହୋଇ-ଥିବା ହେତୁ କବି ସେମାନଙ୍କ ଉଦ୍ଦେଶ୍ୟରେ ବହୁ ଜଣାଣ ଓ ଭଜନ ରଚନା କରିଛନ୍ତି । ନିମ୍ନରେ ମହାକାଳ ସ୍ୱରୂପ ଶ୍ଲୋକରେ ଲେଖିଥିବା ଭଜନରେ ମହାକାଳଙ୍କ ପ୍ରଳୟ କାଳୀନ ସଂହାର କୃତ୍ୟ ବର୍ଣ୍ଣନା କରାଯାଇଛି ।

ଆହେ ମହାକାଳ ଭବଭୟ ତୂଳାନଳ ହେ ।
ନୀଳମେଘ ପ୍ରଭଞ୍ଜିତ ତନୁଶୋଭା ତ୍ରିଲୋଚନ ମହୋଜ୍ଜ୍ୱଳହେ ।

× × ×

ସୃଷ୍ଟି ସ୍ଥିତି ନାଶକାରୀ ହେ ମହେଶ ତୁମ୍ଭ ଶ୍ରୀ ପାଦକମଳ
ସ୍ମରଣେ ମୋ ମତିରହୁ ହଦାରତି ନ ବହୁ କଳୁଷ ଜାଳହେ ।

କବି ନିଜ ଗ୍ରାମରେ ବିଜେ ହୋଇଥିବା ପ୍ରସିଦ୍ଧ ମହାଦେବ ଚନ୍ଦ୍ରମଣି ବା ଚନ୍ଦ୍ରକଲ୍ଲେଶ୍ୱରଙ୍କର ପରମ ଉପାସକ ଥିଲେ । ବଂଶ ପରମ୍ପରା କ୍ରମେ ଏହି ବଂଶର ବ୍ୟକ୍ତିମାନେ ଏହି ଶିବଙ୍କୁ ଆରାଧନାକରି ତାଙ୍କ ସାହିତ୍ୟ ସାଧନାରେ ସିଦ୍ଧିଲାଭ କରିଥିଲେ । କବିଙ୍କ ପୂର୍ବ ବଂଶଧର ଭଗବାନ କବିରାଜ ବ୍ରହ୍ମା ଏହି ପ୍ରଭୁଙ୍କ କୃପାରୁ ସଂସ୍କୃତ ସାହିତ୍ୟରେ ଅସାଧାରଣ ପାଣ୍ଡିତ୍ୟ ଅର୍ଜ୍ଜନ କରିଥିଲେ । ଶିବ ଭକ୍ତ ନୀଳକଣ୍ଠ ଚନ୍ଦ୍ରମଣିଙ୍କୁ ପ୍ରତିଦିନ ଦର୍ଶନ ଓ ଉପାସନା ପରେ ଅନ୍ନଗ୍ରହଣ କରୁଥିଲେ । ଏଣୁ କବି ଚନ୍ଦ୍ରମଣିଙ୍କ ଉଦ୍ଦେଶ୍ୟରେ ଏକ ଚମତ୍କାର ଭଜନ ରଚନାକରି ସେଥିରେ ତାଙ୍କୁ ବ୍ରହ୍ମାଣ୍ଡଠାକୁର ରୂପେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସଦାଶିବଙ୍କଠାରେ ବିଭବ ପ୍ରାର୍ଥୀ ହୋଇ ତାଙ୍କ ଚରଣ ଯୁଗଳରେ ଆକୁଳ ନିବେଦନ ଜଣାଇଛନ୍ତି ।

ଚନ୍ଦ୍ରମଣି ପ୍ରଭୁ କାହିଁପାଇଁ ନ ଶୁଣ ମୋ ବାଣୀହେ ।
ବିଶ୍ୱରୂପୀ ବିଶ୍ୱବ୍ୟାପୀ ବିଶ୍ୱମ୍ଭର ତୁମ୍ଭ ବିନା ଗତିନାହିଁ କେ ମୋହର

× × ×

ବଂଶ ପରମ୍ପରା ଈଶ ହେ ! ତୁମ୍ଭର କମଳ ଚରଣ ଶରଣ କଙ୍କର
ଜନଠାରେ ଯେବେ ଏଡ଼େ ପରିହର କପରି ବଞ୍ଚିବ ପ୍ରାଣୀ ହେ ।

× × ×

ସକଳ ଭରସା ମୋର ଚନ୍ଦ୍ରଚୂଡ଼ ମନୋହର ପଦ ପଙ୍କଜ ଯୁଗଳ
ପରାଗ ପୁଞ୍ଜିକୁ ଚାହେଁ ଚିତ୍ତ ନୀଳକଣ୍ଠ କବିରାଜ ଭଣି ହେ ।

କବି ଧରାକୋଟ ରାଜ୍ୟାନ୍ତର୍ଗତ ପୂତମୀର ଋଷିକୂଲ୍ୟା ନଦୀର ଉତ୍ତର ତଟରେ ଅବସ୍ଥିତ ସିଙ୍ଗିପୁର ଗ୍ରାମରେ ବିଜେ ହୋଇଥିବା ପ୍ରସିଦ୍ଧ ଓ ପ୍ରତ୍ୟକ୍ଷ ଧବଳେଶ୍ୱର ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଅନ୍ୟ ଏକ ଭଜନ ରଚନା କରିଛନ୍ତି । ରାଗ ଓ ତାଳ ଦୃଷ୍ଟିରୁ ଏହା ଅତ୍ୟନ୍ତ ସୁଶ୍ରାବ୍ୟ ହୋଇ ପାରିଛି ।

ମାନସ ଭଜରେ ଶୈବପଦମ୍
ଭବ ଭୟ ବାରଣ ମୋକ୍ଷ ପଦମ୍
ସୁରବଳ ନାଶିତ ସୁରକୁଳ ତୋଷିତ
କୌରବ ବନ୍ଦିତ ବଣ୍ଟପଦମ୍

× × ×

ନିଜପଦ ସେବନ ବ୍ରତ ପରିପାଳନ
ଶ୍ରୀ କବିରାଜ ସବାଂଛିତପଦମ୍

ସେ ଗଞ୍ଜାମଜିଲ୍ଲାର ପୁରୁଷୋତ୍ତମପୁର ନିକଟରେ ବିଜେ ହୋଇଥିବା ପ୍ରସିଦ୍ଧ ତାରାତାରିଣୀ ପୀଠରେ ଉତ୍ପତ୍ତି ଉପରେ "ତାରା ପ୍ରମୋଦ" ଶୀର୍ଷକ ଏକ ଓଡ଼ିଆ ଗ୍ରନ୍ଥ ଲେଖିଛନ୍ତି ଉକ୍ତ ଅପ୍ରକାଶିତ ଗ୍ରନ୍ଥ ରାଜ୍ୟ ସଂଗ୍ରହାଳୟର ପୁସ୍ତକ ଭଣ୍ଡାରରେ ଗଚ୍ଛିତ ଅଛି ଏଥିରେ ଧରାକୋଟ ଓ ସୋରଡ଼ା ରାଜ୍ୟ ସମ୍ବନ୍ଧରେ କେତେକ ବିଷୟ ଉଲ୍ଲେଖ ଅଛି । 'କବିତ.ରା ପ୍ରମୋଦର' ମଙ୍ଗଳଚରଣରେ ଧୁମୁସର ରାଜ୍ୟର ରାଜଧାନୀ କୁଲାଡ଼ ଠାରେ ବିଜେ ହୋଇ-ଥିବା ଭଞ୍ଜରାଜାଙ୍କ ପ୍ରଧାନ ଆରାଧ୍ୟ ଦେବୀଙ୍କୁ ସ୍ତୁତି କରିଛନ୍ତି ।

ମହାବ୍ୟାଘ୍ର ଶବ ଉପରେ ତିଷ୍ଠ ହେ ମାତା ଏ ବ୍ୟାଘ୍ର ପୃଷ୍ଠେ ଆବିଷ୍ଟ
ହୋଇଅଛି ଅଗ୍ନି ବର୍ଣ୍ଣ ଯେସନ ତ୍ରିଲୋଚନୀ ଚତୁର୍ବାହୁ ଶୋଭନ

× × ×

ଜିହ୍ୱା ଲହଲହ ହୋଇ ଲମ୍ବିତ ବଳିପ୍ରୀତି ସାଜକ ରକ୍ତବସ୍ତ୍ର
ଏହିପରି ରୂପ ଧୁମୁସରରେ ଇଷ୍ଟହୋଇ ବିଜେଯେ କୁଲାଡ଼ରେ
ନମୋନମ ଜୟ ତାରିଣୀ ମାତ ନିର୍ବିଘ୍ନେ ସୁଜନେ ହେଉ ଏ ଖ୍ୟାତ
ତାରା ତାରିଣୀ କହୁଛନ୍ତି ଯାହା ବିପ୍ର ନୀଳକଣ୍ଠ ଲେଖଇ ତାହା ।

କବି ଜୀବନର ବହୁସମୟ କଳାହାଣ୍ଡି ରାଜଦରବାର ସହିତ ସଂଶ୍ଳିଷ୍ଟ ଥିଲେ । ରାଜା ଉଦିତ ପ୍ରତାପ ଦେବଙ୍କ ପୋଷକତା ଲାଭକରି କଳାହାଣ୍ଡିର ପ୍ରଧାନ ଆରାଧ୍ୟ ଦେବୀ କନ୍ଧେଶ୍ୱରୀ, ବେହେରା ଗ୍ରାମର ଦନ୍ତେଶ୍ୱରୀ ଓ ଖରିଆରର ରକ୍ତାମ୍ବରୀ, ଦେବୀଙ୍କ ଉଦ୍ଦେଶ୍ୟରେ ଅନେକ ସ୍ତୁତି ଓ ଜଣାଣ ରଚନା କରି କେତେକ ସ୍ୱୀୟ ପୃଷ୍ଟପୋଷକ ରାଜାମାନଙ୍କ ନାମରେ ଓ ଆଉ କେତେକ ନିଜନାମରେ ଭଣିତ କରିଛନ୍ତି । ଏଠାରେ ଦୁଇଟି ଉଦାହରଣ ଦିଆଗଲା ।

ଦନ୍ତେଶ୍ୱରୀ ।

ମାଗୋ ଭବଭୁଜଗ ଭୟରୁ କର ପାରିଗୋ

× × ×

ଜୟ୍ଯଜଗଜ୍ଜନ ବିମୋହନ କାରୀ

ଦାସକଳ୍ପବଲ୍ଲୀ ଶୁଣ ମୋ ଗୁହାରି

ମାନକଣ୍ଠ କବିରାଜ ବାଞ୍ଛାପରିପୂର୍ଣ୍ଣକର ମାହେଶ୍ୱରୀ ଗୋ ।

ଦନ୍ତେଶ୍ୱରୀଙ୍କ ଅନ୍ୟ ଗୋଟିଏ ଜଣାଣ ଖଡ଼ିଆଳ ରାଜାଙ୍କ ନାମରେ ଭଣିତା ହୋଇଛି ।

ଅକମ୍ପା ଅନୁକମ୍ପାକାରିଣୀ ସ୍ୱର୍ଣ୍ଣଚମ୍ପା ଧାରିଣୀ ଶମ୍ପା ପ୍ରଭାଢ଼ମ୍ବରୀ କାଳୀନ୍ଦ୍ର ସିଂହ ଭଣି ଯୋଗୀନ୍ଦ୍ର ପାଟରାଣୀ ଚରଣେ ପ୍ରଣିପତ୍ୟ ଆଚରି

ପ୍ରକୃତ ପ୍ରତିଭାର ଅଧିକାରୀଥିବା ହେତୁ କବି ବିନୟର ଅଧିକାରୀ ଥିଲେ । ନିଜର ସୃଜନ କ୍ଷମତାକୁ ସେ ସର୍ବଦା ଆରୋପଣ କରିଛନ୍ତି ଦେବୀ ସରସ୍ୱତୀଙ୍କ ଅନୁକମ୍ପାରୁ ଏଣୁ ଭକ୍ତି ପରିବର୍ତ୍ତିତ ସୁମଧୁର ଗୀତିକାରେ କବି ବାଗ୍‌ଦେବୀ ସରସ୍ୱତୀଙ୍କୁ କିପରି ବନ୍ଦନା କରିଛନ୍ତି ତା'ର ଗୋଟିଏ ଦୃଷ୍ଟାନ୍ତ ଦିଆଗଲା ।

ଭଜରେ ମନ ଶାରଦା ଚରଣ ନଳିନ
କୁନ୍ଦଇନ୍ଦୁ ଗଉର_ବୀଣାପୁସ୍ତକ ଧରି ଧବଳ ପଦ୍ମ ଯାସ୍ଥାନ
ମଞ୍ଜୁଳ ମୋତିହାର ଶ୍ୱେତ ବସନ ଧରି କେଶବ ସମୀପ ଯା ସ୍ଥାନ
× × ×
ସକଳ ବିଦ୍ୟାଭୂତ ଜାତ ଶ୍ରୀ ସରସ୍ୱତି ଆଜିର ହୋଇବେ ପ୍ରସନ୍ନ
କବିରାଜ ବଚନ ଧଷ୍ଟାକରି ତୁ ଯେନ ସର୍ବଦା ହୁଅ ତୁ ସାବଧାନ

କବି ବାଲ୍ୟକାଳରୁ ଜଣାଣ ଲେଖିବାରେ ଧରାକୋଟ ପଣ୍ଡିତ ମଣ୍ଡଳୀ ଓ ରାଜ ଦରବାରରୁ ପ୍ରେରଣା ପାଇଥିଲେ । ଏହି ବିଷ୍ଣୁପ୍ରେମ ଆଧାରିତ ଜଣାଣ ଗୁଡିକ ଓଡିଆ ସାହିତ୍ୟର ପ୍ରାଚୀନ ସମ୍ପଦ ହୋଇ ରହିବ । ଚକ୍ଷାମୁଦ୍ରାଁରୁ ଆରମ୍ଭକରି ଉଛିଷ୍ଟ ତ କଣ୍ଠରେ କବିଙ୍କର ଜଣାଣରୁ ଦୁଇପଦ ବାହାରି ପଡ଼େ । ବାସ୍ତବିକ କବିଙ୍କ ପ୍ରକୃତ ପରିଚୟ ତାଙ୍କ ଦେହରେ ନାହିଁ ଅଛି ଏହି ଭଜନ ଓ ଜଣାଣରେ

କବି ଭଜନ ଓ ଜଣାଣ ବ୍ୟତୀତ ବହୁଗ୍ରନ୍ଥ, ଚଉପଦୀ ଓ ଚୌତିଶା ରଚନାକରି ସଙ୍ଗୀତ ଓ ଗୀତ ସାହିତ୍ୟକୁ ସମୃଦ୍ଧି ଶାଳୀ କରିପାରିଛନ୍ତି । ଏହି ସଙ୍ଗୀତ ଗୁଡ଼ିକରେ କଳାତ୍ମକ ପରିପାଟି ଯେପରି ଚମତ୍କାର ଭାବସେହିପରି ହୃଦୟ ସ୍ପର୍ଶୀ କବିଙ୍କ ଶତାଧିକ ଛାନ୍ଦ ଓ ଚଉପଦୀ ଅପ୍ରକାଶିତ ଅବସ୍ଥାରେ ପଡ଼ିରହିଛି ସେ ଛାନ୍ଦରୁ ଗୋଟିଏ ଦୃଷ୍ଟାନ୍ତ ଦିଆଗଲା ।

ରାଗ—ଝୋମଟା

କାହିଁକି ବନ୍ଧୁ ଏଥିକି କରୁଛ ମାନ
ଆସ ଅଙ୍କେବସ ଭାଷ ମୃଦୁବଚନ (ପଦ)
× × ×
ଠେକଠେକ କୁରୁ ମୁଖ ଅଖଣ୍ଡ ଶୀତ ମୟୂଖ
ପାଥୋଜ ନୟନ କୁଆଁ ନତେଜ ବନ

ବଣା ମୃଗାକ୍ଷି ମୋ ଧନ ବଣା ଜନରେକ ମାନ
ଦୋଷଥିଲେ ଫରମାସ ଦଣ୍ଡ ବଧାନ

× × ×

ଘଷେ ମାଳକଣ୍ଠ କବରାଜ ମୋପ୍ରାଣ ବାନ୍ଧବୀ
ରସେ ରସିବଅ ଇନ୍ଦ୍ର ପଦବୀ ଦାନ

ସମାଜରେ ପ୍ରଚଳତ କୁସଂସ୍କାର ଓ ଭ୍ରଷ୍ଟାଚାର ଘାତମାତକୁ ଉଦଘୋଟ୍ୟ କର ବହୁ କବତା ରଚନା କର ଜନଜୀବନକୁ ଈଶ୍ୱରାଭିମୁଖୀ କରାଇ ଧାର୍ମିକ ଜୀବନ ଯାପନ ପାଇଁ ପ୍ରେରଣା ଦେଇଛନ୍ତି ।

ରାଗ—ପୂରବ

ଶୁଣାନଥିଲାସେ ଏପର ବବେକ ବଳ
କାର୍ପାସ କର୍ପୂର ସମମଣିବାର ହେବାରୁ ଦୁହେଁ ଧବଳ

× × ×

ହରହର ଆଜ ଦେବତାଙ୍କୁ ନନ୍ଦ ମନ୍ଦପଣରେ କେବଳ
ଆଲମା ଦେବତା ପାଶେ ପଢ଼ଟୀତା ନର୍ମାଣିବାର ଦେଉଳ

× × ×

ରାଜ କବବୋଲେ କେବେନାହିଁ ହେଲେ ଏ ବଚନ ସାଡଜାଳ
ବଷଲତା ଆଣି ରୋପିଦେଇ ପାଣି ଜପାବାର ତାମ୍ବୁଳ

ରାଗ—କାମୋଦୀ

ନନ୍ଦବାସିନା ନଜ ଭଲକୁ ଗୋ – ବନ୍ଧବା ମନ୍ଦ ବଧୂଗୃଲକୁ ଗୋ (ପଦ)
ଲୋଠାରୁ କେବଳ ନତାନ୍ତ ପାଦତଳ ଯାଏ ଆବୃତ୍ତ କର ଚେଳକୁ ଗୋ
ଘଲେ ବହ୍ନିନ ଚତା ଚରଣେ କୁନ୍ଦ ଯୋତା
ବୁଲଚେଲ ଭକ୍ଷିନାଗ ବଲ୍ଲୀକୁଗୋ (୨)

ବେଦ ବେଦାନ୍ତ ମାତ ଶାସ୍ତ୍ର ପୁରାଣ ସ୍ମୃତି
ନିଯୁମ ଗଲା ରସାତଳକୁ ଗୋ
ଏପରି ଅକର୍ମରେ ମାତିଲେ ଯେବେ ନରେ
ବରଜ ଧର୍ମଶୀଳକୁ ଗୋ (୬)
କୁଞ୍ଚିକୁ କରିଥିଛ ଇତରଜନେ ଚୁଞ୍ଚି ଭାବି
କରନ୍ତି ଶିଖା ବାଳକୁ ଗୋ
ରାଜକବି କହଇ ଯେବେ ଦେଲେ ଉଠାଇ
ଆପଣା ଧର୍ମ ଦ୍ରୁମ ମୂଳକୁ ଗୋ (୭)

ଉପରୋକ୍ତ ଧରଣର ବହୁ କବିତା ବ୍ୟତୀତ କବି ବହୁପଲ୍ଲୀଗୀତ ଓ ଚଉତିଶା ଲେଖିବାରେ ନିଜର ଦକ୍ଷତା ପ୍ରକାଶ କରିଛନ୍ତି । ତାଙ୍କ ଲେଖନୀ ଓଡ଼ିଆ ଭାଷା ସାହିତ୍ୟକୁ ଓଡ଼ିଆ ମାଟି ମଣ୍ଡଳରେ ସର୍ବ ମଧୁର ଭାବରେ ପ୍ରାଣବନ୍ତ କରି ପରିପ୍ରକାଶ କରିବାରେ ଯେଉଁ ଭୂମିକା ଗ୍ରହଣ କରିଛି ତାହାହିଁ ଆଜି ବିଚାରିବାର କଥା । କବି 'କ' ଠାରୁ 'କ୍ଷ' ଯାଏ ଚଉତିଶର ବର୍ଣ୍ଣକୁ ଆଶ୍ରୟ କରି ପ୍ରତି ଅକ୍ଷରରେ 'ଛ' ପାଦ ଉଲ୍ଲେଖ କରି ଚଉତିଶାକୁ ସଙ୍ଗୀତ ମଧୁରତା ଓ ମାତୃପ୍ରେମ ଧର୍ମିତା ଗୁଣରେ ଜନପ୍ରିୟ କରିଛନ୍ତି । ଶାଶୁଘରକୁ ପହିଲି ଥର ଯିବାପୂର୍ବରୁ ଦୁଃଖିନୀ ଦୁହିତାର କରୁଣ ଅନୁଭବ ଭାବରାଜି ତାଙ୍କ "ବୋଉ ମେଲାଣି" ଚଉତିଶାରେ କବି ଅତ୍ୟନ୍ତ ସାବଲୀଳ ଓ ସ୍ୱାଭାବିକ ଭାବରେ ବର୍ଣ୍ଣନା କରିଛନ୍ତି । ବେଦନା ବିଧି ଦୁହିତାର କରୁଣ ଶୋକ ଶ୍ଳୋକ ଢଙ୍ଗରେ ଓଡ଼ିଆ ସମାଜର ନିଜସ୍ୱ ରୀତିନୀତି କିପରି ବର୍ଣ୍ଣିତ ହୋଇଛି । ତାହା ନିମ୍ନୋକ୍ତ ଗୋଟିଏ ଦୁଇଟି ଉଦାହରଣରୁ ଜଣାଯାଏ । ଏହା ଓଡ଼ିଆ ନାରୀ ସାହିତ୍ୟର ଏକ ସ୍ୱତନ୍ତ୍ର ବିଭବ ଯାହାକି ପଲ୍ଲୀଗୀତିକା ପର୍ଯ୍ୟାୟ ଢଙ୍ଗରେ ଅନ୍ତର୍ଭୁକ୍ତ କରାଯାଇପାରେ ।

## ବୋଉ ମେଲଣି ଚଉତିଶା (ରାଗ—ଧନାଶ୍ରୀ)

କମଳ ଚରଣ କରଗତ କରଗତକର କହୁଛି ସରଳ ଚିତ୍ତେ
ସାଗର ପରରେ ଦୟାରଖି କରି ମନ୍ଥନ ପାପରୁ ମୋତେ ଗୋ ବୋଉ
ତୁମ୍ଭହୃଦୟ ମୋଠାରେ ଥାଉ ଗୋ ବୋଉ
ମୋରମନ ତୁମ୍ଭପାଶେ ଥାଉଗୋ ବୋଉ
ନେତ୍ର ସବୁବେଳେ ଦେଖୁଥାଉ ଗୋ ବୋଉ
ଏକା ସଙ୍ଗେସଦା ଖାଉ ଥାଉ ଗୋ ବୋଉ
ଅଳତା ପାଦରେ ନଥିଲେ ଆଦରେ ବୋଲିବାର ଆସିବସ
ଘେନିବା ଅଳତା ବୃନ୍ଦକଳାଚିତା ଆଜ ପରବ ଦିବସଗୋ ବୋଉ
କେଶକୁଣ୍ଡାଇ ଖୋସା ପକାଉ ଗୋ ବୋଉ
ମୋତେ ଅନାଇ ହସାଇ ଦେଉଗୋ ବୋଉ

କବି ବହୁ ସଂସ୍କୃତ ଓ ଓଡ଼ିଆ ପ୍ରାଚୀନ କବିଙ୍କ ପ୍ରବର୍ତ୍ତିତ ପରମ୍ପରାକୁ ଅନୁକରଣ କରି ସଂସ୍କୃତ ଓ ଓଡିଆରେ ବହୁ ଶ୍ଳୋକ ଓ ପଦ୍ୟ ବନ୍ଧଚିତ୍ର-ମାଧ୍ୟମରେ ସନ୍ନିବିଷ୍ଟ କରିଛନ୍ତି । ଏହି ବନ୍ଧଚିତ୍ରରେ ନାରୀର ଶୋଭା, ପୁରୁଷର ଧୃଷ୍ଟୋକ୍ତି, ରାଜସ୍ତୁତି, ଦେବାଦେବୀଙ୍କ ବନ୍ଦନା ପରିଲକ୍ଷିତ ହୁଏ । ଏହି ବନ୍ଧ ଗୁଡ଼ିକରୁ କୋଷ୍ଠୀବନ୍ଧ, ପଦ୍ମନାଗବନ୍ଧ ନାରିକେଳବନ୍ଧ, ଚକ୍ରବନ୍ଧ, ରଥବନ୍ଧ ପ୍ରଭୃତି ବିଶେଷ ଗୁରୁତ୍ୱପୂର୍ଣ୍ଣ । ରଥବନ୍ଧର ଶେଷରେ କବି ଉଲ୍ଲେଖ କରିଛନ୍ତି ।

ମାଳକଣ୍ଡା ବିଧାନେନ କବିରାଜେନ ଧୀମତା
ରଚିତୋ ରଥ ବନ୍ଧୋଽୟଂ ନୃପତେ ଽନୁଗ୍ରହାୟଚ

କୋଷ୍ଠୀବନ୍ଧରେ ଅକ୍ଷର ଗୁଡ଼ିକ ଏପରି ସନ୍ନିବିଷ୍ଟ ହୋଇଛି ଯେ, ତହିଁରୁ କାଳୀ,ତାରା, ଦୁର୍ଗା, ବାରାହୀ, ଲକ୍ଷ୍ମୀ, ସରସ୍ୱତୀ, ଭୂଦେବୀ ଓ ରାଧିକାଙ୍କ ନାମ

ପ୍ରକାଶ ପାଉଛି । କବି ନିଜେ ଚିତ୍ରକର ଥିଲେ । ଏଣୁ ରଙ୍ଗିନ ଚିତ୍ରଗୁଡ଼ିକ କାଗଜରେ ସ୍ୱହସ୍ତରେ ଅଙ୍କି ସେଥିରେ ଅକ୍ଷରଗୁଡ଼ିକ ସନ୍ନିବିଷ୍ଟକରି ଶତାଧିକ ବନ୍ଧଚିତ୍ରମାଧ୍ୟମରେ ବହୁ ଶ୍ଳୋକ ଓ ସଙ୍ଗୀତ ସନ୍ନିବିଷ୍ଟକରି ଶବ୍ଦ ଓ ପଦର କସରତ କରିଛନ୍ତି । ବିଭିନ୍ନ ଜଣାଣ, କରୁଣ ରସାଶ୍ରିତ,ପଲ୍ଲୀଗୀତ, ଛାନ୍ଦ, ଚୌପଦୀ ଓ ଚିତ୍ରବନ୍ଧୋଦୟ ରଚନା କ୍ଷେତ୍ରରେ ଯଥାର୍ଥତଃ ସେ ଏକ ଅମଳିନ ପ୍ରତିଭା । କବି ବିଭିନ୍ନ ରାଜ ଦରବାରରେ ସମ୍ମାନିତ ଓ ପରିଚିତ ହୋଇଥିଲେ । କିନ୍ତୁ ଜୀବନର ଶେଷ ସମୟ ଧରାକୋଟ ରାଜଦରବାର ସହିତ ବିଶେଷ ସଂପର୍କ ସ୍ଥାପନ କରିଥିଲେ । ଧରାକୋଟ ରାଜା ଜୟସିଂହଙ୍କ ଦ୍ୱାରା ଅନୁବାଦିତ "କ୍ଷେତ୍ର ମହାତ୍ମ୍ୟ" ଗ୍ରନ୍ଥର ପାଣ୍ଡୁଲିପି ପ୍ରସ୍ତୁତ କରି ମୁଦ୍ରଣ କାର୍ଯ୍ୟରେ କଠୋର ପରିଶ୍ରମ କରିଥିଲେ ଓ ଏହି ଗ୍ରନ୍ଥର ମୁଖବନ୍ଧ ୧୯୦୪ ମସିହାରେ ଲେଖିଥିଲେ । ଦୀର୍ଘକାଳ ସାରସ୍ୱତ ସାଧନାରେ ରତରହି ୮୫ ବର୍ଷ ବୟସରେ ୧୯୧୨ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କରିଥିଲେ । ଧରାକୋଟ ରାଜଦରବାରରେ ତାଙ୍କର ଉପସ୍ଥିତିକୁ ଲକ୍ଷକରି କବିବର ଚନ୍ଦ୍ରାମଣି ମହାନ୍ତି ତାଙ୍କ ସଂପର୍କରେ ଯେଉଁ ଦୁଇପଦ ଉଲ୍ଲେଖ କରିଛନ୍ତି ତାହା ନିମ୍ନରେ ଦର୍ଶାଗଲା ।

ନୀଳକଣ୍ଠ କବିରାଜ ପ୍ରଣାମ ପ୍ରଣାମ
ଗୈଡିକ ପଣ୍ଡିତ ବୋଲି ଖ୍ୟାତ ତୁମ୍ଭନାମ
ବୁଢାହେଲେ ଆହୁଅଛି ସହି ଉଚ୍ଚାଟ
କାର୍ଯ୍ୟେ ସୁନିର୍ମଳ କର ପାରତ୍ରିକ ବାଟ
ଆଉ କିଛି କାମପଛେ ନକର ଅପ୍ରିକା
କରିଯାଅ କେତେ ଖଣ୍ଡ ଛାନ୍ଦ ପୋଥିଲେଖା ।

ଅତ୍ୟନ୍ତ ପରିତାପର ବିଷୟ କବିଙ୍କ କୌଣସି ଲେଖା ଏଯାଏ ମୁଦ୍ରିତ ହୋଇନାହିଁ । ତାଙ୍କର ପଦ୍ୟରଚନା ଗୁଡିକ ପ୍ରକାଶ କରାଗଲେ ଓଡିଆ ସାହିତ୍ୟର ମେରୁଦଣ୍ଡକୁ ସୁଦୃଢ଼ କରିପାରିବ ବୋଲି ମନେହୁଏ ।

# ରାଜା ମଦନମୋହନ ସିଂହ ଦେଓ

ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ପ୍ରାକୃତିକ ଉତ୍କଳରେ ଯେଉଁ ଯୋଗଜନ୍ମା ନରପତିମାନେ ଜନ୍ମଲାଭ କରି ନିଜର ପ୍ରତିଭା, ପ୍ରଜ୍ଞା, କର୍ମ-ନୈପୁଣ୍ୟ ଓ ଅଧ୍ୟବସାୟ ଦ୍ୱାରା ଏ ଦେଶରେ ରାଜନୀତି, ଧର୍ମନୀତି, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏକ ବିରାଟ ପରିବର୍ତ୍ତନ କରିବାପାଇଁ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରେ ଧରାକୋଟର ରାଜା ୬ ମଦନମୋହନ-ସିଂହ ଦେଓ ଅନ୍ୟତମ । ସେ ନବଦୁର୍ଗ ଅନ୍ତର୍ଗତ ବାଙ୍କିଭରା ଗ୍ରାମରେ ତା ୭-୧୦-୧୮୭୫ ମସିହାରେ ପୂର୍ବରୁ ଧରାକୋଟର ଏକ କନିଷ୍ଠ ଅଂଶ ବାସ କରିଥିବା ରାଜପରିବାରରେ ଜନ୍ମଗ୍ରହଣ କରିଥିଲେ । ରାଜା ବ୍ରଜସୁନ୍ଦର ତାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିବା ବିଷୟ କୁହାଯାଇଛି । ମଦନମୋହନଙ୍କ ବାଲ୍ୟାବସ୍ଥାରେ ଅର୍ଥାତ୍ ୧୮୮୪ ମସିହାରେ ରାଜା ବ୍ରଜସୁନ୍ଦରଙ୍କ ମୃତ୍ୟୁ ହୋଇଥିଲା । ତାଙ୍କ ମୃତ୍ୟୁ ବେଳକୁ ମଦନମୋହନ ନାବାଳକ ଥିବା ହେତୁ ଧରାକୋଟ ତାଲୁକାର ଶାସନ ସରକାରୀ ପରିଚାଳନା-ଧୀନରେ ରହିଲା । ଏହି ସମୟରେ ପାରଳାଖେମଣ୍ଡିରେ ସେ ସାଧାରଣ ଶିକ୍ଷା ସମାପ୍ତ କରି ପ୍ରଶାସନିକ ଶିକ୍ଷାଲାଭ କରିବା ପାଇଁ ମାନ୍ଦ୍ରାଜ ଗଲେ । ରାଜପୁତ୍ର ଟେଲର, ରାଜା ବା ପଣ୍ଡିତ ଓ ଏଲିସନ ସାହେବଙ୍କ ତତ୍ତ୍ୱାବଧାନରେ ସେ ଉକ୍ତ ସ୍ଥାନରେ ଶିକ୍ଷାଲାଭକରି ୧୮୯୭ ଖ୍ରୀଷ୍ଟାବ୍ଦରେ ସିଂହାସନାରୋହଣ କରିଥିଲେ । ରାଜା ମହୋଦୟ ଓଡ଼ିଆ ଇଂରେଜୀ ଓ ସଂସ୍କୃତ ଭାଷାରେ ଖୁବ୍ ବ୍ୟୁତ୍ପତ୍ତିଲାଭ କରିଥିଲେ ସେହିବର୍ଷ ସେ ଖଲିକୋଟର ରାଜଯୋଗୀ ପ୍ରଥମ ରାଜା ନାରାୟଣ ମର୍ଦ୍ଦରାଜଙ୍କ ତୃତୀୟା କନ୍ୟା ପାର୍ବତୀ ଦେବୀଙ୍କୁ ବିବାହ କରିଥିଲେ ।

ସେ ରାଜଗାଦି ଆରୋହଣ କରିବାର ଅଳ୍ପଦିନ ଭିତରେ ପ୍ରଜାମାନଙ୍କୁ ଭେଟି ସେମାନଙ୍କ ଅବସ୍ଥା ନିଜେ ବୁଝିବା ପାଇଁ ରାଜ୍ୟତମାମ ବୁଲିଲେ । ରାଜ୍ୟର ବିଭିନ୍ନ ଅଞ୍ଚଳରେ ଅସ୍ଥାୟୀ ଶିବିର ପକାଇ ପ୍ରଜାମାନଙ୍କର ଦୁଃଖ ଦୁର୍ଦ୍ଦଶା ବୁଝି ତାର ପ୍ରତିକାର ବିଧାନ କରିଥିଲେ । ସେ ସମୟରେ କୃଷି ହିଁ ରାଜ୍ୟବାସୀଙ୍କର ପ୍ରଧାନ ଜୀବିକା ଥିଲା । ତାର ଉନ୍ନତି ହେଲେ ପ୍ରଜାଙ୍କ ଆର୍ଥିକ ମେରୁଦଣ୍ଡ ସୁଦୃଢ଼ ହେବ ଏହା ଉପଲବ୍‌ଧିକରି ସେ ରାଜ୍ୟର ପ୍ରେଷ୍ଟବଡ଼ ଜଳାଧାର ଗୁଡ଼ିକର ମରାମତିକରି ନୂତନ ଜଳାଶୟମାନ ଖୋଳିବାର ବ୍ୟବସ୍ଥା କଲେ । କୃଷି ଓ କ୍ଷୁଦ୍ର ଶିଳ୍ପର ବିକାଶ ପାଇଁ ପ୍ରଜାଙ୍କ ଭିତରେ ଉତ୍ସାହ ସୃଷ୍ଟି କରିବା ଉଦ୍ଦେଶ୍ୟରେ ପ୍ରତ୍ୟେକ ବର୍ଷ ଦଶହରା ଉତ୍ସବ ସମୟରେ କୃଷି ଓ ଶିଳ୍ପଜାତ ଦ୍ରବ୍ୟର ପ୍ରଦର୍ଶନୀ କରାଇ କୃଷୀ ଓ ଶିଳ୍ପୀମାନଙ୍କୁ ପୁରସ୍କାର ଓ ପ୍ରଶଂସାପତ୍ର ବିତରଣ କରୁଥିଲେ । ଉକ୍ତ ବର୍ଷସୂରେ କୃଷୀ ଓ ଶିଳ୍ପୀମାନଙ୍କୁ ଉପଯୁକ୍ତ ବୈଜ୍ଞାନିକ ଜ୍ଞାନ ଓ ତଥ୍ୟ ପରିବେଷଣ କରିବା ଉଦ୍ଦେଶ୍ୟରେ 'ଜ୍ଞାନଦର୍ପଣ' ନାମକ ଏକ ମାସିକ ପତ୍ରିକା ଲବ୍‌ଧ ପ୍ରତିଷ୍ଠ ସାହିତ୍ୟିକ ସ୍ୱର୍ଗୀୟ ଚନ୍ଦ୍ରମଣି ମହାନ୍ତିଙ୍କ ସମ୍ପାଦନାରେ ୧୯୦୯ ଖ୍ରୀଷ୍ଟାବ୍ଦରେ ଧରାକୋଟର କେଶରୀ ପ୍ରେସରୁ ପ୍ରକାଶ କରାଇବାର ବ୍ୟବସ୍ଥା କରିଥିଲେ ।

ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ଓ ଅବହେଳିତ ଓଡ଼ିଆଙ୍କ ଅଭାବ ଓ ଅସୁବିଧା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ ଉଦ୍ଦେଶ୍ୟରେ ସେ 'ସମ୍ବାଦ ମିତ୍ର' ନାମକ ଏକ ମାସିକ ପତ୍ରିକା ପଣ୍ଡିତ କାଶୀନାଥ ରାଜଗୁରୁଙ୍କ ସମ୍ପାଦନାରେ ପ୍ରକାଶ କରିଥିଲେ । ଏହି ସମ୍ବାଦ ପତ୍ର ବିଷୟରେ ସମ୍ବଲପୁର ହିତୈଷିଣୀ ପତ୍ରିକା ତା ୧୦-୧୨-୧୯୧୭ ରେ ଯେଉଁ ମନ୍ତବ୍ୟ ଦେଇଥିଲେ ତାର କିୟଦଂଶ ଦିଆଗଲା "ଶୁଣି ଖୁସିହେବେ ଧରାକୋଟ ରାଜା ମଦନମୋହନ ସିଂହ ଦେଓଙ୍କ ସମ୍ପୂର୍ଣ୍ଣ ଆନୁକୂଲ୍ୟରେ ଏବଂ ପଣ୍ଡିତ କାଶୀନାଥ ରାଜଗୁରୁଙ୍କ ସମ୍ପାଦକତ୍ୱରେ ଧରାକୋଟରୁ 'ସମ୍ବାଦ ମିତ୍ର' ପୁଣି ଦେଖାଦେଇଛି ।

ପତ୍ରକାର ଇତ୍ଥମ୍ଭୂତ ବହୁଳ ପ୍ରଚାରଦ୍ୱାରା ଆମ୍ଭମାନଙ୍କ ଭାଷାପକ୍ଷେ ଆଶାର କଥା"।

ଦେଶ ମିଶ୍ରଣ ଆନ୍ଦୋଳନରେ ଜଣେ ବଳିଷ୍ଠ କର୍ମୀ, ସାହିତ୍ୟିକ, ଦେଶସେବା ଓ ସାମ୍ବାଦିକ ନରବ୍ୟାଘ୍ର 'ଶଶିଭୂଷଣ ରଥ' ୧୯୧୩ ଖ୍ରୀଷ୍ଟାବ୍ଦରେ "ସାପ୍ତାହିକ ଆଶା" ଖବର କାଗଜ ପ୍ରକାଶକରି ଓଡ଼ିଶାର ସାମ୍ବାଦିକତା କ୍ଷେତ୍ରରେ ଯୁଗାନ୍ତର ସୃଷ୍ଟି କଲେ । ସେତେବେଳେ ସେ ଏହି କାର୍ଯ୍ୟ ନିମିତ୍ତ ଆର୍ଥିକ ସାହାଯ୍ୟ ରାଜାଙ୍କଠାରୁ ପାଇଥିଲେ । ଗଂଜାମର ଅନ୍ୟାନ୍ୟ ଜମିଦାର ଧନୀ, ଗୁଣି ଓ ଦେଶପ୍ରେମୀଙ୍କ ସାହଚର୍ଯ୍ୟ ଲଭିକରି ସେ ୧୯୨୮ ଖ୍ରୀଷ୍ଟାବ୍ଦରେ ଦୈନିକ ଆଶା ପ୍ରକାଶ କରିବାର ସମର୍ଥ ହୋଇଥିଲେ । ସେ ସମୟରେ ମଧ୍ୟ ମଦନମୋହନଙ୍କ ବିପୁଳ ଉତ୍ସାହ ଓ ଆର୍ଥିକ ସାହାଯ୍ୟ ଶଶିଭୂଷଣଙ୍କୁ ନୂତନ ପ୍ରେରଣା ଯୋଗାଇ ଥିଲା ।

ଜନସାଧାରଣଙ୍କ ସ୍ୱାସ୍ଥ୍ୟ ସେବାପାଇଁ ବ୍ରହ୍ମପୁର ସିଭିଲ ସର୍ଜନ ଚିକିତ୍ସାଳୟକୁ ଗୋଟିଏ ନୂତନ ରଞ୍ଜନ ରଶ୍ମି ଦାନକରି ଉକ୍ତ ଚିକିତ୍ସାଳୟରେ କେତେଗୋଟି ପ୍ରସୂତି ଭବନ ନିର୍ମାଣ କରିବାର ଦାୟିତ୍ୱ ବହନକରି ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ । ଏତଦ୍ ବ୍ୟତୀତ ନିଜ ରାଜଧାନୀ ଧରାକୋଟ ଗଡ଼ରେ ଏକ ଚିକିତ୍ସାଳୟ ପ୍ରତିଷ୍ଠା-କରିବା ପାଇଁ ଜମି, ଗୃହ ଓ ଅନ୍ୟାନ୍ୟ ଯନ୍ତ୍ରପାତି ଯୋଗାଇ ଦେଇଥିଲେ ।

ବିଦ୍ୟୋତ୍ସାହୀ ରାଜା ରାଜ୍ୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ପାଇଁ ନିଜଗଡ଼ ନିକଟରେ ରାଜଭିର ପ୍ରଥମବର୍ଷ ଏକ ନିମ୍ନ ମାଧ୍ୟମିକ ଇଂରେଜୀ ବିଦ୍ୟାଳୟ ଓ ୧୯୦୫ ଖ୍ରୀଷ୍ଟାବ୍ଦରେ ନିଜ ପାଟ୍ଟଦେଈ ଶ୍ରୀ ବ୍ରଜକିଶୋର୍‌ଚନ୍ଦ୍ର ସିଂହଙ୍କ ନାମରେ ଶ୍ରୀ ପାଟ୍ଟଦେବ ସଂସ୍କୃତ ଟୋଲ ପ୍ରତିଷ୍ଠା କରିଥିଲେ । ଏହି ଉଭୟ ଶିକ୍ଷାପ୍ରତିଷ୍ଠାନ ଛାତ୍ରମାନଙ୍କୁ ଆକୃଷ୍ଟ କରିବାପାଇଁ ଦୂର ଦେଶାଗତ ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ଏକ ପ୍ରକାଣ୍ଡ ଛାତ୍ରାବାସ ନିର୍ମାଣ କରି ଦୈନିକ

ଘଣ୍ଟା ଆକାରରେ ଓ ବିଭିନ୍ନ ମଠମାନଙ୍କରେ ଛାତ୍ରମାନଙ୍କର ଖାଦ୍ୟପେୟର ଯୋଗାଡ଼ କରିଥିଲେ । ତାରଫଳରେ ଉତ୍ତର ଗଞ୍ଜାମର ଏହି ଶ୍ରେଷ୍ଠ ଶିକ୍ଷା କେନ୍ଦ୍ରରେ ସୁଦୂର ଖଲ୍ଲିକୋଟ, ଆଠଗଡ଼, ବଡ଼ଗଡ଼, ସୋରଡ଼ା, ସେରଗଡ଼, ଖେମଣ୍ଡି ଓ ଧୁମୁସରରୁ ବହୁ ଗରିବ ଓ ମେଧାବୀ ଛାତ୍ର ଏହି ଅନୁଷ୍ଠାନଗୁଡ଼ିକରେ ଶିକ୍ଷାଲାଭ କରୁଥିଲେ । ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ସ୍ୱର୍ଗୀୟ ଲିଙ୍ଗରାଜ ପାଣିଗ୍ରାହୀ 'ଆଶା' ଖବର କାଗଜର ପ୍ରତିଷ୍ଠାତା ସ୍ୱର୍ଗୀୟ ଶଶିଭୂଷଣ-ରଥ, କବି ବୈକୁଣ୍ଠ ପଟ୍ଟନାୟକ ପ୍ରଭୃତି ଏହି ପ୍ରାଥମିକ ମାଧ୍ୟମିକ, ଶିକ୍ଷା ବ୍ୟତୀତ ଏହି ଜିଲ୍ଲାର ଛାତ୍ରମାନେ କିପରି କଲେଜରେ ଅଧ୍ୟୟନ କରି ବିଜ୍ଞାନ ଶିକ୍ଷାରେ ପାରଦର୍ଶିତାଲାଭ କରିପାରିବେ ସେଥିପାଇଁ ସେ ଅହରହ ଚିନ୍ତାକରୁଥିଲେ । ଏଣୁ କଠୋର ଆର୍ଥିକ ଦୁଃସ୍ଥିତି ଭିତରେ ପରିଚାଳିତ ହେଉଥିବା ବ୍ରହ୍ମପୁରରେ ଅବସ୍ଥିତ ଗଞ୍ଜାମର ଏକମାତ୍ର ମହାବିଦ୍ୟାଳୟକୁ ଏକ ଉନ୍ନତ ଓ ଆଦର୍ଶ ଅନୁଷ୍ଠାନରେ ପରିଣତ କରିବାପାଇଁ ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ଯେତେବେଳେ ଏକଲକ୍ଷ ଟଙ୍କା ଦାନକଲେ ମଦନମୋହନ ସିଂହ ଏହି ମହାବିଦ୍ୟାଳୟର ବିଜ୍ଞାନାଗାର ପାଇଁ ଯନ୍ତ୍ରପାତି କିଣିବା ଉଦ୍ଦେଶ୍ୟରେ ୧୯୦୧ ଖ୍ରୀଷ୍ଟାବ୍ଦରେ ଦଶହଜାର ଟଙ୍କା ଦାନକରି ବିଜ୍ଞାନ ବିଭାଗକୁ ପରିପୁଷ୍ଟ କରିଥିଲେ । ତାଙ୍କର ଏହି ନିଃସ୍ୱାର୍ଥପର ଦାନ ଯୋଗୁଁ ଅନୁଷ୍ଠାନର ପରିଚାଳନା କମିଟି ଏହି ବିଜ୍ଞାନାଗାରକୁ "ଧରାକୋଟ ବିଜ୍ଞାନଗାର" ରୂପେ ନାମିତ କରିଥିଲେ ।

ବୈଦିକ ଶିକ୍ଷାପ୍ରତି ଛାତ୍ରମାନଙ୍କୁ ବୃତ୍ତିଖଞ୍ଜି ଥିଲେ । ରାଜାମହୋଦୟ ଯେ, ପ୍ରାଚ୍ୟ ପାଶ୍ଚାତ୍ୟ ଶିକ୍ଷାର ଅଗ୍ରଗତି ପାଇଁ ସଚେଷ୍ଟଥିଲେ ତାହାନୁହେଁ; ସେ ଦେଶରେ ଜାତୀୟ ଶିକ୍ଷାର ପ୍ରସାର ପାଇଁ ମଧ୍ୟ ଚିନ୍ତାକରୁଥିଲେ । ତେଣୁ ସତ୍ୟବାଦୀ ଜାତୀୟ ବନବିଦ୍ୟାଳୟକୁ ଆର୍ଥିକ ସାହାଯ୍ୟ ଯୋଗାଇବା ପାଇଁ ଉତ୍କଳମଣି ନୀଳକଣ୍ଠ ଦାସ ଓ ଗୋଦାବରୀଶ ମିଶ୍ର ଧରାକୋଟକୁ ଆସି

ଯେତେବେଳେ ରାଜାଙ୍କୁ ଅନୁରୋଧକରି ଉକ୍ତ ବିଦ୍ୟାଳୟର ବାର୍ଷିକ ପୁରସ୍କାର ବିତରଣୀ ଉତ୍ସବରେ ପୌରୋହିତ୍ୟ କରିବାପାଇଁ ଆମନ୍ତ୍ରଣ କରିଥିଲେ ସେ ତାହା ଆଗ୍ରହରେ ଗ୍ରହଣ କରିଥିଲେ । ସେ ଉକ୍ତ ଉତ୍ସବରେ ଯୋଗଦାନକରି ଦୁବୃତ୍ତମାନଙ୍କ ଦ୍ୱାରା ଧ୍ୱଂସ କରାଯାଇଥିବା ବିଦ୍ୟାଳୟ ଗୃହର ପୁନଃ ନିର୍ମାଣ- ପାଇଁ ପ୍ରଚୁର ଆର୍ଥିକ ସାହାଯ୍ୟ ଦେଇଥିଲେ । ଏହି ଉତ୍ସବରେ ରାଜାଙ୍କୁ ସ୍ୱାଗତ ଜଣାଇବା ଗୋପବନ୍ଧୁ ଦାଶଙ୍କ ଦ୍ୱାରା ରଚିତ ଗୋଟିଏ ପଦ୍ୟର ଦୁଇଧାଡି ଉଲ୍ଲେଖ କରାଗଲା ।

ଆଜି ଆମ୍ଭ ପୁଣ୍ୟଫଳ ପୁଣ୍ୟମାସ ପୁଣ୍ୟଦିନେ
ଆସିଛନ୍ତି ରାଜ ଅତିଥି ଏ ଶୁଚିତ ବୃନ୍ଦାବନେ

× × ×

କାନନ କୁସୁମ ଜଳ ଏଥି କେବଳ ସମ୍ବଳ
ସେନ୍ହର ଏ ଉପହାର ଦେନ ଦିବ୍ୟ ଅବଧାନେ
ଏତିକି ମାଗୁଣି ଶେଷେ ଥାଅ ତୁମ୍ଭେ ଯେଉଁ ଦେଶେ
ମନେ ରଖିଥିବ ସଦା ଏ ବନ ବିଦ୍ୟା ଭବନେ

ସେ ଉତ୍କଳ ଦେଶ ମିଶ୍ରଣ, ସ୍ୱତନ୍ତ୍ର ପ୍ରଦେଶ ଗଠନ, ଏବଂ ସାଧାରଣ ଦେଶହିତକର କାର୍ଯ୍ୟରେ ନିଜକୁ ନିୟୋଜିତ ରଖି ଓଡିଶାପ୍ରଦେଶ ତଥା ଗଞ୍ଜାମ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରିଥିଲେ । ତେଲୁଗୁ ମାନଙ୍କ ଦୌରାତ୍ମ୍ୟରୁ ଓଡ଼ିଆ ଭାଷାକୁ ବଞ୍ଚାଇ ରଖିବା ପାଇଁ ୧୯୦୧ ମସିହାରେ ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ଓ ପାରଳାଖେମଣ୍ଡିର ଗଜପତି ମହାରାଜାଙ୍କ ଉତ୍ସାହ ଓ ସାହାଯ୍ୟରେ ଯେଉଁ ଗଞ୍ଜାମ ସମ୍ମିଳନୀ ହୋଇଥିଲା ରାଜା ମଦନମୋହନ ସେହି ସମ୍ମିଳନୀ ଆୟୋଜନ କରିବାରେ

ଏକ ବଶିଷ୍ଟ ଭୂମିକା ଗ୍ରହଣ କରିଥିଲେ । ଅଣ ଓଡ଼ିଆଙ୍କ ପ୍ରଭାବରୁ ଓଡ଼ିଆ-ଲୋକଙ୍କୁ ରକ୍ଷାକରିବାପାଇଁ ନିଜର ଧନ ଓ ମନଦେଇ ବହୁ ପରିଶ୍ରମ କରିଥିଲେ । ଗଞ୍ଜାମ ସମ୍ମିଳନୀର ପ୍ରସ୍ତାବ ଓ ଉତ୍କଳ ଗୌରବ ମଧୁସୂଦନଙ୍କ ପରାମର୍ଶ ଅନୁସାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ୧୯୦୩ ମସିହା ଡିସେମ୍ବର ମାସରେ ମୟୂରଭଞ୍ଜର ରାଜା ରାମଚନ୍ଦ୍ର ଭଞ୍ଜ ଦେଓଙ୍କ ସଭାପତିତ୍ୱରେ କଟକ ଠାରେ ଅନୁଷ୍ଠିତ ହୋଇଥିଲା ।

ଏହି ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ତା ୨୮-୧୨-୧୯୦୪ ମସିହାରେ ଦେଶପ୍ରାଣ ରାଜା ମଦନମୋହନ ସିଂହ ଦେଓଙ୍କ ସଭାପତିତ୍ୱରେ କଟକ ଠାରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରିବା ପ୍ରସ୍ତାବ ସଙ୍ଗେ ସଙ୍ଗେ ଓଡ଼ିଶାରେ ନାରୀଶିକ୍ଷାର ପ୍ରସାରପାଇଁ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ସମେତ କୃଷି ଓ ଶିଳ୍ପର ବିକାଶ କରାଇ ଗରିବ ଓଡ଼ିଆ-ଙ୍କର ଆର୍ଥିକ ଉନ୍ନତି ସାଧନ କରିବା ପାଇଁ ବହୁ ପ୍ରଗତିଶୀଳ ପ୍ରସ୍ତାବ ଏହି ସମ୍ମିଳନୀରେ ଗୃହୀତ ହୋଇଥିଲା । ଏହି ସଭାର ଅଭ୍ୟର୍ଥନା ସଭାର ସଭାପତିଥିଲେ ତତ୍କାଳୀନ କେନ୍ଦୁଝର ମହାରାଜା । ଏହି ବିଷୟରେ ସ୍ୱର୍ଗୀୟ ଚିନ୍ତାମଣି ମହାନ୍ତିଙ୍କ ଲିଖିତ କେତେକ ପଦରୁ ଗୋଟିଏ ପଦ ଉଲ୍ଲେଖ କରାଗଲା ।

ଜାତୀୟ ମହତୀ ସଭାର ହୋଇ ସେ ସଭାପତି
ଗଞ୍ଜାମର ଲୁପ୍ତ ଗୌରବ ଉଦ୍ଧାରିଲେ ନୃପତି

ଗଞ୍ଜାମରେ ତେଲୁଗୁ ମାନଙ୍କ ପ୍ରଭାବକୁ ପ୍ରତିହତ କରିବା ପାଇଁ ସେ ସମୟରେ ଖଲିକୋଟର ହରିହର ମର୍ଦ୍ଦରାଜ ଓ ମଦନମୋହନ ସିଂହ-ଦେଓ ସମଗ୍ର ଗଞ୍ଜାମ ଜିଲ୍ଲାର କୋର୍ଟ କଚେରୀରେ ଓ ଜମିଦାରୀ ଇଲକା କଚେରୀ ଗୁଡ଼ିକରେ ଓଡ଼ିଆ ଭାଷା ପ୍ରଚଳନ କରିବା ପାଇଁ ଗଞ୍ଜାମ ଉତ୍କଳ

ସମିତି ମାଧ୍ୟମରେ ଓଡ଼ିଆ ଓକିଲ ଓ ବୁଦ୍ଧିଜୀବୀଙ୍କ ମଧ୍ୟରେ ନୂତନ ପ୍ରେରଣା ଓ ଜାଗରଣ ସୃଷ୍ଟି କରି ଓଡ଼ିଆଙ୍କ ଯୁକ୍ତିଯୁକ୍ତ ଦାବୀକୁ ତତ୍କାଳୀନ ଭାଇସରାୟ ଲର୍ଡ଼ କର୍ଜନଙ୍କ ନିକଟରେ ଉପସ୍ଥାପିତ କରି ନିଜନିଜ ଜମିଦାରୀ ଇଲାକା କଚେରୀ ଗୁଡ଼ିକରେ ସର୍ବପ୍ରଥମେ ଓଡ଼ିଆ ଭାଷା ପ୍ରଚଳନ କରିଥିଲେ । ଏହି ମହତ୍ କାମରେ ଓଡ଼ିଆ ଓକିଲ ଓ ଅନ୍ୟାନ୍ୟ ବୁଦ୍ଧିଜୀବୀମାନେ ଉକ୍ତ ରାଜାମାନଙ୍କ ପରାମର୍ଶ ଗ୍ରହଣ କରୁଥିବା ବିଷୟ ତା ୧୩-୧-୧୯୦୬ ରେ The star of Utkal ଖବର କାଗଜରେ ପ୍ରକାଶିତ ମନ୍ତବ୍ୟ ଉଦ୍ଧାର କରାଗଲା ।

Sri Biswanath Misra, Babu Harihara Panda and Pandit Neelamani Bidyaratna have been working very hard for the Country. But when they propose something in the name of Utkal community they should gather the view of the leading man of the community particularly the Raja of Dharakote and Khal:kote.

ସେ ଗଞ୍ଜାମଜିଲ୍ଲା ଜମିଦାରୀ ସଙ୍ଘର ଓ ଗଞ୍ଜାମ ଜିଲ୍ଲାବୋର୍ଡ଼ର ମଧ୍ୟ କର୍ତ୍ତୃକାଳ ସଭ୍ୟଥିଲେ । ଏତଦ୍ ବ୍ୟତୀତ ମାନ୍ଦ୍ରାଜ କାଉନସିଲରେ ମଧ୍ୟ ଗଞ୍ଜାମରୁ ପ୍ରତିନିଧିତ୍ୱ କରିଥିଲେ । ଗଞ୍ଜାମ ଜିଲ୍ଲାର ପ୍ରାଥମିକ ସ୍କୁଲମାନଙ୍କରେ ଓଡ଼ିଆ ଶିଖାଇବା ନିମନ୍ତେ ତେଲୁଗୁ ଶିକ୍ଷକମାନଙ୍କୁ ନିଯୁକ୍ତ ଦିଆଯାଉଥିବା ହେତୁ ଓଡ଼ିଆ ଭାଷା ଅତ୍ୟନ୍ତ ବିକଳଙ୍ଗ ହୋଇଥିଲା । ଏହାର ନିରାକରଣ ପାଇଁ ସରଳ ଓଡ଼ିଆ ଭାଷାରେ ଛାତ୍ରଛାତ୍ରୀଙ୍କୁ ଶିକ୍ଷାଦେବାପାଇଁ ସେ ମାନ୍ଦ୍ରାଜ କାଉନସିଲରେ ୧୯୧୪ ମସିହାରେ ଦୃଢ଼ଦାବୀ ଉପସ୍ଥାପିତ କରିଥିଲେ । ଏ ବିଷୟରେ 'ସମ୍ବଲପୁର ହିତୈଷିଣୀ' ପତ୍ରିକା ତା ୧୩-୬-୧୯୧୪ ସଂଖ୍ୟାରେ ଯେଉଁ ମନ୍ତବ୍ୟ ଦେଇଥିଲେ ତାର କିୟଦ୍ଦ୍ୟ ଅଂଶ ପ୍ରଦତ୍ତ ହେଲା ।

"ଧରାକୋଟର ମାନ୍ୟବର ରାଜାସାହେବ ଚେମ୍ବରରେ ଓଡ଼ିଆ ଶିକ୍ଷକ ନିଯୁକ୍ତି ସମ୍ପର୍କରେ ସାହସ ପୂର୍ବକ ବ୍ୟବସ୍ଥା ସମ୍ବନ୍ଧରେ ପ୍ରସ୍ତାବ କରିଥିବା ହେତୁ ତାହାଙ୍କୁ ମୁକ୍ତ କଣ୍ଠରେ ଭୂୟସୀ ଧନ୍ୟବାଦ ଅର୍ପଣ କରୁଅଛୁ ।"

୧୯୩୨ ମସିହାରେ ମାନ୍ଦ୍ରାଜ କାଉନସିଲର ଓଡ଼ିଶା ପ୍ରଦେଶ ଗଠନ ପ୍ରତି ଦୁର୍ବ୍ୟବହାରର ପ୍ରବଳ ପ୍ରତିବାଦ କରିବାଲାଗି ଭାରତ ସରକାରଙ୍କ ନିକଟରେ ଓଡ଼ିଶାର ନ୍ୟାଯ୍ୟଦାବୀ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ପାରଳାଖେମଣ୍ଡୀ ଗଜପତି ରାଜାଙ୍କ ନେତୃତ୍ୱରେ ଯେଉଁ ତିନିଜଣିଆ କମିଟି ଗଠନ କରାଗଲା । ସେଥିରେ ସଭ୍ୟଥିଲେ ମଦନ ମୋହନ ସିଂହ ଦେଓ, ଲିଙ୍ଗରାଜ ପାଣିଗ୍ରାହୀ ଓ ଭୁବନାନନ୍ଦ ଦାସ । ଏହି କମିଟି ଓଡ଼ିଶାର ଦାବିକୁ ଯଥାର୍ଥଭାବେ ଉପସ୍ଥାପିତ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପଥ ପରିଷ୍କାର କରିଥିଲେ ।

ଦେଶନିର୍ମାଣ କାର୍ଯ୍ୟ ବ୍ୟତୀତ, ଶିକ୍ଷାବିସ୍ତାର, ସମାଜ ସଂସ୍କାର, ସନାତନ ଧର୍ମୋଦ୍ଧାର ଓ ସାହିତ୍ୟର ବିକାଶ ସାଧନ ପାଇଁ ସେ ନିଜର ଧନ, ମନ ଓ ପ୍ରାଣ ଉତ୍ସର୍ଗ କରିଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ଉକ୍ତ ମହତ୍ କାର୍ଯ୍ୟସାଧନ କରି ସେ ଦେଶବାସୀଙ୍କର ଓ ସରକାରଙ୍କର ମଧ୍ୟ ଆସ୍ଥା ଭାଜନ ହୋଇଥିଲେ । ସେ ସମୟରେ ଧରାକୋଟ ସାହିତ୍ୟ ସାଧନାର ପୀଠଥିବା ହେତୁ ବାଲେଶ୍ୱରର ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ କବିବର ଚନ୍ଦ୍ରମଣି ମହାନ୍ତି ୧୯୦୯ ମସିହାରେ ଧରାକୋଟରେ ପଦାର୍ପଣ କରି ରାଜାଙ୍କ ଆତିଥେୟତା ଲାଭକରି ରାଜାଙ୍କ ପ୍ରୋତ୍ସାହନରେ ଦୁଇଟି ଗ୍ରନ୍ଥ ଯଥା— "ଧରାକୋଟ ଦର୍ଶନ" ଓ "ଉତ୍କଳ କମଳକାବ୍ୟ" ପ୍ରଣୟନ କରିଥିଲେ । କବି ଚନ୍ଦ୍ରମଣି ଧରାକୋଟ ପଣ୍ଡିତ ଓ କବିମାନଙ୍କ କାବ୍ୟିକ ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କ ଧରାକୋଟ ଦର୍ଶନରେ ଯେଉଁ ମନ୍ତବ୍ୟ ଦେଇଛନ୍ତି ସେଥିରୁ ଦୁଇପଦ ଉଦ୍ଧୃତ କରାଗଲା ।

କବି କୁଞ୍ଜ ପୁଞ୍ଜ ଗଞ୍ଜାମ ମଧ୍ୟେ ସାହିତ୍ୟ ଖଣି
ମେଲାଅଛି ମଞ୍ଜୁ ମାଧୁରୀ ଧରାକୋଟ ଧରଣୀ

× × ×

ଧନ୍ୟା ଧରାକୋଟ ଧରଣୀ ମହାକବି ଜନନୀ
ଲକ୍ଷ୍ମୀ ସରସ୍ୱତୀ ମିଳନ ଭୂମିଶୋଭି ବପଣୀ

ତାଙ୍କ ସମୟରେ ଧରାକୋଟ ବୁଧହଂସ କେଳିସର ପୁରଥିଲା ଓ ଧରାକୋଟକୁ ଦ୍ୱିତୀୟ ବାରାଣସୀ ଜ୍ଞାନ ପୀଠ ଆଖ୍ୟା ଦିଆଯାଇଥିଲା । ସାହିତ୍ୟ ରସିକ ଗୁଣଗ୍ରାହୀ ରାଜାଙ୍କ ଉତ୍ସାହ ଓ ପୃଷ୍ଠ ପୋଷକତା ଲାଭକରି ଓଡ଼ିଶା ଓ ଓଡ଼ିଶା ବାହାରର ବହୁ ବିଦ୍ୱାନ ପଣ୍ଡିତ ରାଜଦରବାରରେ ଉପସ୍ଥିତ ହୋଇ ଧର୍ମ, ଦର୍ଶନ ଓ ସାହିତ୍ୟର ବହୁ ଜଟିଳ ବିଷୟରେ ଆଲୋଚନା କରୁଥିଲେ । ସଂସ୍କୃତ ପଣ୍ଡିତ ଓ କବିମାନଙ୍କୁ ରାଜଦରବାରରେ ଯେପରି ରାଜସମ୍ମାନ ମିଳୁଥିଲା ଓଡ଼ିଆରେ ଛନ୍ଦରଚନା କରୁଥିବା କବି ଓ ଲେଖକମାନଙ୍କୁ ମଧ୍ୟ ଅନୁରୂପ ରାଜ ସମ୍ମାନ ମିଳୁଥିଲା । ଏହା ଫଳରେ ଯେ କେବଳ ପଣ୍ଡିତମାନେ କେତେକ ଅମୂଲ୍ୟ ଗ୍ରନ୍ଥ ପ୍ରଣୟନ କରି ସମାଜରେ ଗୌରବାନ୍ୱିତ ହେଉଥିଲେ ତାହାନୁହେ । ସେ ନିଜେ ମଧ୍ୟ କେତେକ କ୍ଷୁଦ୍ର କବିତା ଓ ଗୀତିନାଟକ ରଚନା କରିବାରେ ପ୍ରୟାସୀ ହୋଇ ଓଡ଼ିଆ ସାହିତ୍ୟର ଛନ୍ଦଭଣ୍ଡାର ପୁଷ୍ଟି କରିଥିଲେ । ତାଙ୍କ ରଚିତ କେତେକ କବିତାରୁ ଗୋଟିକର କିୟଦଂଶ ଦିଆଗଲା ।

ହେ ! ଗୋବିନ୍ଦ ଦେଖାଅ ମୁଖାରବିନ୍ଦ (ପଦ)
ବୃନ୍ଦାବନ ଅୟନ ଖୋଜନ୍ତି ଯେ ଗୋପୀଜନ ଭୁଲାଇବାର କି ପସନ୍ଦ ?
ହରି ଆରାଧି ବରପାଇ ତୁମ୍ଭଙ୍କୁ ବରି କରିଛୁ କପଟୀ ଏଡ଼େ ଛନ୍ଦ
ପତିବ୍ରତ ଅନ୍ୟୟ ଜାତି ମହତ୍ତ୍ୱ ଚୟ ଚ୍ଛାଡ଼ି ହୋଇଲୁ କେତେ ମନ୍ଦ

× × ×

ଏହା ଯେବେ ମାନସେ ଥିଲା କାହିଁକି ତୋଷେ ରଖିଲ ବିପଦ୍ଧୁଁ
ଗୀତିବୃନ୍ଦ

ଧରାକୋଟ ରାଜନ ଶ୍ରୀ ମଦନମୋହନ ସିଂହ ବନ୍ଧ୍ୟୁ ଚନ୍ଦ୍ରିକା ବ୍ରାନ

ତାଙ୍କ ରାଜତ୍ୱର ସାର୍ଦ୍ଧ ୪୧ ବର୍ଷର ଦୀର୍ଘ ସମୟରେ ବହୁସ୍ଥାନୀୟ ପ୍ରବୀଣ ପଣ୍ଡିତ ତାଙ୍କ ରାଜସଭା ମଣ୍ଡନ କରି ନିଜନିଜର ପାଣ୍ଡିତ୍ୟର ଉତ୍କର୍ଷତା ପ୍ରଦର୍ଶନ କରି ରାଜଦତ୍ତ ଉପାଧିରେ ଭୂଷିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ବ୍ରାହ୍ମଣ ଗ୍ରାମର ଗୋବିନ୍ଦରାୟଗୁରୁ, ରାଜେନ୍ଦ୍ରପୁରର ବାସୁଦେବ ତର୍କାଳଂକାର,ହରଭଦ୍ର ସାହିତ୍ୟ ଭୂଷଣ, ଅନନ୍ତ ଦାସ କବିରତ୍ନ, ଟଙ୍ଗାପୁରର ନୀଳକଣ୍ଠ କବିରାଜ, କଳିଙ୍ଗରାଜ ସାହିତ୍ୟ ରତ୍ନାକର, ତିଲୋତ୍ତମା-ଦେଇପୁରର ସୁଦର୍ଶନ ହରିଶ ଭୂଷଣ ଭାଗବତ ଓ ଧର୍ମଶାସ୍ତ୍ରର ବିଶିଷ୍ଟ ବ୍ୟାଖ୍ୟାକାର ଗଣେଶ୍ୱର ବିଦ୍ୟାରତ୍ନ,ନାରାୟଣ ପୁରର ଗଣେଶ୍ୱର କବିଚନ୍ଦ୍ର, ରାମଚନ୍ଦ୍ରପୁରର ଭୁବନେଶ୍ୱର କବିବଲ୍ଲଭ, ପୁଟୁରୁ ଶ୍ୟାମସୁନ୍ଦର ପଦ୍ୟାଳଂ-କାର, ଦଶସିଂହପୁରର ବାଲ୍ମୀକ ଜ୍ୟୋତିରରତ୍ନ, କାଳିଦଣ୍ଡପୁରର ଧର୍ମଶାସ୍ତ୍ର ବ୍ୟବସ୍ଥାଦାତା ମାଗୁଣି ରାୟଗୁରୁ । ଏମାନଙ୍କ ଛଡ଼ା ରାଜେନ୍ଦ୍ରପୁରର ଶ୍ରୀ ହରିହର ମିଶ୍ର କାବ୍ୟତୀର୍ଥ,ନାରାୟଣପୁରର ପ୍ରଖ୍ୟାତ ଆୟୁର୍ବେଦ ଧର୍ମଶାସ୍ତ୍ର ଓ ସାହିତ୍ୟ ପଣ୍ଡିତ ଭଗବାନ ମହାପାତ୍ର, ଚନ୍ଦ୍ରମଣି ରଥ କାବ୍ୟତୀର୍ଥ ଟଙ୍ଗାପୁରର ପଣ୍ଡିତ ରାମକୃଷ୍ଣ ରଥ, ଧରାକୋଟର କଳିଙ୍ଗରାଜ ପୁରୋହିତ, ସାରଥି ଦାସ ବାସୁଦେବ ଉଦ୍ଗାତା ମିମାଂସାଚାର୍ଯ୍ୟ, ରାଜେନ୍ଦ୍ରପୁରର ଧର୍ମଶାସ୍ତ୍ର ବ୍ୟବସ୍ଥାପକ ବାସୁଦେବ ମିଶ୍ର ପ୍ରଭୃତି ପଣ୍ଡିତମାନେ ରାଜଦରବାରରେ ଶ୍ରେଷ୍ଠସ୍ଥାନ ଅଧିକାର କରିଥିଲେ । ଉପରୋକ୍ତ କେତେକ ପଣ୍ଡିତମାନଙ୍କ ସାହିତ୍ୟ ଓ ଧର୍ମଶାସ୍ତ୍ର ଗ୍ରନ୍ଥଉପରେ ସ୍ୱତନ୍ତ୍ରଭାବେ ଉଲ୍ଲେଖ କରାଯିବ ।

ସ୍ଥାନୀୟ ପଣ୍ଡିତମାନଙ୍କ ବ୍ୟତୀତ ଅନ୍ୟାନ୍ୟ ଅଞ୍ଚଳରୁ ବହୁ ବିଦ୍ୱାନ୍ ବ୍ୟକ୍ତି ତାଙ୍କ ରାଜଦରବାର ସଭାରେ ଯୋଗଦେଇ ଶାସ୍ତ୍ର ଓ ସାହିତ୍ୟାଲୋଚନାରେ

ଅଂଶଗ୍ରହଣ କରି ପୁରସ୍କୃତ ହେଉଥିଲେ । ସେମାନଙ୍କ ମଧ୍ୟରେ ଥିଲେ କାଶୀର ବିଖ୍ୟାତ ପଣ୍ଡିତ ଶ୍ରୀକର ଶାସ୍ତ୍ରୀ, ପୁରୀର ଭଜକୃଷ୍ଣ ମିଶ୍ର, କାଶୀନାଥ ମିଶ୍ର, ଆଠଗଡ଼ର ଲିଙ୍ଗରାଜ ଶାସ୍ତ୍ରୀ, ବ୍ରହ୍ମପୁରର ସଦାଶିବ ବିଦ୍ୟାଭୂଷଣ, ମଞ୍ଜୁଷାର ଗଦାଧର ବିଦ୍ୟାଭୂଷଣ, ଧୁମୁସରର ଜ୍ଞାନ ମାର୍ତ୍ତଣ୍ଡ ଚନ୍ଦ୍ରଶେଖର ବ୍ରହ୍ମା, ପିଳପିଳାର ତାର୍କିକ ଚିନ୍ତାମଣି ।

ସ୍ୱତନ୍ତ୍ର ମୁଦ୍ରାଯନ୍ତ୍ର ବ୍ୟତୀତ ପ୍ରାଚୀନ ତାଳପତ୍ରରେ ଲିଖିତ ଉପାଦେୟ ବହୁ ଗ୍ରନ୍ଥ ଲୁପ୍ତ ହୋଇଯାଉଥିବା ଅନୁଭବକରି ସେଗୁଡ଼ିକୁ ଲୋକ ଲୋଚନକୁ ଆଣିବା ସ୍ୱୀୟ ଧର୍ମମତ ପରିପ୍ରକାଶ ଓ ପ୍ରଚାରକରିବା ସର୍ବୋପରି ଓଡ଼ିଆଭାଷାର ବିକାଶ ଉଦ୍ଦେଶ୍ୟରେ ସେ ଧରାକୋଟରେ ୧୯୦୩ ମସିହାରେ କେଶରୀ ପ୍ରେସ ସ୍ଥାପନ କରିଥିଲେ । ଏହି ପ୍ରେସରୁ କେତେକ ପ୍ରାଚୀନଗ୍ରନ୍ଥ ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା । ତେଲୁଗୁ ଓ ବଙ୍ଗାଳୀ ଅଫିସରଙ୍କ ଦୌରାତ୍ମ୍ୟରୁ ଓଡ଼ିଆ ଭାଷା ଓ ଓଡ଼ିଆ ଲୋକଙ୍କୁ ରକ୍ଷାକରିବା ଉଦ୍ଦେଶ୍ୟରେ ଜନଚେତନା ସୃଷ୍ଟିପାଇଁ ରାଜାଙ୍କ ତତ୍ତ୍ୱାବଧାନରେ ଉକ୍ତ ପ୍ରେସରୁ 'କୋଇଲି' ନାମକ ଯେଉଁ ପଦ୍ୟ ପ୍ରକାଶ ପାଇଥିଲା ତାର ଦୁଇଟି ପଦ ଉଦ୍ଧୃତ କରାଗଲା ।

କୋଇଲି : ତେଲଙ୍ଗାଏ ଅଟନ୍ତି ଡ଼ୁଙ୍କଣ<br>
ତେଲି ଦ୍ୱାରେ ନେଉଁଛୁ ଘେରୁ କଟଲଗାନ୍ତି ପଟଲେ–କୋଇଲି<br>
କୋଇଲି : ଦେଶବୋଲି କେତେକ ବଙ୍ଗାଳୀ<br>
ଦେଶଶିରୀ ହରାଇଣ ମାରୁଛନ୍ତି ତାଳିଲୋ-କୋଇଲି

ଏହି କୋଇଲି ପ୍ରକାଶନ ଫଳରେ ରାଜା ମଦନମୋହନ ତେଲୁଗୁ ଉଚ୍ଚପଦସ୍ଥ ଅଫିସରଙ୍କ ଅବିଶ୍ୱାସ ଭାଜନ ହୋଇପଡ଼ିଲେ । ସେମାନଙ୍କ କୁଚକ୍ରାନ୍ତ ଫଳରେ ଏହି ପ୍ରେସର ଦ୍ୱାର ଚିରକାଳପାଇଁ ବନ୍ଦ ହୋଇଗଲା ।

ସଙ୍ଗୀତ, ନୃତ୍ୟ, ନାଟ୍ୟକଳା ଓ ନାଟ୍ୟଶିଳ୍ପୀମାନଙ୍କର ସାମଗ୍ରୀକ ବିକାଶ କରିବାଲାଗି । ନିଜ ରାଜବାଟିରେ କେଶରୀ ରଙ୍ଗମଞ୍ଚ ସ୍ଥାପନ କରିଥିଲେ । ଏହି ମଞ୍ଚରେ ବହୁ ନାଟକ ଅଭିନୀତ ହୋଇଥିଲା । ଓଡ଼ିଆ ଭାଷା ସାହିତ୍ୟର ଅଭିବୃଦ୍ଧି ପାଇଁ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଶବ୍ଦତତ୍ତ୍ୱ ଅଭିଧାନ ପ୍ରକାଶାର୍ଥେ ନିଜେ ଆର୍ଥିକସାହାଯ୍ୟ ଦେବା ସଙ୍ଗେ ସଙ୍ଗେ ଏହାର ସମସ୍ତ ମୁଦ୍ରଣଭାର ମାନ୍ଦ୍ରାଜ ଓ ବିହାର ସରକାର ବହନ କରିବାପାଇଁ ଉଭୟ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ଏହି ମହତ୍ତ୍ୱ କାର୍ଯ୍ୟରେ ସଫଳତା ଲାଭକରିଥିଲେ । ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ଭାଷାକୋଷ' ପ୍ରକାଶ ପାଇଁ ଓ ଅନ୍ୟାନ୍ୟ କେତେକ ଲେଖକଙ୍କ କାବ୍ୟକବିତା ପ୍ରକାଶ ପାଇଁ ସାହାଯ୍ୟ ଦାନ ତାଙ୍କର ଶିକ୍ଷା ଓ ସାହିତ୍ୟ ପ୍ରେମର ଅନ୍ୟଏକ ନିଦର୍ଶନ । ରାଜାଙ୍କ ସାହିତ୍ୟାନୁରାଗିତାରେ ବିମୁଗ୍ଧ ହୋଇ ତତ୍‌କାଳୀନ ସୁଧୀବର୍ଗ ୧୯୩୪ ମସିହାରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ହୋଇଥିବା ନିଖିଳ ଉତ୍କଳ କବି ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ ନିମନ୍ତ୍ରଣ କରିଥିଲେ । ରାଜା ମହୋଦୟ ଏହି ସମ୍ମିଳନୀରେ ଯୋଗଦେଇ ବହୁ କବି ଓ ଲେଖକଙ୍କୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଖଲ୍ଲିକୋଟର ସ୍ୱର୍ଗୀୟ ବାଇକୋଳି ଜ୍ୟୋତିଷ ବିଶାରଦଙ୍କୁ ଏକ ସୁବର୍ଣ୍ଣ ପଦକ ପ୍ରଦାନ କରିଥିଲେ ।

ସେ ଅତ୍ୟନ୍ତ ଧର୍ମପରାୟଣ ଥିଲେ । ସେ ତାଙ୍କର କର୍ତ୍ତବ୍ୟନିଷ୍ଠା, ବ୍ରହ୍ମନିଷ୍ଠା ଓ ଧର୍ମାନୁରାଗିତା ଯୋଗୁଁ ଓଡ଼ିଶାରେ ନୁହେ ଭାରତବର୍ଷର କେତେକ ଅଞ୍ଚଳରେ ମଧ୍ୟ ସୁଖ୍ୟାତିଲାଭ କରିଥିଲେ । ପ୍ରଥମ ବିଶ୍ୱଯୁଦ୍ଧପରେ ପାଶ୍ଚାତ୍ୟ ଶିକ୍ଷାର କୁପ୍ରଭାବ ସମାଜରେ ପ୍ରାଧାନ୍ୟ ଲଭିକରି ହିନ୍ଦୁଧର୍ମ, ସଂସ୍କୃତି,ବର୍ଣ୍ଣାଶ୍ରମ ସଦାଚାରର ପ୍ରବୃତ୍ତି ଯେତେବେଳେ ସ୍ୱପନ୍ଧିକ ,ପ୍ରତିହିତ ହେଲା ସେତେବେଳେ "ଅଖିଳ ଭାରତୀୟ ବର୍ଣ୍ଣାଶ୍ରମ ସ୍ୱରାଜ୍ୟ ସଂଘ ସ୍ଥାପିତ ହେଲା । ସ୍ୱର୍ଗୀୟ ରାଜା ଏହି ଅନୁଷ୍ଠାନର ଜଣେ ସକ୍ରିୟ ସଭ୍ୟ ଓ ପୃଷ୍ଠପୋଷକତାରେ ଏହି "ସନାତନଧର୍ମ ବିପ ବ ବିଧ୍ୱଂସନୀ" ସଭାର ତୃତୀୟ ଅଧିବେଶନ

୧୯୩୩ ମସିହା ଫେବୃୟାରୀ ସତାଇଶି ଓ ଅଠାଇଶି ତାରିଖ ଦୁଇଦିନ ବ୍ୟାପି ପୁରୀର ଏମାର ମଠ ମହନ୍ତ ମହାରାଜାଙ୍କ ସଭାପତିତ୍ୱରେ ଧର୍ମକୋଟରେ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ଓଡ଼ିଶାରୁ ଓଡିଶା ବାହାରୁ ବହୁ ଧର୍ମପ୍ରାଣ, ବିଦ୍ୱାନ ଓ ସାଧୁବ୍ୟକ୍ତି ଯୋଗଦାନ କରି ସନାତନ ଧର୍ମର ଅଭ୍ୟୁଦୟ ପାଇଁ ସୁଚିନ୍ତିତ ମତବ୍ୟକ୍ତ କରିଥିଲେ । ରାଜା ମହୋଦୟ ସମ୍ମିଳନୀର ସମସ୍ତ ବ୍ୟୟଭାର ଗ୍ରହଣ କରିଥିଲେ । ରାଜାଙ୍କ ଧର୍ମନିଷ୍ଠାରେ ଅଭିଭୂତ ହୋଇ ବିହାରର ,ଗୟା' ରେ ଅନୁଷ୍ଠିତ ହୋଇଥିବା ସନାତନ-ଧର୍ମ ବିଷୟକ ଅଷ୍ଟମ ଅଧିବେଶନରେ ସଭାପତି ଆସନ ଅଳଂକୃତ କରିବାପାଇଁ ପଣ୍ଡିତ ମଣ୍ଡଳୀଙ୍କ ଦ୍ୱାରା ନିମନ୍ତ୍ରିତ ହୋଇଥିଲେ । ଏହି ସମ୍ମିଳନୀ ୧୯୩୫ ମସିହାରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ଯୋଗଦାନ କରି ସେ ହିନ୍ଦୀରେ ଏକ ଲିଖିତଭାଷଣ ଦେଇ ସଭାସଦ୍ ପଣ୍ଡିତ ମଣ୍ଡଳୀଙ୍କୁ ଚମତ୍କୃତ କରିପାରିଥିଲେ । ଏହି ଭାଷଣ ୩୫ ପୃଷ୍ଠାବ୍ୟାପି ଏକ କ୍ଷୁଦ୍ର ପୁସ୍ତିକା ଭାବରେ ମୁଦ୍ରିତ କରାଯାଇଥିଲା । ଏହି ଅଧିବେଶନରେ ରାଜାଓ ଯୁବରାଜ ବ୍ରଜକିଶୋର ଚନ୍ଦ୍ରସିଂହ ଦେଓ ଓ ତାଙ୍କର ସଭାର ପଣ୍ଡିତ ଓ ଶିକ୍ଷାଗୁରୁ ଶ୍ରୀ ଗଣେଶ୍ୱର ବିଦ୍ୟାରତ୍ନ ଓ ବାସୁଦେବ ତର୍କାଳଂକାର ଯୋଗଦାନ କରିଥିଲେ । ପରମ ଭାଗବତ ରାଜର୍ଷିଙ୍କ ଜୀବନର ବିଭିନ୍ନ ଦିଗରୁ ଧାର୍ମିକ ଜୀବନଦର୍ଶର ପର୍ଯ୍ୟାଲୋଚନା କରିବାକୁ ଗଲେ ତାଙ୍କର ଏହି ଅଭିଭାଷଣ ପୁସ୍ତିକାଟି ପ୍ରଣିଧାନ କରିବା ଆବଶ୍ୟକ ସନାତନ ଧର୍ମର ମର୍ଯ୍ୟାଦା ରକ୍ଷାକରିବାକୁ ଯାଇ ଧର୍ମଯୁଦ୍ଧରେ ନିଜକୁ ସୈନିକଭଳି ସଜାଇ ପ୍ରତ୍ୟେକ ପରିସ୍ଥିତିର ସମ୍ମୁଖୀନ ହେବା ଜଣେ ସାଧାରଣ ସାଧକ ପକ୍ଷରେ କଷ୍ଟକର । ସେତେବେଳେ ଭୋଗ ବିଳାସରେ ବଢ଼ିଥିବା ଜଣେ ପରିଣତ ବୟସ୍କ ରାଜାଙ୍କ ପକ୍ଷରେ ଏଭଳି ଭାବନା ଜାଗ୍ରତ ହେବା କେତେଦୂର କଷ୍ଟକର ଏବଂ ସେଥିରେ ଅନ୍ୟ ପଡ଼ୋଶୀ ରାଜ୍ୟରେ ନିଜର ବକ୍ତବ୍ୟ ଉପସ୍ଥାପନ କରିବାରେ ତାଙ୍କର ସାହାସିକତା ଜଣାଯାଏ ଓ ଧର୍ମକୁ ରକ୍ଷା କରିବାଲାଗି

ତାଙ୍କର ଆପ୍ରାଣ ଚେଷ୍ଟାରେ ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ।

ସନାତନ ଧର୍ମର ମୂଳତତ୍ତ୍ୱକୁ ଲୋକଙ୍କ ମଧ୍ୟରେ ପ୍ରଚାରକରିବାପାଇଁ ବ୍ରହ୍ମପୁରରୁ ପ୍ରଜାବନ୍ଧୁ ପ୍ରେସରୁ ସ୍ୱର୍ଗୀୟ ଭୁବନେଶ୍ୱର ରଥଙ୍କ ସମ୍ପାଦନାରେ ଧର୍ମଦୂତ ନାମରେ ଏକ ଦୈନିକ ପତ୍ରିକା ପ୍ରକାଶ କରିବାର ବ୍ୟବସ୍ଥା କରିଥିଲେ । ସେଥିରେ ସ୍ଥାନୀୟ ପଣ୍ଡିତମଣ୍ଡଳୀ ଓ ଓଡ଼ିଶାର ବହୁ ବହୁ ଧର୍ମପ୍ରାଣ ବ୍ୟକ୍ତି ତଥା ସଂସ୍କାରକ ଗୋପବନ୍ଧୁ ବିଦ୍ୟାଭୂଷଣ, ସଦାଶିବ ବିଦ୍ୟାଭୂଷଣ, ଜୟମଙ୍ଗଳ ରଥ, ଶ୍ରୀବତ୍ସ ପଣ୍ଡା ପ୍ରଭୃତି ଧର୍ମମୂଳକ ବହୁ ଉପାଦେୟ ଲେଖା ପ୍ରକାଶ କରୁଥିଲେ । ବ୍ରାହ୍ମଣ୍ୟ ଧର୍ମର ପୁନରୁଦ୍ଧାର ପାଇଁ ଜ୍ଞାନବରିଷ୍ଠ ବ୍ରାହ୍ମଣ ଜାତି, ନ୍ୟାୟନିଷ୍ଠ ଓ ସଦାଚାର ସମ୍ପନ୍ନ ହୋଇ କିପରି ଜାତିକୁ ନୂତନ ଦିଗ ଦର୍ଶନ ଦେବେ ସେହି ବିଷୟରେ ସେ ଅହରହ ଚିନ୍ତା କରୁଥିଲେ ଏଣୁ ତା ୨୭-୫-୧୯୨୯ ରେ ପୂଜ୍ୟ ସାମନ୍ତ ଚନ୍ଦ୍ରଶେଖର ସ୍ମୃତିମନ୍ଦିରରେ ଉତ୍କଳ ବ୍ରାହ୍ମଣ ସମିତିର ବାର୍ଷିକ ଉତ୍ସବରେ ସଭାପତି ହେବାର ସୌଭାଗ୍ୟ ଲଭକରି ଯେଉଁ ସାରଗର୍ଭକ, ଚିନ୍ତାମୂଳକ ଓ ଗଠନ ମୂଳକ ଅଭିଭାଷଣ ଦେଇଥିଲେ ତାର କେତେକ ଅଂଶ ଏଠାରେ ଉଦ୍ଧାର କରାଗଲା ।

"ସେ କହିଥିଲେ ଜାତୀୟ ଆନ୍ଦୋଳନ ପ୍ରଭାବରେ ସାମ୍ପ୍ରଦାୟିକ ଅନୁଷ୍ଠାନମାନ କ୍ରମେ ମଉଳିଗଲା ଏବଂ ମଉଳିବା ବାଞ୍ଛନୀୟ । ଏକ ସମୟରେ ଏସବୁ ଅନୁଷ୍ଠାନ ଆବଶ୍ୟକ ଓ ଉପକାରୀ ବୋଲି ମନେ କରାଯାଉଥିଲା । ମାତ୍ର ଏବେ ସେ ସବୁର କାର୍ଯ୍ୟ ଶେଷ ହୋଇଛି । ଅଧିକ ଉଦାର ଓ ଉନ୍ନତ ଅନୁଷ୍ଠାନର ପ୍ରୟୋଜନ ହେଉଛି । ଜାତିର ପ୍ରୟୋଜନ ଓ ସମୟର ଇଙ୍ଗିତ ବୁଝି କାର୍ଯ୍ୟ ଗତି ବଦଳାଇବାଲାଗି ସେ କର୍ତ୍ତୃପକ୍ଷଙ୍କୁ ପରାମର୍ଶ ଦେଇଥିଲେ ।"

ସେ ଅତ୍ୟନ୍ତ ଧର୍ମପରାୟଣ ଥିଲେ । ପ୍ରତ୍ୟହ ଦେବାର୍ଚ୍ଚନ ପରେହିଁ ଭୋଜନ କରୁଥିଲେ । ରାଜବାଟୀରେ ପ୍ରତିଦିନ ସନ୍ଧ୍ୟାବେଳେ ପଣ୍ଡିତ ତଥା ବିଶିଷ୍ଟ ଲୋକଙ୍କ ଉପସ୍ଥିତିରେ ପୁରାଣ ପାଠ ଓ ଶାସ୍ତ୍ରାଳାପ ହେଉଥିଲା । ଶାସନ ବ୍ରାହ୍ମଣମାନେ ବ୍ରାହ୍ମଣ କର୍ମରେ ଯେପରି ଲିପ୍ତ ରହିବେ ସେହି ବିଷୟରେ ଆଲୋଚନା କରି ତା'ର ବ୍ୟବସ୍ଥା କରୁଥିଲେ । ପ୍ରତି ଶାସନ ଓ ରାଜ୍ୟର ଅନ୍ୟାନ୍ୟ ମଠ ମନ୍ଦିରମାନଙ୍କରେ ବିଧିମୂତାବକ ପୂଜାପର୍ବ ଓ ଯାନି-ଯାତ୍ରା ପାଳନ କରାଯାଉଛି କି ନାହିଁ ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଉଥିଲେ । ପ୍ରତି କାର୍ତ୍ତିକ, ମାଘ ଓ ବୈଶାଖ ସୋମବାର ଓ ପୂର୍ଣ୍ଣିମୀରେ ଅଷ୍ଟଶମ୍ଭୁ ଦର୍ଶନ କରୁଥିଲେ ଓ ନିଜ ମୁକ୍ତେଶ୍ୱର ଶମ୍ଭୁପୀଠରେ ରୁଦ୍ରାଭିଷେକ କରୁଥିଲେ ।

ଆଷାଢ଼ମାସରେ ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା, ବୈଶାଖମାସରେ ଚନ୍ଦନଯାତ୍ରା, ଆଶ୍ୱିନରେ ଦଶହରା ପର୍ବଯାତ୍ରା ଦୋଳପୂର୍ଣ୍ଣିମୀ ପୂର୍ବଦିନ ଅଗ୍ନ୍ୟୁତ୍ସବ, ମୁକ୍ତେଶ୍ୱରଙ୍କ ପୀଠରେ ଶିବରାତ୍ରୀଦିନ ଶ୍ରୀ ହରିହର ଭେଟ ଯାତ୍ରା ଋଷିକୁଲ୍ୟାନଦୀର ଉତ୍ତର ବାଙ୍କରେ ଶ୍ରୀ ଚନ୍ଦ୍ରକଳେଶ୍ୱରଙ୍କ ଅନତି ଦୂରରେ ବାରୁଣୀ ଉତ୍ସବ ଯାତ୍ରା ମହା ସମାରୋହରେ ପାଳନ କରିବାର ବ୍ୟବସ୍ଥା କରିଥିଲେ । ସେ ଶୀତଳଷଷ୍ଠୀ ଓ ଦୋଳପୂର୍ଣ୍ଣିମୀ ଯାତ୍ରାଉତ୍ସବରେ ଦେବମିଳନ କରାଇ ସେଥିରେ ଯେଉଁ ଗ୍ରାମର 'ହାବେଳୀବାଣ' ଭଲହେଉଥିଲା ତାଙ୍କୁ ପୁରସ୍କାର ଦେଉଥିଲେ । ଫଳରେ ନାନାପ୍ରକାର କୌଶଳ ଖଞ୍ଜି ବାଣଯାତ୍ରାକୁ ଅଧିକ ମନୋରମ କରିବା ଚେଷ୍ଟା ହେଉଥିଲା । ଏହି ଯାତ୍ରା ସମୟରେ ଧରାକୋଟରେ ପ୍ରଚଳିତ ପ୍ରହଲ୍ଲାଦ ନାଟକ ରାମଲୀଳା ଓ ରାଧାପ୍ରେମଲୀଳା ନାଟକ ପରିବେଷଣ କରାଯାଉଥିଲା ।

ସେ ନିଜ ପତ୍ନୀ ଦେବୀଙ୍କ ନାମରେ ଚେରମାରିଆ ନିକଟରେ ଏକ ବ୍ରାହ୍ମଣଶାସନ ଦାନ କରି 'ପାର୍ବତୀପୁର' ନାମରେ ନାମିତ କରିଥିଲେ । କିନ୍ତୁ

କେତେକ ଅନିବାର୍ଯ୍ୟ କାରଣରୁ ଦାନଗ୍ରହୀତାମାନେ ସେଠାରୁ ବାସନ୍ତ ଅନ୍ୟତ୍ର ଘୁଞ୍ଚାଇ ଦେଇଥିଲେ ।

ସେ ନିଜେ ଗୌଡ଼ୀୟ ବୈଷ୍ଣବ ମତାବଲମ୍ବୀ ଥିଲେହେଁ ସବୁମତ ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ । ଧରାକୋଟ ମହନ୍ତଗାଦି ହୋଇଥିବା ଦୃଷ୍ଟିରୁ ଯାନିଯାତ୍ରା ପ୍ରଭୃତିକୁ ନିଜେକଲେ ସେ ସର୍ବପ୍ରଥମେ ବଡ଼ବଡ଼ ମହନ୍ତ ଅଯୋଧ୍ୟାରେ ଦାସ ମହାରାଜାଙ୍କୁ ଆଗରେ ସମ୍ମାନିତ କରି ଯାତ୍ରାକରୁଥିଲେ । ଧରାକୋଟଗଡ଼ରେ ବିଭିନ୍ନ ସମ୍ପ୍ରଦାୟର ୧୩ ଗୋଟି ମଠ ବହୁକାଳରୁ ଥିଲା । ସେଥିରୁ ଗୋଟିଏ ଅବଧୂତ ମଠ ( ସଙ୍ଗମଠ ) କୁ ବାଦଦେଲେ ଅବଶିଷ୍ଟ ୧୨ ଗୋଟି ମଠ ଗୌଡ଼ୀୟ ଓ ରାମାନୁଜ ସମ୍ପ୍ରଦାୟର ଅଟେ । ରାଜାଙ୍କ ସୁଶାସନ ଓ ଆର୍ଥିକ ସହାୟତାରେ ମଠ ଗୁଡ଼ିକରେ ପ୍ରଚୁର ଭୋଗ ରାଗର ବ୍ୟବସ୍ଥା କରାଗଲା । ପ୍ରତିଦିନ ବହୁ ଦୁଃଖୀ, ରଙ୍କି ଓ ଗରୀବ ଲୋକମାନେ ମଠରୁ ପ୍ରସାଦ ପାଉଥିଲେ । ରାଜ୍ୟରେ ଥିବା ମନ୍ଦିରଗୁଡ଼ିକର ନୀତିକାନ୍ତି ନିମନ୍ତେ ବିସ୍ତୃତ ଜମିଦାନ କରି ପୁରାତନ ମନ୍ଦିରଗୁଡ଼ିକର ଜୀର୍ଣ୍ଣସଂସ୍କାର କରିଥିଲେ । ଧରାକୋଟ ଦୁର୍ଗରେ ଅବସ୍ଥିତ ଜଗନ୍ନାଥ ମନ୍ଦିରର ଜଗନ୍-ମୋହନ, ମୁକ୍ତିଶାଳୀ, ସିଂହଦ୍ୱାର, ବେଷଇର ସମେତ ମନ୍ଦିର ଚାରିପଟେ ସୁଦୃଢ଼ ପ୍ରାଚୀର ନିର୍ମାଣ କରିଥିଲେ । ଏହା ବ୍ୟତିତ ସେ ରଥଯାତ୍ରା ଉଦ୍ଦେଶ୍ୟରେ ଏକ ବିରାଟ ଆଡ଼ପ ମଣ୍ଡପ ମଧ୍ୟ ନିର୍ମାଣ କରିଥିଲେ ।

ରାଜା ରଘୁନାଥ ସିଂହଙ୍କ ଦ୍ୱାରା ଆରମ୍ଭ କରା ଯାଇଥିବା ଜଗନ୍ନାଥ ମନ୍ଦିରର ନିର୍ମାଣକାମ ମଦନମୋହନ ସିଂହ ପରିସମାପ୍ତି କରିଥିବା ବିଷୟ ଜଗନ୍ନାଥ ମନ୍ଦିରରେ ଉତ୍କୀର୍ଣ୍ଣ ହୋଇଥିବା ଏକ ମର୍ମର ପ୍ରସ୍ତରରୁ ଜଣାଯାଏ ।

ଶ୍ରୀମନ୍ ଜଗନ୍ନାଥ ପଦଧ୍ୟାନ ସାର୍ଥ ମନୋରଥଃ
ଅନାଥ ନାଥ, ଶ୍ରୀ ରଘୁନାଥ ସିଂହ ଦେବାଖ୍ୟଃ

ଧର୍ମକୋଟାଧିନାଥ ପ୍ରଥମତଃ ଶ୍ରୀ ଜଗଦୀଶସ୍ୟ
ଜଗନ୍ମୋହନ ମୁକ୍ତଶାଳୀ ନାମକ ପ୍ରାସାଦ ଦ୍ୱୟଂ
ପୀଠାନ୍ତମ୍ ନିର୍ମାପ୍ୟ ବୈକୁଣ୍ଠାବାସ ମକରୋତ୍

ତଦନନ୍ତରମ୍ ସ୍ୱରସୁନ୍ଦରଃ ଭକ୍ତଧୁରନ୍ଧରଃ ଶ୍ରୀ ବ୍ରଜସୁନ୍ଦର ସିଂହ ଦେବାଭିଦଃ ନୃପ ଶେଖରଃ କଞ୍ଜବଦ୍‌ଧାପ୍ୟା ମରପୁର ମଗଚ୍ଛତ୍ । ତଦନୁ ତତ୍ ସୂନୁଃ ସ୍ୱନରଦରହରଃ ପରନରଦରକରଃ ଶରଦ୍ରାକାଶ ଶଶଧର ଭାସୁର ଯଶଃ ପ୍ରସରଃ ପ୍ରଣପାଳିତ ଜନକରଃ ଭଗବଦ୍ଭଜନ - ପରତନ୍ତ୍ର ହୃଦୟଃ – ଶ୍ରୀଶ୍ରୀଶ୍ରୀ ମଦନମୋହନ ସିଂହ ଦେଓ ବରବରୋ ରାଜା ସାଦରଃ ସଗୋପୁର ପ୍ରାଚୀର ମେତତ୍ ପ୍ରସାଦ ଦ୍ୱୟଂ ଶ୍ରୀମତ୍ ଶାଳୀବାହନ ଶକ ଭୂପସ୍ୟ ଷଟ୍‌ତ୍ରିଂଶୋତ୍ତରଷ୍ଟା ଦଶଶତ ପରିମିତେଽବ୍ଦେ ଏବଂ ଚତୁର୍ଦ୍ଧଶୋତ୍ତରାନବିଂଶତ ଖ୍ରୀଷ୍ଟାବ୍ଦେ ମହାରଣା ଭୂଷଣୋପାଧିକ ଶିଳ୍ପୀନା କେଳେବେଳ ପରିପୂର୍ଣ୍ଣଂ କାରୟାଂ ଚକାର ।

ଏହି ତୁଂଗ ମନ୍ଦିରର ଉଚ୍ଚତା ୭୦ ଫୁଟ । ଏହି ମନ୍ଦିରଟି ବ୍ରାହ୍ମଣ-ଜାଗସ୍ୱ ଅଟେ । ବିମାନ ଦେଉଳଟି କେବଳ ରାଜରାଣୀପ୍ରା ନାଳିଆ କୁଣ୍ଡାପଥରରେ ନିର୍ମିତ ହୋଇଛି । ମନ୍ଦିରର ପଥରଗୁଡ଼ିକ ଦୃଢ଼ଭାବରେ ଯୋଡିରଖିବା ପାଇଁ ଲୁହାଦଣ୍ଡମାନ ବ୍ୟବହାର କରାଯାଇଛି । ଚୂନର ବ୍ୟବହାର ଆଦୌ ହୋଇନାହିଁ କହିଲେ ଚଳେ । ବିମାନ ମନ୍ଦିରକୁ ଛାଡ଼ି ଅନ୍ୟ ଦେଉଳଗୁଡ଼ିକର ଭିତର ପଟ କେବଳ ପଲସ୍ତର ହୋଇଛି । ମନ୍ଦିର ଗାତ୍ରରେ ବିଭିନ୍ନ କାରୁକାର୍ଯ୍ୟ ଖୋଦିତ ମୂର୍ତ୍ତି ଓ ଚିହ୍ନ ଦେଖାଯାଏ । ମନ୍ଦିରର କାଷ୍ଠନିର୍ମିତ ବିରାଟ କବାଟଗୁଡ଼ିକ ସୂକ୍ଷ୍ମ କାରୁକାର୍ଯ୍ୟରେ ବିମଣ୍ଡିତ ହୋଇ ଦର୍ଶକମାନଙ୍କ ଦୃଷ୍ଟି ଆକର୍ଷଣ କରୁଅଛି । ଏହି ସର୍ବଘଣ୍ଟା ମନ୍ଦିରଟି ୪୯ଗୋଟି କୁଞ୍ଜରେ ବିମଣ୍ଡିତ ହୋଇ ଶିଳ୍ପୀର ବିଚକ୍ଷଣ ନିର୍ମାଣ କୌଶଳ, ସୌନ୍ଦର୍ଯ୍ୟାନୁ-

ଭବ ଶକ୍ତ ଓ ହାତ ସଫାଇର ଦକ୍ଷତା ପ୍ରକାଶ କରୁଅଛୁ । ଏହି ମନ୍ଦିରର ସିଂହଦ୍ୱାର ନିକଟସ୍ଥ ଦେଉଳରେ ଏକ ପଞ୍ଚମୁଣ୍ଡ ଓ ଦଶଭୂଜ ବିଶିଷ୍ଟ ଏକ ବିଶାଳ ହନୁମାନ ମୂର୍ତ୍ତି ଶୋଭାପାଉଛୁ ।

ଏତଦ୍ ବ୍ୟତୀତ ସେ ଏକ ବିରାଟ, ସୁସଜ୍ଜିତ, ସୁଦୃଢ଼ ରାଜପ୍ରାସାଦ ନିର୍ମାଣ କରିଥିଲେ । ସୌନ୍ଦର୍ଯ୍ୟ ପିପାସୁ ମଦନମୋହନଙ୍କୁ ଋଷିକୂଲ୍ୟାର ଦକ୍ଷିଣ ତଟରେ ଅବସ୍ଥିତ ଦାମୋଦରପଲ୍ଲୀର ପ୍ରାକୃତିକ ପରିବେଶ ଓ ଶୋଭା ସମ୍ପଦରେ ଅଭିଭୂତ ହୋଇ ସେଠାରେ ଗ୍ରିଷ୍ମ ଋତୁରେ ରହିବା ପାଇଁ ଏକ ମନୋରମ ପ୍ରାସାଦ ନିର୍ମାଣକରି ଆଧୁନିକ ସାଜସଜ୍ଜାରେ ଟେଲିଫୋନ୍ ସଂଯୋଗ ରଖାଯାଇଥିଲା ।

ସେ ପ୍ରତିଦିନ ପ୍ରାତଃ କାଳରେ ଦଣ୍ଡ, ଆସନ, କୁସ୍ତି କସରତ ଅଭ୍ୟାସ କରୁଥିବା ହେତୁ ମୃତ୍ୟୁ ପର୍ଯ୍ୟନ୍ତ ନିଜର ବଳିଷ୍ଠ ସ୍ୱାସ୍ଥ୍ୟ ଓ ଶରୀରର ସୌନ୍ଦର୍ଯ୍ୟକୁ ବଜାୟ ରଖି ପାରିଥିଲେ । ସେ ଅତ୍ୟନ୍ତ ଶିକାର ପ୍ରିୟଥିଲେ । ସେ ସମୟରେ ଧରାକୋଟ ରାଜ୍ୟ ଘନ ଜଙ୍ଗଲରେ ଆବୃତଥିଲା । ବହୁ ହିଂସ୍ର-ଜନ୍ତୁ ଓ ମହାବଳ ବ୍ୟାଘ୍ର ମାରି ପ୍ରଜାଙ୍କୁ ଅଭୟ ଦେବାରେ ତାଙ୍କର ଦକ୍ଷତା ସର୍ବଜନ ବିଦିତ । ରାଜାଙ୍କ ନିର୍ଭୀକତା, ଧର୍ମାନୁଶିତା ସୁଶାସନ ଓ ଶିକାର କୌଶଳକୁ ଲକ୍ଷ୍ୟକରି ସ୍ୱର୍ଗୀୟ ଚିନ୍ତାମଣି ମହାନ୍ତ ଯେଉଁ ମତ ତାଙ୍କ ସମ୍ବନ୍ଧରେ ପଦ୍ୟାକାରରେ ପ୍ରକାଶ କରିଛନ୍ତି ସେଥିରୁ ଦୁଇପଦ ଉଲ୍ଲେଖ କରାଗଲା ।

ବୀର ଶ୍ରୀ ମଦନମୋହନ ସିଂହ ଦେବରାଜନ
ଧର୍ମବ୍ୟକ୍ତ ଧରି କରନ୍ତ ସେହି ରାଜ୍ୟ ପାଳନ
କ୍ଷତ୍ରୀୟ ସୁଲଭ ବୀରତ୍ୱ ବର୍ଣ୍ଣିପାରିବ କେହି
ହସ୍ତୀ ପୃଷ୍ଠୁ ହସ୍ତୀ ପୃଷ୍ଠକୁ ରାଏ ପଡ଼ନ୍ତି ଡ଼େଇଁ

ଘୋଷଣ ଶାର୍ଦ୍ଦୂଳ ମର୍ଦ୍ଦନ ସେହ୍ନ ନୃପ ଶାର୍ଦ୍ଦୂଳ
ଅଭ୍ୟର୍ଥ ସନ୍ଧାନେ କେସର ଆନ ମୃଗାସ୍ପ କୁଳ

ସେ ଅତ୍ୟନ୍ତ ମିଷ୍ଟାଳାପୀ ଓ ବନ୍ଧୁବତ୍ସଳ ଥିଲେ । ସେ ଏକ ସଙ୍କଟ ଜନକ କାଳରେ ଧବଳକୋଟର ଶାସନଭାର ଗ୍ରହଣକରି କେବଳ ଶାସନରେ ସ୍ଥିରତା ଆଣିଥିଲେ ତାହାନୁହେ ରାଜ୍ୟର ଲୁପ୍ତ ହେଉଥିବା ସଂସ୍କୃତିକୁ ପୁନରୁଦ୍ଧାର କରିବାଲାଗି ଆପ୍ରାଣ ଉଦ୍ୟମ କରିଥିଲେ । ତାଙ୍କର ପ୍ରଜାବତ୍ସଳ ଓ ସ୍ୱଦେଶାନୁରାଗୀତାରେ ପ୍ରୀତହୋଇ ଇଂରେଜ ସରକାର ୧୯୧୧ ମସିହାରେ ପଞ୍ଚମଜର୍ଜଙ୍କ ଭାରତ ଆଗମନ ସମୟରେ ରାଜାବାହାଦୁର ପଦବୀରେ ଭୂଷିତ କରିଥିଲେ । ରାଜାଙ୍କ ମହନୀୟ ଗୁଣରେ ମୁଗ୍ଧ ହୋଇ ସ୍ୱର୍ଗୀୟ ତାରିଣୀ-ଚରଣ ରଥ ତାଙ୍କ 'ଋଷିକୁଲ୍ୟା' କ୍ଷୁଦ୍ର କାବ୍ୟରେ ଉଲ୍ଲେଖ କରିଥିବା କେତୋଟି ପଦ ଉଦ୍ଧାର କରାଗଲା ।

ଦୟା, ଧର୍ମ, ନ୍ୟାୟ ଗୁଣେ ଅଳଂକୃତ
ପାଣ୍ଡିତ୍ୟ ସୌଜନ୍ୟ ମୋହୁଅଛନ୍ତି ଚିତ୍ତ
ଗଞ୍ଜାମେ ଆଦର୍ଶ ନୃପତି ଜାଣିଣ
ମାନ୍ୟକରିଛନ୍ତି ବ୍ରିଟିଶ ରାଜନ
କରିନାହିଁ ତାଙ୍କୁ ଉପାଧି ଭୂଷିତ
ହୋଇଛି ଉପାଧି ନିଜେ ବିଭୂଷିତ
ପୋଷିଅଛି ଆଶା ସରବ ଉତ୍କଳ
କରିବେ ରାଜନ ତା ମୁଖ ଉଜ୍ଜ୍ୱଳ ।

ଉତ୍କଳର ଜଣେ ଖ୍ୟାତନାମା ରାଜା, ଉତ୍କଳ ପ୍ରଦେଶ ଗଠନର ଜଣେ ବଶିଷ୍ଟ ଉଦ୍ୟୋକ୍ତା, ବିଭିନ୍ନ ଶିକ୍ଷାନୁଷ୍ଠାନର ପ୍ରତିଷ୍ଠାତା, କଳା, ସାହିତ୍ୟ ଓ ସଂସ୍କୃତି ରକ୍ଷାର ଜାଗ୍ରତ ପ୍ରହରୀ ତଥା ସନାତନ ଧର୍ମରକ୍ଷା ଯୁଦ୍ଧର ଜଣେ

ସଂଗ୍ରାମ ରତ ସୈନିକ ତଥା ବିଭିନ୍ନ ଉନ୍ନତିକର କାର୍ଯ୍ୟରେ ବ୍ରତୀ ଓ ସହଯୋଗୀ ଥିବା ରାଜା ବାହାଦୁର ମଦନ ମୋହନ ସିଂହ ଦେଓଙ୍କର ସାର୍ଦ୍ଧ ୭୨ ବର୍ଷ ବୟସରେ ତା ୧୫-୩-୧୯୩୭ ମସିହାରେ ସ୍ୱର୍ଗାରୋହଣ ହୋଇଥିଲା ।

# ଗୋବିନ୍ଦ ରାୟଗୁରୁ

ବ୍ରାହ୍ମଣଗାଁର ନିବାସୀ ସ୍ୱର୍ଗୀୟ ହନୁମାନ ରାୟଗୁରୁଙ୍କ ପୁତ୍ର ଗୋବିନ୍ଦ ରାୟଗୁରୁ ପିତାଙ୍କପରି ସଂସ୍କୃତ ଓ ଓଡ଼ିଆରେ ଅସାଧାରଣ ପାଣ୍ଡିତ୍ୟଲାଭ କରିଥିଲେ । ଧରାକୋଟ ରାଜା ମଦନମୋହନ ସିଂହ ଦେଓଙ୍କ ଉତ୍ସାହବାରିଦ୍ୱାରା ଗୋବିନ୍ଦଙ୍କ କବିତା ଲତା ପଲ୍ଲବିତ ହୋଇଥିଲା । ଏଣୁ ସ୍ୱର୍ଗୀୟ ରାୟଗୁରୁ ତାଙ୍କର ପ୍ରାୟ ସମସ୍ତ କବିତା ଚମ୍ପୂ ଓ ନାଟକ ଗୁଣଗ୍ରାହୀ ରାଜା-ମଦନମୋହନ ସିଂହଙ୍କ ନାମରେ ଭଣିତା କରିଛନ୍ତି ।

ହନୁଙ୍କ ଏକମାତ୍ର ଆତ୍ମଜ ଗୋବିନ୍ଦ ୧୮୭୧ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ସ୍ମରଣ ଶକ୍ତି ଅତ୍ୟନ୍ତ ପ୍ରଖର ଥିଲା । ବାଲ୍ୟାବସ୍ଥାରେ 'ଚନ୍ଦ୍ରକର' ନାମକ ଜଣେ ପ୍ରସିଦ୍ଧ ସଂସ୍କୃତ ପଣ୍ଡିତ ତାଙ୍କର ଶିକ୍ଷାର ଦାୟିତ୍ୱ ବହନ କରିଥିଲେ । ତାଙ୍କଠାରୁ ସେ ସଂସ୍କୃତ କାବ୍ୟ, ନାଟକ ଓ ଅଳଂକାର ଶାସ୍ତ୍ରର ଶିକ୍ଷାଲାଭକରି ଅଗାଧ ପାଣ୍ଡିତ୍ୟ ଅର୍ଜ୍ଜନ କରିଥିଲେ । ସେ ଭୁବନେଶ୍ୱରୀ ମନ୍ତ୍ର ଉପାସନା କରି କବିତା ରଚନାରେ ନୈପୁଣ୍ୟ ଲଭ କରିଥିଲେ ।

ସର୍ବ ପ୍ରଥମେ ସେ ଧରାକୋଟ ରାଜା ମଦନମୋହନ ସିଂହ ଦେଓଙ୍କ ନାମରେ କେତେକ କବିତା ଲେଖି ଉପହାର ନେଇଥିଲେ । ରାଜା ସେଗୁଡ଼ିକ ପାଠକରି ଯଥୋପରୋନାସ୍ତି ଆନନ୍ଦ ଉପଲବ୍‌ଧି କରି ତାଙ୍କୁ ରାୟଗୁରୁ ଉପାଧି

ଦେବା ସଙ୍ଗେ ସଙ୍ଗେ ନିଜ ତାଲୁକାନ୍ତର୍ଗତ ପିତଳ ନିକଟସ୍ଥ ହରିପୁର ଓ ସିଦ୍ଧନଇ ଗ୍ରାମରେ ୧୮୯୯ ମସିହାରେ ବସ୍ତର ଜାଗୀର ଦାନ କରିଥିଲେ । ସେ "ଅଭିନବ ଚୌପଦୀରତ୍ନାକର", 'ଜଣାଣମାଳ', 'ବଦେଶାନୁଚିନ୍ତା-ଚିଟାଉ', ବୃନ୍ଦାବନଚନ୍ଦ୍ରାନନ୍ଦ ଚମ୍ପୂ, ପ୍ରହ୍ଲାଦ ନାଟକ ରଚନା କରିଥିଲେ । ବନାଶ୍ରୟରେ କବିତା, ବନିତା ଓ ଲତା ବର୍ଦ୍ଧିନ୍ତନାହିଁ—ଏହା ସର୍ବ ସମ୍ମତ କଥା । କବି ଧରାକୋଟ ରାଜାଙ୍କର ଉତ୍ସାହ ଓ ବଦାନ୍ୟତା ଯୋଗୁଁ ପ୍ରହ୍ଲାଦ ନାଟକ ରଚନା କରି ଓଡ଼ିଆ ନାଟ୍ୟସାହିତ୍ୟରେ ଏକ ନୂତନ ଦିଗନ୍ତ ସୃଷ୍ଟି କରିଛନ୍ତି । ଲୀଳା ବା ସୁଆଙ୍ଗ ଭଳି ନାଟକଟି ସଙ୍ଗୀତବହୁଳ ହୋଇଛି ଓ ମଝିରେ ମଝିରେ ସଂସ୍କୃତ ଶ୍ଳୋକମାନ ମଧ୍ୟ ଖଞ୍ଜାଯାଇଛି । ଗଦ୍ୟ ଓ ପଦ୍ୟର ଅପୂର୍ବ ମିଶ୍ରଣରେ ନାଟକଟି ବିଶେଷ ଚିତ୍ତାକର୍ଷକ ହୋଇପାରିଛି । ଏହାର ଅଧିକାଂଶ ରାଗ ଓ ସଙ୍ଗୀତ ବିଭିନ୍ନ ରାଗ ବା ତାଳରେ ଲେଖାଯାଇଛି । ଶହେବର୍ଷ ତଳର ସାମାଜିକ ଓ ରାଜନୀତିର ରୀତି, ନୀତି, ଗୃହଚଳଣି, ଆଚାର, ବ୍ୟବହାର ଓ ଢଙ୍ଗଢାଙ୍ଗର ବର୍ଣ୍ଣନା ଏଥିରେ ଦେଖିବାକୁ ମିଳେ । ଏହି ନାଟକରେ ଓଡ଼ିଆ ବ୍ୟତୀତ କେତେକ ହିନ୍ଦୁସ୍ଥାନୀ କବିତା ମଧ୍ୟ ସ୍ଥାନପାଇଛି । ନାଟକ ଆରମ୍ଭରେ କବି ନାଟକଟି ନିର୍ବିଘ୍ନରେ ମଞ୍ଚସ୍ଥ କରିବାପାଇଁ ଶ୍ରୀ ଗଣେଶଙ୍କୁ ବନ୍ଦନାକରି ସ୍ୱୀୟ ରାଜାଙ୍କ ନାମରେ ଭଣିତ କରିଛନ୍ତି ।

"ମୂଷିକ ଯାନଚର-ଷଡ଼ମୁଖ ସୋଦର-ମଦଘୂର୍ଣ୍ଣିତଲୋଚନ ଗଣବରହେ"
ଧରାକୋଟ ଈଶ୍ୱର-ମଦନମୋହନ ବୀର ନୃପତି ବନ୍ଦି ଭାଷିଲେ ଏହି ରହେ ।

ପ୍ରବାଦ ଅଛି ପ୍ରତିଭା ବିକାଶ ମାର୍ଗରେ ଦୈବୀର ବିଚିତ୍ର ବିଧାନରେ ନାନାପ୍ରକାର ପ୍ରତିବନ୍ଧକ ପଡ଼ିଥାଏ । କବିଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲା । ଏଣୁ ତାଙ୍କର ମାନସିକ ଶକ୍ତି ଓ ପ୍ରାଣରେ ଅବାଧ ସ୍ୱଚ୍ଛନ୍ଦ ଉଚ୍ଛ୍ୱସିତ ଗତି ଦାରିଦ୍ର୍ୟର ନିପୀଡ଼ନରେ ରୁଦ୍ଧହୋଇ ଯାଇଥିଲା । ତେଣୁ ସେ

ଅନ୍ୟାନ୍ୟ ରାଜ ଦରବାରର ମଧ୍ୟ ଅନୁଗ୍ରହ ପ୍ରାର୍ଥୀ ହୋଇଥିଲେ । ପରଶେଷରେ ସେ ରାଜା ମଦନମୋହନଙ୍କର ପୃଷ୍ଠପୋଷକତା ଲଭକରି ତାଙ୍କର ଅତୁଳମାସ୍ଥ କବ୍ୟକ ପ୍ରତିଭାର ସ୍ଫୁରଣ ପାଇଁ ସମର୍ଥ ହୋଇଥିଲେ । ନିଜର ଅନ୍ନକଷ୍ଟ ବାଧା ଦୂର କରିବା ପାଇଁ ସେ ରାଜାଙ୍କୁ କିପରି ପ୍ରାର୍ଥନା କରିଛନ୍ତି ଦେଖାଯାଉ ।

ସକଳ ପ୍ରତିଷ୍ଠା ଦେଇ ଆଜ୍ଞାକରିଅଛ ହୋଇ କାମକଳ୍ପତରୁ
ଆହେ ! ମହାରାଜ ଯାହା ମୋ ବାର୍ଷିକ ଶିଳହେଉ ଆଜ
ଅନ୍ନକଷ୍ଟରେ କୁଟୁମ୍ବ ହେବାର ତ୍ରସ୍ତେ ଛଡ଼ାଇ ଦିଅହେ ସୁନ୍ଦର ।

ଧରାକୋଟ ରାଜା ତାଙ୍କ ଗୁଣରେ ମୁଗ୍ଧ ହୋଇ ତାଙ୍କୁ ଦେବାନ କାର୍ଯ୍ୟରେ ନିଯୁକ୍ତ ଦେବାକୁ ମନସ୍ଥ କରିଥିଲେ । କିନ୍ତୁ ହଠାତ୍ ବସନ୍ତିକା ରୋଗରେ ଆକ୍ରାନ୍ତ ହୋଇ ୩୯ ବର୍ଷ ବୟସରେ ୧୯୦୧ ମସିହାରେ କବି ଅମରପୁରର ଯାତ୍ରୀହେଲେ । ସେ ପିତାଙ୍କ ପଦାନୁସରଣ ପୂର୍ବକ କଳିଙ୍ଗ ସାହିତ୍ୟକୁ ପିତାଙ୍କଠାରୁ ମଧ୍ୟ ଅଧିକ ପୁଷ୍କଳ ଭାବରେ ସମୃଦ୍ଧିମନ୍ତ କରି ଯାଇଛନ୍ତି । ସେ ପିତାଙ୍କ ପରି କେବଳ ଭକ୍ତି ରସରେ ଆବଦ୍ଧ ରହିନାହାନ୍ତି । ରସାଳ ଶୃଙ୍ଗାର କବିତା ମଧ୍ୟ ଲେଖିଛନ୍ତି । ତାଙ୍କର କବିତାରେ ଆଳଙ୍କାରି-କତା, ରସିକତା, ଭକ୍ତି ତନ୍ମୟତାର ଭାବ ଦେଖିବାକୁ ମିଳିବା ସଙ୍ଗେ ସଙ୍ଗେ ନିଜ ଅନ୍ନପୃଷ୍ଟରାଜାଙ୍କ ନିକଟରେ କୃତଜ୍ଞତାର ଦୃଷ୍ଟାନ୍ତମଧ୍ୟ ମିଳେ । 'ଅଭିନବ ଚୌପଦୀ ରତ୍ନାକର'ରୁ ଗୋଟିଏ ଉଦାହରଣ ଦିଆଗଲା ।

ଢ଼ଳ ଢ଼ଳ ବୃହିଁ ଲାଜେ ଝଟକ ହାସ ରମଣୀ
ଝାଳଲାପରି ମୋ ମନ କୁନ୍ଦନକୁ ବାଳକାବରି ବନ୍ଧାଣୀ (ପଦ)
କାଳକା ରମଣ ପରତାପକୁ ଗୋ ଡ଼ରହେବବୋଲି ଜାଣି
ଟାଳଦେବାକୁ ମୋ ଦୁଃଖ ଦ୍ରୁମ ମୂଳ ବଳି ସେ ନାଗରୀମଣି

ଭଲ ବୋଲେ ଗୀତେ ଧସ୍ତକୋଟ ଇନ୍ଦ୍ର ନଳକୁଳର ଅଗ୍ରଣୀ
ଶ୍ରୀ ମଦନମୋହନ ସିଂହ ନୃପରେ ହେବକ ସୁଦୟା ପୁଣି ।

ରାଜ ମଦନମୋହନ ପିତା ଓ ପୁତ୍ରଙ୍କ ସମସ୍ତ କାବ୍ୟକବତାକୁ ଏକତ୍ର କର "ରସ୍ଥଗୁରୁ ଗ୍ରନ୍ଥାବଳୀ"ନାମକରଣ କର ମୁଦ୍ରିତ ଆକାରରେ ପ୍ରକାଶ କର ରସ୍ଥଗୁରୁ କବଦ୍ୱସ୍ଥଙ୍କ ସ୍ମୃତିରକ୍ଷା କରିବା ପାଇଁ ଚେଷ୍ଟାକରିଥିଲେ । କନ୍ତୁ ତାଙ୍କର ଚେଷ୍ଟା ଫଳବତୀ ହେବାପୂର୍ବରୁ ରାଜାଙ୍କର ଦେହାନ୍ତ ହୋଇ-ଯାଇଥିଲ । କନ୍ତୁ ପରବର୍ତ୍ତୀ କାଳରେ ହନୁମାନଙ୍କ ଓ ରାଜାଙ୍କ ପ୍ରପୌତ୍ରମାନଙ୍କ ଅନୁକୂଲ୍ୟରେ ରସ୍ଥଗୁରୁ ଗ୍ରନ୍ଥାବଳୀ ଦୁଇଭାଗରେ ଆତ୍ମପ୍ରକାଶ କରିବାକୁ ସମର୍ଥହେଲ ।

# ଅନନ୍ତ ଦାସ କବିରତ୍ନ

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଗଞ୍ଜାମର ଚଙ୍ଗୋଉଲ୍ଲା ଋଷିକୂଲ୍ୟା ନଦୀର ଉତ୍ତର ତୀରବର୍ତ୍ତୀ ରାଜେନ୍ଦ୍ରପୁର ଶାସନରେ ଯେଉଁ କ୍ଷଣଜନ୍ମା କୃତି ସାହିତ୍ୟକମାନେ ଜନ୍ମଗ୍ରହଣ କର ଓଡ଼ିଆ ଓ ସଂସ୍କୃତ ସାହିତ୍ୟର ସମୃଦ୍ଧି କର ଯାଇଛନ୍ତି ସେମାନଙ୍କ ମଧ୍ୟରେ କବ ସ୍ୱର୍ଗୀୟ ଅନନ୍ତଦାସ କବିରତ୍ନଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । କବ ୧୮୪୯ ମସିହାରେ ଚନ୍ଦ୍ରମଣି ଦାସଙ୍କ ଔରସରେ ଜନ୍ମଗ୍ରହଣକରି ଅଠଷଠି ବର୍ଷ ଜୀବିତ ରହି ୧୯୧୭ ମସିହାରେ ଦେହତ୍ୟାଗ କରିଥିଲେ । ସେ ତାଙ୍କର ପ୍ରଗାଢ଼ ଚେଷ୍ଟା ଓ ସାଧନାଫଳରେ ଓଡ଼ିଆ ଓ ସଂସ୍କୃତ ଭାଷାରେ ଅସାଧାରଣ ବ୍ୟୁତ୍ପତ୍ତି ଲଭ କରିଥିଲେ । ସେ ରାଜା ମଦନମୋହନ ସିଂହ ଦେଓଙ୍କ ରାଜଦରବାରରେ ଜଣେ ଶ୍ରେଷ୍ଠ ପଣ୍ଡିତ ଥିଲେ । ରାଜା ତାଙ୍କ ପାଣ୍ଡିତ୍ୟ ଓ କବପ୍ରତିଭାରେ ମୁଗ୍ଧହୋଇ ତାଙ୍କୁ ୧୯୦୫ ମସିହାରେ କବିରତ୍ନ ଉପାଧିରେ ଭୂଷିତକରି

ସ୍ୱର୍ଣ୍ଣକୁଣ୍ଡଳ ପ୍ରଦାନ କରିଥିଲେ । ୧୯୦୫ ମସିହା ପୂର୍ବରୁ ରାଜେନ୍ଦ୍ରପୁରରେ ଅବସ୍ଥିତ ସଂସ୍କୃତ ପାଠଶାଳାକୁ ରାଜା ନିଜର ଜ୍ୟେଷ୍ଠପୁତ୍ର "ପାଟଦେଇ" ତଥା ପଟ୍ଟଦେବ ନାମରେ ନାମିତ କରି ପାଠଶାଳାର ସମସ୍ତ ବ୍ୟୟଭାର ବହନ କରି ନିଜପରିଚାଳନାଧୀନକୁ ନେଇଥିଲେ । ରାଜା ଅନନ୍ତ ଦାସଙ୍କୁ ଏହି ଟୋଲର ପ୍ରଧାନ ପଣ୍ଡିତ ରୂପେ ନିଯୁକ୍ତ ଦେଉଥିଲେ । ସେହି ଦିନଠାରୁ ଏହି ଶିକ୍ଷାକେନ୍ଦ୍ର ଅଦ୍ୟାପି ପ୍ରାଚ୍ୟଶିକ୍ଷାର ପ୍ରାଣକେନ୍ଦ୍ରରୂପେ ରହିଆସିଅଛି । କବି ଅନନ୍ତ ଦାସ ନିଷ୍ଠାପର ଆଚାର୍ଯ୍ୟଭାବରେ ଖ୍ୟାତି ଅର୍ଜ୍ଜନକରି ବହୁ ଛାତ୍ରଙ୍କର ଚରିତ୍ର ଗଠନକରି ଉପଯୁକ୍ତ ମଣିଷଭାବେ ସେମାନଙ୍କ ଜୀବନ ଗଠନକରି ଭାରତର ଆତ୍ମସ୍ୱରୂପ ସଂସ୍କୃତ ଭାଷା ଓ ସାହିତ୍ୟ ଶିକ୍ଷା ପ୍ରଦାନ କରିଥିଲେ । ଶିକ୍ଷକତା କରିବା ସଙ୍ଗେ ସଙ୍ଗେ ସେ ବହୁ ସୁମଧୁର, ସରସ ପଦ ବିନ୍ୟାସ ଯୁକ୍ତ, ଭକ୍ତି ରସାଣିତ ବହୁ ସ୍ତୁତି, ଜଣାଣ, ଭଜନ, ଚଉତିଶା ଧରାକୋଟରେ ବିରାଜିତ ବହୁ ପ୍ରସିଦ୍ଧ ଦେବାଦେବୀଙ୍କ ଉଦ୍ଦେଶ୍ୟରେ ଓଡ଼ିଆ ଓ ସଂସ୍କୃତ ଭାଷାରେ ରଚନାକରି ଉଭୟ ସାହିତ୍ୟ ଭଣ୍ଡାରକୁ ଅମୂଲ୍ୟରତ୍ନ ଦାନକରି ଯାଇଛନ୍ତି ।

କବିଙ୍କ ଲିଖିତ ଓ ପ୍ରକାଶିତ ବହିମଧ୍ୟରେ 'ତାରିମାହାତ୍ମ୍ୟ', ଭଗବତୀ ଜଣାଣ ଓ ଜଣାଣ ମାଳ ଓଡିଶାର ଭକ୍ତି ଓ ଉପାସନା ସାହିତ୍ୟ-କ୍ଷେତ୍ରରେ ଉଚ୍ଚସ୍ଥାନ ଅଧିକାର କରିଅଛି । ତାରି ମାହାତ୍ମ୍ୟ ହେଉଛି କବିଙ୍କ ଅନବଦ୍ୟ ରଚନା । ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ନିକଟରେ ଅବସ୍ଥିତ ତାରତାରିଣୀ ପୀଠ ଓଡିଶାର ଏକ ପ୍ରଧାନ ଶାକ୍ତପୀଠ ରୂପେ ବହୁକାଳରୁ ଖ୍ୟାତିଲାଭ କରିଅଛି । କବି 'ତାରିମହାତ୍ମ୍ୟ' ନାମକ ଏକ ବହିରେ ନଗରାଜ ନନ୍ଦନୀ ଋଷିକୁଲ୍ୟା ନିକଟବର୍ତ୍ତୀ ପୂର୍ଣ୍ଣଗିରି ପୀଠରେ ବିରାଜମାନ ଜଗଦ୍ଧାତ୍ରୀ ତାରତାରିଣୀଙ୍କ ଏକ ସଂକ୍ଷିପ୍ତ ଇତିହାସ କାଳୀପୁରାଣାନ୍ତର୍ଗତ ତାରି ମାହାତ୍ମ୍ୟ ଓ

କମ୍ବଦନ୍ତୀର ଅବଲମ୍ବନରେ ଆଠଟି ଅଧ୍ୟାୟରେ କୃଷ୍ଣସିଂହ ବାଣୀରେ ରଚନା କରିଛନ୍ତି । ତାଙ୍କର କଳ୍ପନା ବିଳାସ ତାର ମହାତ୍ମ୍ୟକୁ ଏକ ସ୍ୱତନ୍ତ୍ର ରଚନା ରୂପେ ପ୍ରତିଷ୍ଠିତ କରିପାରିଛି ।

ଏହି ପୁରାଣଟି ଶ୍ରୀମଦ୍ ଭାଗବତପରି ଏକ ଷଟ୍ ସମ୍ବାଦ ଆଖ୍ୟା ସମ୍ବଳିତ ଅଟେ । ହରେ ଶିବ ପାର୍ବତୀଙ୍କ ପ୍ରଶ୍ନର ଉତ୍ତରରେ କହୁଛନ୍ତି ହେ ! ପାର୍ବତୀ ଏହି ପୀଠର ଇତିହାସ ଅତ୍ୟନ୍ତ ଗୋପନୀୟ । କିନ୍ତୁ ତୁମ୍ଭେ ମୋର ସହ ଧର୍ମିଣୀ ହୋଇଥିବା ହେତୁ ମୁଁ ତୁମକୁ ଏ ଗୁପ୍ତବିଷୟ କହୁଛି — ତୁମେ ଶୁଣ ।

ତାର ତାରିଣୀଙ୍କ ଆବିର୍ଭାବ ବିଷୟ ବିସ୍ତୃତଭାବରେ ଏଠାରେ ଆଲୋଚନା କରାନଯାଇ ଅତିଚମ୍ବକରେ ଉଲ୍ଲେଖ କରାଗଲା । ପବିତ୍ର ପୁରୁଷୋତ୍ତମ କ୍ଷେତ୍ରରେ ବିମଳାଙ୍କ ସେବା ପୂଜାରେ 'ବିଷ୍ଣୁଦାସ'ନାମକ ଜଣେ ବିପ୍ର ନିଯୁକ୍ତଥିଲେ । ସେ ଅପୁତ୍ରକ ଥିବାହେତୁ ନିଜଗୃହ ନିକଟରେ ଥିବା "ଭୂତନାଥ ସୋମେଶ୍ୱରଙ୍କ" ନିକଟରେ ପୁତ୍ର କାମନାକରି ଆକୁଳ ପ୍ରାର୍ଥନା-କଲେ । ପ୍ରଭୁଙ୍କ କୃପାରୁ ବିଷ୍ଣୁଦାସ ଏକ ପୁତ୍ରରତ୍ନ ଲାଭକରି ପୁତ୍ରନାମ 'ସୋମନାଥ' ରଖିଲେ । କିଛିଦିନପରେ ସୋମନାଥଙ୍କ ମାତାଙ୍କ ମୃତ୍ୟୁହେବା ହେତୁ ବିଷ୍ଣୁଦାସ 'କୁଟିଳାକ୍ଷୀ'ନାମକ ଏକ ସୁନ୍ଦରୀ କନ୍ୟାର ପାଣିଗ୍ରହଣକଲେ । ନିଜର ବିମାତା କୁଟିଳାକ୍ଷୀର ନିଷ୍ଠୁର ବ୍ୟବହାରରେ ଉତ୍ପୀଡ଼ିତ ହୋଇ ସୋମନାଥ ସନ୍ୟାସ ଦୀକ୍ଷା ଗ୍ରହଣକରି ଗୃହତ୍ୟାଗକଲେ । ଏଣେ କୁଟିଳାକ୍ଷୀ ସ୍ୱାମୀର ମୃତ୍ୟୁପରେ 'ରୂପାଜୀବା' ବ୍ୟବସାୟରେ ମାତିଲେ । ବହୁଦିନପରେ ସନ୍ୟାସ ସୋମନାଥ ଭିକ୍ଷାଟନ ଉଦ୍ଦେଶ୍ୟରେ ଗ୍ରାମତ୍ୟାଗୀ କୁଟିଳାକ୍ଷୀର ଦ୍ୱାର ନିକଟରେ ଉପସ୍ଥିତ ହେଲେ । ସୋମନାଥ ତାଙ୍କର ବିମାତାଙ୍କୁ ଚିହ୍ନିନପାରି ତାଙ୍କର ଅପରୂପ ସୌନ୍ଦର୍ଯ୍ୟରେ ମୁଗଧ ହୋଇ ତାଙ୍କ ସହିତ

ରତ୍ନକ୍ରୀଡ଼ାରେ ମାତିଲେ । କିନ୍ତୁ ପରେ ନିଜମାତାଙ୍କୁ ଚିହ୍ନିପାରି ଅନୁତାପା-ନଳରେ ଦଗ୍‌ଧହୋଇ ମାତୃହରଣ ଦୋଷରୁ ମୁକ୍ତିପାଇବା ଉଦ୍ଦେଶ୍ୟରେ ଉଜ୍ଜୟିନୀ ନଗରରେ ବିଜେ ହୋଇଥିବା "ମହାକାଳ ନାଥ" ମହାପ୍ରଭୁଙ୍କ ସ୍ୱପ୍ନାଦିଷ୍ଟ ପ୍ରକାରେ 'ରକ୍ତା' ନାମକ ଦେବୀଙ୍କୁ ପ୍ରାର୍ଥନାକଲେ । ରକ୍ତା ନାମକ ଦେବୀଙ୍କ ଦୁଇନୟନରୁ ତାରା ଓ ତାରଣୀ ଆବିର୍ଭୂତ ହେଲେ । ପ୍ରଥମା କନ୍ୟା ତାରା ନିଜ ଲଲାଟ ବହ୍ନି ନୟନରେ ସୋମନାଥଙ୍କୁ ଧ୍ୱଂସକଲେ । ଦ୍ୱିତୀୟା କନ୍ୟା କୌତୁକରେ ତାଙ୍କୁ ପୁନର୍ଜୀବନ ଦାନକଲେ ଓ କହିଲେ "ବର୍ତ୍ତମାନ ତୁମେ ମାତୃହରଣ ପାପରୁ ମୁକ୍ତିଲାଭ କରିଛ" ।

ରକ୍ତା ଦେବୀଙ୍କଠାରୁ କନ୍ୟା ଜାତ ବିଷୟ କବି ତାଙ୍କ ଗ୍ରନ୍ଥରେ କିପରି ଉଲ୍ଲେଖ କରିଛନ୍ତି ଦେଖାଯାଉ ।

ମଞ୍ଜୀର ମଞ୍ଜୁହାର କଙ୍କଣ କେୟୁର ଇତ୍ୟାଦି ଅଳଂକାର ଅତିସେ ମଞ୍ଜୁଳ
ଏପରି ଜନମାଇ ସେଠାରେ କନ୍ୟାଦୁଇ ରକ୍ତାଦେବୀଗଲେ ଅନ୍ତର୍ଦ୍ଧ୍ୟାନ ହୋଇ
ଏ ଉତ୍ତାରୁ ପ୍ରଥମା ଲଲାଟ ନୟନରେ ସୋମନାଥ ବିପ୍ରକୁ କ୍ଷିପ୍ରରେ ଦହିଦେଲେ
ବିସ୍ମୟ ହୋଇକରି ଦ୍ୱିତୀୟା ଭଗିନୀ ଜିଆଁଇଦେଲେ ତାକୁ କଉତୁକେ ପୁଣି ।

ଦେବାଦେବୀ ଋଷିକୁଲ୍ୟା ନଦୀତଟରେ ଅବସ୍ଥିତ ସତୀଙ୍କ ମେଦଦ୍ୱାରା ଗଠିତ ପୂର୍ଣ୍ଣଗିରି ପୀଠରେ ଅବସ୍ଥାନ କରି ଭକ୍ତମାନଙ୍କର ମନସ୍କାମନା ପୂର୍ଣ୍ଣକରି ଜଗତର ମଙ୍ଗଳ ସାଧନ କରିବାପାଇଁ ସୋମନାଥଙ୍କୁ କହିଲେ । ଏଣୁ ସୋମନାଥ ସେମାନଙ୍କୁ ସେହି ସ୍ଥାନକୁ ନେଇଯିବା ପାଇଁ ଦେବୀଦ୍ୱୟ ନିଜର ଅଭିଳାଷ ପ୍ରକାଶ କଲେ । ଦେବୀମାନେ କହିଲେ ଆମେ ଉକ୍ତ ପୀଠରେ ପୂଜା ପାଇବୁ ଓ ସୋମନାଥ ପୂର୍ଣ୍ଣଗିରି ପୀଠର ପାଦଦେଶରେ ଲିଙ୍ଗରୂପ ଧାରଣ କରି ସୋମେଶ୍ୱର ନାମରେ ପୂଜାପାଇବେ । ଏହି ଉକ୍ତି ପ୍ରକାରେ

ସୋମେଶ୍ୱର ଲିଙ୍ଗମୂର୍ତ୍ତି ଧାରଣକରି ପୂର୍ଣ୍ଣଗିରି ପାହାଡ଼ ଓ ଋଷିକୁଲ୍ୟା ନଦୀର ଦକ୍ଷିଣ ତଟରେ ରହି ପୂଜାପାଇଲେ ଓ ତାରା ଓତାରିଣୀ ସୁନ୍ଦରୀ କିଶୋରୀରୂପ ଧାରଣ କରି ହରି ଓ ମାଳାଦାମ ନାମରେ ଜଣେ ଗୁଣବାନ ଓ ଭକ୍ତ ସ୍ୱପିଠୀ ଗୃହରେ ବାସକଲେ । ସ୍ୱପିଠୀକୁଳପଣ୍ଡ ଦେବୀଙ୍କ କୃପାରୁ ଏକ ପୁତ୍ରସନ୍ତାନ ଲଭକଲେ । ଏହି ପୁତ୍ରସନ୍ତାନର ନାମ ଗୌରଚନ୍ଦ୍ର । ଗୌରଚନ୍ଦ୍ରର ଲାଳନ-ପାଳନ ଓ ଶିକ୍ଷାରଭାର ଦେବୀଦ୍ୱୟ ଗ୍ରହଣକଲେ । କିଛିଦିନପରେ ନିକଟରେ ଥିବା ରାଜା କିଶୋରଚନ୍ଦ୍ର ତାରା ଓ ତାରିଣୀଙ୍କ ଅପରୂପ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ସେମାନଙ୍କୁ ବିବାହ କରିବାପାଇଁ ପାତ୍ର ଓ ମନ୍ତ୍ରୀସହ ସ୍ୱପିଠୀ ଗୃହରେ ପ୍ରବେଶକଲେ । ତାରା ରାଜାଙ୍କ ଏହି ପାପାଚରଣ ମନୋଭାବକୁ ପସନ୍ଦନକରି ତାଙ୍କୁ କହିଲେ "ଆମେ ପ୍ରକୃତରେ ନରମାଂସଧାରୀ ମାନବୀ ନୋହୁ । ମୁଁ ହେଉଛି 'ଉଗ୍ରତାରା' ଓ ମୋର କନିଷ୍ଠା ଭଉଣୀ ହେଉଛି 'ତାରିଣୀ' " । ସେ ରାଜାଙ୍କୁ ଅଭିଶାପଦେଇ କହିଲେ ତୁମର ଏ ଦୁଷ୍କାର୍ଯ୍ୟ ଯୋଗୁଁ ଅଚିରେ ତୁମର ମୃତ୍ୟୁହେବ ଓ ତୁମର ଉପଦେଷ୍ଟା ମନ୍ତ୍ରୀ କୁଷ୍ଠରୋଗରେ ଆକ୍ରାନ୍ତ ହୋଇ ଘୋର ଯନ୍ତ୍ରଣା ଭୋଗକରିବେ । ଭକ୍ତର ମନବାଞ୍ଛା ପୂରଣକରିବା ପାଇଁ କନ୍ୟାରୂପରେ କୁଳପଣ୍ଡଙ୍କ ଗୃହରେ ଲାଳିତ-ପାଳିତ ହେଉଥିଲୁ । ଆମେ ନିକଟସ୍ଥ ପୂର୍ଣ୍ଣଗିରିରେ ବିଜେକରିବୁ ଓ ଏହି ସ୍ୱପିଠୀ ଓ ଏହାଙ୍କର ବଂଶଧରମାନେ ଆମର ପୂଜା ଓ ଆରାଧନାକରି ସୁଖରେ କାଳଯାପନ କରିବେ" । ଏହା କହି ଦେବୀଦ୍ୱୟ ସେଠାରୁ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ । ରାଜା ଋଷିକୁଲ୍ୟା ଗଣ୍ଡଜଳରେ ବୁଡ଼ି ପ୍ରାଣ ବିସର୍ଜ୍ଜନ କଲେ । ପୁଣି ମନ୍ତ୍ରୀ କୁଷ୍ଠରୋଗରେ ପୀଡ଼ିତ ହୋଇ ଘୋର ଯନ୍ତ୍ରଣା ପାଇଲେ ।

ଦେବୀଙ୍କ ଅନ୍ତର୍ଦ୍ଧାନପରେ କୁଳପଣ୍ଡ, ତାର ସ୍ତ୍ରୀ ଗୌରୀ ଓ ପୁତ୍ର ଗୌରଚନ୍ଦ୍ର ଦୁଃଖରେ ଚିନ୍ତିତ ହୋଇ ପଡ଼ିଲେ । ଦିନେ ରାତ୍ରରେ ସ୍ୱପ୍ନାଦିଷ୍ଟ ପ୍ରକାରେ ପୂର୍ଣ୍ଣଗିରିରେ ଅବସ୍ଥିତ ଏକ ବିଲ୍ୱବୃକ୍ଷସ୍ଥ ମୂଳେ ବିଗ୍ରହିତରେ

ଉପବିଷ୍ଟ ହୋଇଥିବା ଦେବୀଦ୍ୱୟଙ୍କ ଦର୍ଶନ ଲାଭକରି ପୂଜା ଓ ଉପାସନାରେ ସେମାନଙ୍କୁ ସନ୍ତୁଷ୍ଟ କଲେ । କଚିଦ୍ଦିନ ପରେ ମନ୍ତ୍ରୀ ଏହି ଦେବୀଙ୍କୁ ଉପାସନାକରି କୁଷ୍ଠରୋଗରୁ ଆରୋଗ୍ୟ ଲାଭକଲେ ।

ଏହି ପୌରାଣିକ ଓ କମ୍ବଦନ୍ତୀ ମୂଳକ ଉପାଖ୍ୟାନରେ ପବିତ୍ର ପୁରୁଷୋତ୍ତମ କ୍ଷେତ୍ର ସୂତ ମହର୍ଷିଙ୍କ ଆଶ୍ରମ, ବସନ୍ତ ଋତୁ ବର୍ଣ୍ଣନା, ମହାକାଳ-ନାଥ, ରକ୍ତା ଦେବୀ ଓ ତାରା ତାରିଣୀଙ୍କ ବହୁ ସ୍ତୁତି ଓ ସ୍ତୋତ୍ର କବି ଅତ୍ୟନ୍ତ ସରଳ ସୁନ୍ଦର ଭାଷାରେ ରଚନାକରି ଭକ୍ତିକ ଜନତାର ହୃଦୟକୁ ଭକ୍ତିରସରେ ଦ୍ରବୀଭୂତ କରିବାକୁ ଚେଷ୍ଟା କରିଛନ୍ତି । ଏହି ଗ୍ରନ୍ଥରେ ସୂତ ମହର୍ଷିଙ୍କ ପୋଷାକ ବର୍ଣ୍ଣନା କପରି କରାଯାଇଛି ତା'ର ଦୁଇପଦ ଏଠାରେ ଉଲ୍ଲେଖ କରାଗଲା ।

ବସିଥିଲେ ଆସନେ ଶରଦଚନ୍ଦ୍ରାନନ  ପିନ୍ଧିଥିଲେ ରୁନ୍ଧ ବକଳ ବସନ
ଜଟା ମଣ୍ଡଳରେ ମସ୍ତକ ମଣ୍ଡନ  ଚଣ୍ଡଭାନୁ ମଣ୍ଡନ ତେଜରେ ଗଞ୍ଜନ

ତପୋବନ ବର୍ଣ୍ଣାରୁ ଦୁଇପଦ —

ହୋମଧୂମ ବାସନା ଚହଟି ସବୁଆଡ଼େ  ଇତର ବାସନାକୁ ସନ୍ତତେ ଘଉଡ଼େ
ଶୁକ ଶାରୀମାନେ ଉଚ୍ଚରି ଚାରିବେଦ  ବୃକ୍ଷଡାଳେ ଖେଳନ୍ତି ହୋଇଣ ପ୍ରମୋଦ

ଏହି ଗ୍ରନ୍ଥରେ ଦେବୀଙ୍କ ବର୍ଣ୍ଣନା ବିଭବରେ ମୁଖ୍ୟତଃ ଶାକ୍ତପଦା-ବଳୀ ଗୁଡ଼ିକ ଅନ୍ତର୍ଗତ ହୋଇଥିବା ଦେଖାଯାଏ । ବିଲ୍ୱଖନନ ପରେ ତାରା ତାରିଣୀଙ୍କୁ ଗୌରଚନ୍ଦ୍ର ଭବ ବହ୍ନିକ ଭକ୍ତିଗଦ୍‌ଗଦ୍‌ ଚିତ୍ତରେ ତାଙ୍କର ଶରଣାପନ୍ନ ହୋଇ ଯେଉଁ ସ୍ତୁତି କରିଛନ୍ତି ତା'ର ଚାରିଗୋଟି ପଦ ଦିଆଗଲା ।

ଯାହାଙ୍କର ପଦକୁ ନଜାଣନ୍ତି ଦେବେ
ତାହାଙ୍କୁ କପଟେ ମୁଁ କରିବି ସ୍ତୁତି ଏବେ
ତଥାପି ବଳୁଅଛି ତହିଁରେ ମୋର ମନ
ସେ ତାରିଣୀ ମୋହର ହୁଅନ୍ତୁ ଶରଣ
ବ୍ରହ୍ମା ବିଷ୍ଣୁ ବିଳାସ ମଣ୍ଡଳ ମଣିରେ
ଯାହାର ପାଦପଦ୍ମ ସୁନ୍ଦର ସବୁବେଳେ
ପୂର୍ବଗିରି ଶିଖର ଉପରେ ଯାର ସ୍ଥାନ
ସେ ତାରିଣୀ ମୋହର ହୁଅନ୍ତୁ ଶରଣ
ଯେ ପୁଣି ପିତୃବନେ କରନ୍ତି ବିହରଣ
ବିଶ୍ବଜନ ପାଳନ ଈଶ୍ବର କାରଣ
ହେଳାରେ କଲେ ଯେ ଚଣ୍ଡ ବିନାଶନ
ସେ ତାରିଣୀ ମୋହର ହୁଅନ୍ତୁ ଶରଣ
କୁନ୍ଦ ବୃନ୍ଦ ସୁନ୍ଦର ମନ୍ଦହାସେ ଯେହି
ଭକତ ସନ୍ଦୋହଙ୍କୁ ମନ୍ଦେ ଆଶ୍ବାସଇ
କଳଙ୍କର କଳଯା ମଣ୍ଡଳ ମଣ୍ଡନ
ସେ ତାରିଣୀ ମୋହର ହୁଅନ୍ତୁ ଶରଣ

ଗ୍ରନ୍ଥାରମ୍ଭରେ କବି ନିଜ ନାମ, ଗ୍ରାମ ଓ ନିଜ ପୃଷ୍ଠପୋଷକ ରାଜାଙ୍କ ବିଷୟ କିପରି ଉଲ୍ଲେଖ କରିଛନ୍ତି ଦେଖାଯାଉ—

ଧରାକୋଟ ଅମରାବତୀ ପୁରନ୍ଦର
ରଘୁପତି ମୋହନ କ୍ଷିତି ପତିଙ୍କର
ସୁବିଜ୍ଞ ପ୍ରମୋଦନୀ ସନ୍ନିଧିରେ ସଦସ୍ୟର
ରାଜେନ୍ଦ୍ରପୁର ଅଗ୍ରହାରରେ ମୋହର ଘର

କଉଶିକ ବଂଶରେ ହୋଇଛୁ ଜନମ
ଅଟେ ମୁଁ ଅକୁଶଳ ଅନନ୍ତଦାସ ନାମ
ଆହେ ସାଧୁମାନେ ପୁଣି ମୋ ଜଣାଣ
ଦୋଷକୁ ଛାଡି ଗୁଣ କରିବ ଗ୍ରହଣ ।

ତାରା ମାହାତ୍ମ୍ୟ ଛଡ଼ା କବି ଭଗବତୀ ଚଉତିଶା, ହରଚଣ୍ଡୀ ଜଣାଣ, ଧରାକୋଟର ବହୁ ଦେବାଦେବୀଙ୍କ ଜଣାଣ, ରାମଚନ୍ଦ୍ରଙ୍କ ବନବିହାର ଓ ଧରାକୋଟର ଅନୁଷ୍ଠିତ ହେଉଥିବା ଗୁଣ୍ଡିଚ୍ଚ ଯାତ୍ରା ପ୍ରଭୃତି ରଚନାରେ ସାହିତ୍ୟିକ, ସାଙ୍ଗୀତିକ ମୂଲ୍ୟବୋଧର ଅପୂର୍ବ ସମନ୍ୱୟ ରକ୍ଷା କରିପାରିଛନ୍ତି । ସୁରେଗ୍ୟ (ଉତ୍ତମ ରୂପେ ଗାନ କରାଯାଉଥିବା) ଛାନ୍ଦ ଯୋଜନାରେ ସେ ଜଣେ ସୁଦକ୍ଷ କଳାକାର । ଓଡିଶାର ବିଭିନ୍ନ ସମ୍ପ୍ରଦାୟ ମାନଙ୍କର ଭିନ୍ନ ଭିନ୍ନ ସ୍ୱରର ପ୍ରାଚୀନ ଗୀତମାନ ପ୍ରଚଳିତ ଥିବା ଦେଖାଯାଏ । ତନ୍ମଧ୍ୟରେ ସଂଗୀତ ଦ୍ୱାରା ଶାକ୍ତମାନଙ୍କ ପୂଜାର୍ଚ୍ଚନା ଓ ସମର୍ପଣ ଆଦି ପ୍ରାଚୀନକାଳରୁ ରହିଥିବା ଜଣାଯାଏ । କବିଙ୍କ ରଚନାରେ କିପରି ସାହିତ୍ୟିକ ଓ ସାତ୍ତ୍ୱିକ ମୂଲ୍ୟବୋଧ ରହିଛି ନିମ୍ନୋକ୍ତ ଭଜନ ଓ ଜଣାଣରୁ ଜଣାଯାଏ ।

ଭଗବତୀ ଜଣାଣ (ଚଉତିଶାରୁ ଦୁଇପଦ)
କରିଇ ନତି ସ୍ତୁତି ବିରଜ ହେଲା କୃପା ଇକ୍ଷଣେ କ୍ଷଣେ
ମାଗୋ କରୁଣାନିଧି କର ସଙ୍ଗୋଳ
କରୁ ଦୂରରେ ସିଦ୍ଧି ଏ ଦୁଷ୍ଟ ବିଧି (୧)
ରଜନୀପତି ବଂଶ ରଜନୀପତି ରାଜାଙ୍କ ବନବାସେ ହୋଇଲ ଗତି
ମାଗୋ ରଙ୍କ ଶରଣ
ରମାହି ଶିରଭୂଷା ଭୁମ୍ଭଚରଣ
× × ×

କ୍ଷଣେ ନହେଲା ସ୍ଥିର ଚିତ୍ତ ମୋହର   କ୍ଷୀଣତା ନାହିଁ ବ ଚିତ୍ତରେ ମୋହର
ମାଗୋ କ୍ଷମା ବିଧାନ
କ୍ଷମା ମାଗଇ ଥରେ କବି ରତନ

ବାଳମଣି ଜଣାଣରୁ ପଦେ –

କାହିଁକି ମୋଠାରେ ବାଳା କରୁଛ ଏପରି ହେଳା
ଚପିଦିଅ ହେଲେ ଗଲା   ଯାଉ ଏ ଦୁର୍ଗନ୍ଧ ଜ୍ୱାଳା
ଭ୍ରମର ବାଜେଣି ବଳା   ଧ୍ୱମାଣୁଣି ହୋଇ ହେଲା
ବିରବାସ କଟି ମେଳା   କରିଲେ ଗରଳଜଳା
✕ ✕ ✕
ଶିରସ୍ଥିର ଶଶିକଳା   ରୁଚିର ମୁଖମଣ୍ଡଳା
କବିରତ୍ନ ଦୁଃଖ ଜଳା ଶ୍ରୀବର ହୁଅଗୋ ଭେଳା

କବି ଓଡ଼ିଆ ସଂସ୍କୃତରେ ଏପରି ଶତାଧିକ ସ୍ତୁତି ଓ ଜଣାଣ ରଚନା କରି ଯାଇଛନ୍ତି । ସେ ଏହି ସ୍ତୁତି ରଚନା କରି ଦେବାଦେବୀଙ୍କ ନିକଟରେ ଅତ୍ୟନ୍ତ ସୁଲଳିତ କଣ୍ଠରେ ଗାନକରି ଭକ୍ତମାନଙ୍କୁ ମୁଗ୍ଧ କରି ପାରୁଥିଲେ । ସେ ସଂସ୍କୃତରେ ବହୁ ଅଷ୍ଟକ ଓ ଶ୍ଳୋକ ରଚନା କରି ତତ୍କାଳୀନ ପଣ୍ଡିତ ମଣ୍ଡଳୀଙ୍କୁ ସଂସ୍କୃତ ସାହିତ୍ୟ ସୃଷ୍ଟି କରିବାରେ ପ୍ରେରଣା ଯୋଗାଇ ଥିଲେ । ତାଙ୍କଦ୍ୱାରା ରଚିତ ଶ୍ରୀ ବୈଦ୍ୟନାଥାଷ୍ଟକରୁ ଏକ ପଦ ଉଦ୍ଧାର କରାଗଲା ।

ଶରଦାକର କାହେନ୍ଦୁ ଗଙ୍ଗା ପ୍ରବାହୋଲ୍ଲସତ୍କାଶ କୁନ୍ଦା ବଳଭୁଲ୍ଲକାନ୍ତଂ
ଜଟାଜୂଟ କୋଟି ସ୍ଫୁରଚନ୍ଦ୍ର ଖଣ୍ଡଂ ଭଜାମଃ ସନାତଂ ବପୁଂ ବୈଦ୍ୟନାଥମ
ଇଦଂ ବୈଦ୍ୟନାଥାଷ୍ଟକଂ ଯଃ ସକୃଦ୍ଧ ପଠେ ଭକ୍ତିତୋ ନନ୍ଦଦାସ ପ୍ରଣୀତଂ
ଭୁକ୍ତ୍ୱୀହ ଭୋଗାନ୍ ସମସ୍ତାନ୍ ତଦନ୍ତେ ସକୈଳାସବାସୀ ଭବେତ୍ ପ୍ରସାଦାତ୍

ଯେ ସମୟରେ ଧର୍ଣକୋଟର ବାୟୁମଣ୍ଡଳ ସଙ୍ଗୀତର ଉଚ୍ଛ୍ୱାସରେ ପରିପୂର୍ଣ୍ଣ ଥିଲା ! ରାଜା ମଦନ ମୋହନ ନିଜେ ସଙ୍ଗୀତ ପ୍ରିୟ ଥିଲେ । ଏଣୁ କାଳୋଚିତ ରୁଚିର ବଶବର୍ତ୍ତୀ ହୋଇ କବି ଅନେକ ଶୃଙ୍ଗାର ରସାଶ୍ରିତ କବିତା ରଚନାକରି କେତେକ ନିଜ ନାମରେ ଓ ଆଉ କେତେକ ନିଜ ଗୁଣଗ୍ରାହୀ ରାଜାଙ୍କ ନାମରେ ଭଣିତ କରିଛନ୍ତି । ତାଙ୍କର କବିତା କିପରି ସଙ୍ଗୀତ ମୟୀ ଓ ଭାବାବିଶେଷର ଉଦ୍‌ବୋଧନଥିଲା ନିମ୍ନୋକ୍ତ ଉଦାହରଣରୁ ଜଣାଯାଏ ।

ଚନ୍ଦ୍ରମୁହିଁ ଇନ୍ଦ୍ରପଦ ମୋତେ ଲୋଡ଼ା ନାହିଁରେ
ଅଧ ଅଧରରୁ ସିଂଚିତ ସୁଧାରସ ସରୁଧାର ଝରୁଥାଏତ ଅନିଶ
ବେଶ ସାରି ନାଗରିକ ମୋର ପାସ ଆସୁଥିରି ଯେବେ ଭୁହିରେ
ରସବତି ତୋ ସମାନ ନାହିଁ କ୍ଷିତିରେ
ଭୁଷାର ହାସିମାରେ ସୁସାର ମାଷୀ ଭୁସାର ରସାରେ ପ୍ରସାରକୁ ଦେଖି
ମସାର କେଶାରେ ରସା ରମ୍ଭାଭୁହି ଏକୋଇ ଏ ବୋଲି ମତିରେ ।୧।
ମଞ୍ଜୁବେଣି ସାଜ ସଞ୍ଜସଞ୍ଜବେଳେ ଅଞ୍ଜନ ରଞ୍ଜିତ କଞ୍ଜନେତ୍ରାନ୍ତରେ
ଭ୍ରୂଭଙ୍ଗି ଦେଉ ଯେବେ ହସି ହସି ଯେବେ ରହି ପାରଇକି ଧୃତିରେ
× × ×
ଗୋପ ରମଣୀରେ ତୋପରି ଜଗତି ଉପରେତ ନାହିଁ ତୋପରି ଯୁବତି
କବିରତ୍ନ ଶିରେ କାମ ସମରରେ ସାରିଦଅ ଆଜ ରାତିରେ ।

କବିଙ୍କର ଶତାଧିକ ସ୍ତୁତି, ଅଷ୍ଟକ ଭଜନ, ପୂର୍ବ ବିୟୋଗ ଜନିତ ଚଉତିଶା, ରାଧାକୃଷ୍ଣ ପ୍ରେମ ସମ୍ବଳିତ କବିତା ପ୍ରଭୃତି ଅପ୍ରକାଶିତ ଅବସ୍ଥାରେ ପଡ଼ିରହିଛି । ଏଗୁଡ଼ିକ ବିସ୍ମୃତିର କବଳ ଗର୍ଭରେ ଲୀନ ହେବାକୁ ବସିଲାଣି । ତେଣୁ ତାହାର ସଙ୍କଳନ, ପ୍ରକାଶନ ସହିତ ସଙ୍ଗୀତ କ୍ଷେତ୍ରରେ ବ୍ୟବହାର-ପ୍ରତି ଦୃଷ୍ଟି ଦେବା ଏକାନ୍ତ ବାଞ୍ଛନୀୟ ।

# ଶ୍ୟାମସୁନ୍ଦର ଦାସ ପଦ୍ୟାଳଂକାର

ସ୍ୱର୍ଗତ କବି ଶ୍ୟାମସୁନ୍ଦର ଦାସ ଧବଳେଶ୍ୱର ଅନ୍ତର୍ଗତ ଋଷିମାଳ-ନନ୍ଦିନୀ ପୁଣ୍ୟତୋୟା ଋଷିକୁଲ୍ୟାର ଉତ୍ତର ଦିଗରେ ଅବସ୍ଥିତ 'ପୁଟ୍ଟୁ' ଗ୍ରାମରେ ପଣ୍ଡିତ ପ୍ରବର କୃଷ୍ଣଚନ୍ଦ୍ର ଦାସଙ୍କ ଔରସରୁ ୧୮୮୬ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । କଥିତ ଅଛି କବିଙ୍କ ପୂର୍ବପୁରୁଷ ବଙ୍ଗଦେଶାନ୍ତର୍ଗତ ମେଦିନୀପୁର ଜିଲ୍ଲା ଗୋପୀବଲ୍ଲଭପୁରରୁ ଆସି ପୁଟ୍ଟୁରେ ଅବସ୍ଥାନ କରୁଥିଲେ । ଧବଳେଶ୍ୱର ରାଜା ରଘୁ ସିଂହ ତାଙ୍କର ଜଣେ ପୂର୍ବପୁରୁଷ ଧର୍ମକ ଦାସଙ୍କୁ ପୁରୀରୁ ଆଣି ନିଜ ରାଜ୍ୟର ପୁଟ୍ଟୁରେ ପ୍ରଚୁର ଭୂସମ୍ପତ୍ତି ଦାନ କରି ତାଙ୍କ ବସବାସର ବ୍ୟବସ୍ଥା କରିଥିବା ବିଷୟ ପୂର୍ବରୁ ଉଲ୍ଲେଖ କରାଯାଇଛି ।

ସ୍ୱଭାବ କବି ଗଙ୍ଗାଧରଙ୍କ ପରି ଶ୍ୟାମସୁନ୍ଦର ପଞ୍ଚମ ଶ୍ରେଣୀଯାଏ ପାଠ ପଢ଼ି ନିଜ ସାଧନା ବଳରେ ଜଣେ ଉଚ୍ଚ କବିର ଆସନ ଲାଭ କରି ପାରିଥିଲେ । ସ୍ୱକୀୟ ବିଧିଦତ୍ତ ପ୍ରତିଭା, ଅଧ୍ୟବସାୟ ଓ କଠୋର ସାଧନା ଫଳରେ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ଗଭୀର ଜ୍ଞାନ ଅର୍ଜନ କରିବା ସଙ୍ଗେ ସଙ୍ଗେ ତେଲୁଗୁ ଓ ହିନ୍ଦୀ ଭାଷାରେ ମଧ୍ୟ ଦକ୍ଷତା ହାସଲ କରିଥିଲେ । ସ୍ୱର୍ଗତ ରାଜା ମଦନମୋହନ ସିଂହ ଦେଓ କବିଙ୍କ ନୈସର୍ଗିକ କବିପ୍ରତିଭାରେ ଆକୃଷ୍ଟ ହୋଇ ୧୯୧୭ ଖ୍ରୀଷ୍ଟାବ୍ଦରେ ତାଙ୍କୁ 'ପଦ୍ୟାଳଂକାର' ଉପାଧିରେ ଭୂଷିତ କରି ନିଜ ରାଜଦରବାରରେ ବିଶିଷ୍ଟ ସାହିତ୍ୟିକ ଓ ପଣ୍ଡିତ ରୂପେ ରଖି ଯଥୋଚିତ ସମ୍ମାନ ପ୍ରଦର୍ଶନ କରୁଥିଲେ । ରାଜା ମଦନମୋହନ ସିଂହଙ୍କ ପରେ ତାଙ୍କର ପୁତ୍ର ଓ ପୌତ୍ର ବ୍ରଜ କିଶୋରଚନ୍ଦ୍ର ସିଂହ ଓ ପଦ୍ମନାଭ-ସିଂହ ଦେଓଙ୍କ ରାଜଦରବାର ସହିତ ମଧ୍ୟ ସଂଶ୍ଲିଷ୍ଟ ରହି କବି ସମଗ୍ର ଜୀବନ ସାରସ୍ୱତ ସାଧନାରେ ରତଥିଲେ । ସଙ୍ଗୀତ ଶାସ୍ତ୍ରରେ ଲୀଳା, ନାଟକ ଓ ଶୁଆଙ୍ଗ ରଚନା ଓ ଅଭିନୟରେ ତାଙ୍କର ଅସାଧାରଣ ଜ୍ଞାନ ଥିଲା ।

ସେ ଏକାଧାରରେ ଜଣେ କବି,ସୁବକ୍ତା, ସଙ୍ଗୀତଜ୍ଞ ଓ ଜାତୀୟବାଦୀ ଆନ୍ଦୋଳନରେ ଜଣେ ନିଷ୍ଠାପର କର୍ମୀଥିଲେ । ଜାତୀୟ ନେତାମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ନିଜ ମସୀଗୃଜନକର ଯୁବାବସ୍ଥାରେ ବହୁ ଦେଶାତ୍ମବୋଧ କବିତା ରଚନା କରିଥିଲେ । ସ୍ୱାଧୀନତା ସଂଗ୍ରାମ ବେଳେ ଭାରତୀୟମାନଙ୍କୁ ନିଜର ଭୀରୁତା ପରିହାର କରି ସ୍ୱାଧୀନତାର ଯଜ୍ଞପୀଠରେ ନିଜକୁ ଆହୁତି ଦେବାପାଇଁ ଯେଉଁ ଜାତୀୟବାଦୀ କବିତା ସବୁ ଲେଖିଥିଲେ ସେଥିପାଇଁ ତାଙ୍କୁ କୋର୍ଟକୁ ଟଣାଯାଇଥିଲା ଓ ତାଙ୍କର ସମସ୍ତ ଜାତୀୟ ପ୍ରଣୋଦିତ କବିତାଗୁଡିକୁ ସରକାର ବାଜ୍ୟାପ୍ତ କରିଥିଲେ । ନିମ୍ନୋକ୍ତ ଏକ ପଦରୁ ତାଙ୍କର ସ୍ୱଦେଶାନୁରାଗିତା ଜଣାପଡ଼େ ।

ରାଜସୂୟ ଯଜ୍ଞ ଯାହାର ସନ୍ତାନ
ଯୁଝିଥିଲେ ହେଇଥାନ୍ତି ଆଗ
ତାହାର ସନ୍ତାନେ କବାଟ କିଳନ୍ତି
ଦେଖି ଖଣ୍ଡେ ନାଲି ପାଗ ।

ପିଲାଦିନରୁ ବହିନ୍ନ ଗ୍ରନ୍ଥ ସଂଗ୍ରହ ଓ ଅଧ୍ୟୟନ ପ୍ରତି ତାଙ୍କର ଆଗ୍ରହ ଥିଲା । ଏଣୁ ପରିଣତ ବୟସରେ ନିଜ ଚେଷ୍ଟାରେ ୧୯୧୦ ମସିହାରେ ନିଜର ପିତାମହ ବନମାଳୀ ଦାସ ଗୋସ୍ୱାମୀଙ୍କ ନାମରେ ନିଜ ଗ୍ରାମରେ ଏକ ଗ୍ରନ୍ଥାଗାର ପ୍ରତିଷ୍ଠାକରି ସେଥିରେ ସହସ୍ରାଧିକ ବହୁ କାଗଜ ବହି ସମେତ ବହୁ ପ୍ରାଚୀନ ତାଳପତ୍ର ଗ୍ରନ୍ଥ ସଙ୍ଗ୍ରହିତ କରି ରଖିଥିଲେ । ଏହି ଏକମାତ୍ର ପାଠାଗାର ସର୍ବସାଧାରଣ ପାଠକଙ୍କ ପ୍ରତି ଉନ୍ମୋକ୍ତ ଥିଲା । ଏହି ଗ୍ରନ୍ଥାଗାରର ଉପାଦେୟତା ଉପଲବ୍ଧି କରି ତତ୍କାଳୀନ ମାନ୍ଦ୍ରାଜ ସରକାର ଏହାକୁ ରେଜିଷ୍ଟ୍ରୀଭୁକ୍ତ କରି ସାମୟିକ ଆର୍ଥିକ ସାହାଯ୍ୟ ମଧ୍ୟ ପ୍ରଦାନ କରୁଥିଲେ । କିନ୍ତୁ ଦୁର୍ଭାଗ୍ୟ ବଶତଃ ୧୯୫୨ ମସିହାରେ କବିଙ୍କ ଗ୍ରାମରେ ଅଗ୍ନିକାଣ୍ଡ ଘଟି ସମଗ୍ର ଗ୍ରାମ ସମେତ ଏହି ପାଠାଗାରର ସମସ୍ତ ଗ୍ରନ୍ଥ ଭସ୍ମୀଭୂତ ହୋଇଯିବା ଫଳରେ ଏହି ଅନୁଷ୍ଠାନର ସତ୍ତା ଲୋପ ପାଇଗଲା ।

କବି ନିଷ୍ଠାପର ଉତ୍କଳ ବ୍ରାହ୍ମଣ ବଂଶରେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ସକଳ ବୈଦିକ ଧର୍ମକର୍ମାନୁଷ୍ଠାନ କରୁଥିଲେ । ଶ୍ରୀକୃଷ୍ଣ ଓ ଚୈତନ୍ୟଙ୍କ ପ୍ରତି ତାଙ୍କର ଅଗାଧ ଭକ୍ତିଥିଲା । ସେ ପରମାର୍ଥ ଧର୍ମ ଗ୍ରହଣ କରି ରାଧାକୃଷ୍ଣ ମୂର୍ତ୍ତିଙ୍କୁ ନିଜ ଗୃହରେ ରଖି ପୂଜା ଉପାସନା କରୁଥିଲେ । ପାରଳାଖେମଣ୍ଡି ଓ ଗଞ୍ଜାମ ଜିଲ୍ଲାର ବହୁ କରଣ କୁଳର ସେ ଦୀକ୍ଷା ଗୁରୁ ଥିଲେ । କଥିତ ଅଛି ତାଙ୍କର ସୁଯୋଗ୍ୟ ଶିଷ୍ୟ ବର୍ଗଙ୍କ ପ୍ରଚେଷ୍ଟାରେ ପାରଳାଖେମଣ୍ଡି ରାଜ ଦରବାରରୁ କବି 'ଗୋସ୍ୱାମୀ' ଭାବେ ସମ୍ମାନିତ ହୋଇଥିଲେ । କବିଙ୍କ ପିତାମହ ଲୋକନାଥ ଦାସ ଗୋସ୍ୱାମୀ ( ବିଖ୍ୟାତ ନାମ ବନମାଳୀ ଦାସ ) ଓଡ଼ିଶାର ପ୍ରଖ୍ୟାତ ବୈଷ୍ଣବ କବି ଗୋପାଳକୃଷ୍ଣଙ୍କର ଦୀକ୍ଷା ଗୁରୁ ଥିଲେ ।

କବି ପରମ୍ପରାରୁ ଜଣାଯାଏ ମନୁଷ୍ୟମାନେ ଗଣେଶଙ୍କୁ ଗୁରୁ କରି ନାନା ବିଚକ୍ଷଣତା ଦେଖାଇ ଅଛନ୍ତି । ଗଣେଶଙ୍କୁ ଉପାସନା ନକରି ଲୋକ କବି ବିଦ୍ୱାନ୍ ବା ଶାସ୍ତ୍ରଜ୍ଞ ହୋଇନାହାଁନ୍ତି । ସୁତରାଂ କବି ଶ୍ୟାମସୁନ୍ଦର ଗଣେଶଙ୍କ ସମେତ ପଞ୍ଚଦେବତାଙ୍କୁ ଗୁରୁ କରି ସର୍ବ ପ୍ରଥମେ କବିତା ଲେଖିଥିବା କଥା ଜଣାଯାଏ ।

ସମାଜରେ ଧର୍ମଭାବ ଜାଗରୂକ କରିବା ପାଇଁ ଏହି ପ୍ରାର୍ଥନା ପଦ୍ୟର ଆବଶ୍ୟକତା ବିଶେଷ ଭାବରେ ଅନୁଭୂତ ହୁଏ । ଗଣେଶ ଓ ସୂର୍ଯ୍ୟଙ୍କ ବିଷୟରେ ଲେଖାଯାଇଥିବା ପ୍ରାର୍ଥନାରୁ ଗୋଟିଏ ଗୋଟିଏ ପଦ ଉଦ୍ଧାର କରାଗଲା ।

ଗଣେଶ – ଧରାସୁତା ଗର୍ଭରଙ୍ଗ ସୁମନ ମଣ୍ଡନ
ନତଶିର ତବ ପଦେ ଦେଉ ନିବେଦନ ।

ସ୍ତୁତି – କଞ୍ଜକର ଦଣ୍ଡଧର ଦେବଙ୍କ ପିଅର
ରସାଧାର ସର୍ବ ସତ୍ତ୍ୱ ହୃଦକ ମିହର ।

କବି ଶ୍ରୀ ଚୈତନ୍ୟଙ୍କର ପରମ ଭକ୍ତଥିଲେ । ଭକ୍ତ ବାନ୍ଧବ ଶ୍ରୀ ଚୈତନ୍ୟଙ୍କ ଆଶୀର୍ବାଦରୁ ସେ ପରମେଶ୍ୱରଙ୍କ ବାସ୍ତବସ୍ଥିତି ପ୍ରାଣେ ପ୍ରାଣେ ଅନୁଭବ କରିଛନ୍ତି । ଭକ୍ତାବତାର ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ଗୁଣାବଳୀ ସଂସ୍କୃତ ଭାଷା ଭିନ୍ନ ଉତ୍କଳ ଭାଷାରେ ବିଶେଷ ଭାବରେ ପରି-ଲକ୍ଷିତ ହୋଇ ଥିବା ହେତୁ ପ୍ରଭୁଙ୍କ ମହିମାଚୟକୁ ସରଳ ସୁନ୍ଦର ପଦ୍ୟା-କାରରେ ରଚନା କରି ରାଜା ମଦନମୋହନଙ୍କ ନାମରେ ଉତ୍ସର୍ଗ କରିଛନ୍ତି । ଏହି ସ୍ତୁତିରେ ପ୍ରତ୍ୟେକ ପଦ ପ୍ରାନ୍ତରେ 'ଣ' ବା 'ନ' ଏହି ଦୁଇଅକ୍ଷର ରଖି ପ୍ରତି ଦ୍ୱିତୀୟପଦ ସହ ମିଳାଇ ଛନ୍ତି ଓ ଭକ୍ତ ପାଠକମାନଙ୍କୁ "ବିଷାଦପ୍ୟ ମୃତଂ ଗ୍ରାହ୍ୟଂ" ନ୍ୟାୟରେ ଅଙ୍କିତାବିଷ ପୂର୍ଣ୍ଣ ବ୍ୟକ୍ତି ଠାରୁ ବାହାରିବା ଅମୃତମୟ " ଶ୍ରୀ ଚୈତନ୍ୟ ନାମାବଳୀ " ରସ ଆସ୍ୱାଦନ କରିବାକୁ ବିନମ୍ର ପ୍ରାର୍ଥନା କରିଛନ୍ତି । ଏହି ସ୍ତୁତିରେ ଶ୍ରୀକୃଷ୍ଣଙ୍କ ମହାପ୍ରେମ ତରଙ୍ଗରେ ଉଦ୍‌ଭାସିତ ହୋଇ ନୃତ୍ୟ ଉଲ୍ଲାସରେ ବିହ୍ୱଳ ହୋଇ ତାଙ୍କର କୀର୍ତ୍ତନ ଶ୍ରୀଚୈତନ୍ୟ ମହାପ୍ରଭୁ କପରି କରୁଥିଲେ କବି ତାହା ସୁନ୍ଦର ଭାବେ ଦର୍ଶାଇଛନ୍ତି ।

ନବଦ୍ୱୀପ ବୃନ୍ଦ ଜୀବନ ଜେକ୍ଷଣ
ଯତି ବେଶଧାରୀ କରୁଣା ନିଧାନ
କୃଷ୍ଣ କୃଷ୍ଣ ଶବ୍ଦ ସର୍ବଦା ଭାଷଣ
ନମସ୍ତେ ଚୈତନ୍ୟ ଶ୍ରୀ ସଚୀନନ୍ଦନ

× × ×

ଦେବ ! ତବନାମାମୃତ କରି ପାନ
ଯହିଁରେ ତୃପ୍ତି ମୋ ଲଭିବ ଜୀବନ

ସେହିପରି ଜ୍ଞାନ ଦିଅ ଜନାର୍ଦ୍ଦନ
ନମସ୍ତେ ଚୈତନ୍ୟ ଶ୍ରୀ ସଚୀନନ୍ଦନ

ଉପରୋକ୍ତ ଭଜନ ବ୍ୟତୀତ କବିଙ୍କ ଲେଖନୀ ସାହିତ୍ୟର ବିଭିନ୍ନ ବିଭାବକୁ ସ୍ପର୍ଶ କରି ପାରିଥିଲା । ଧର୍ମ, ସଙ୍ଗୀତ, ରାଜନୀତି ସାମାଜିକ ବ୍ୟବସ୍ଥା ଓ ପ୍ରାକୃତିକ ବିଷୟକୁ ଭିତ୍ତି କରି ନିମ୍ନଲିଖିତ ପୁସ୍ତକ ଗୁଡ଼ିକ ରଚନା କରି ପ୍ରକାଶ କରିଛନ୍ତି । (୧) ଋଷିକୁଲ୍ୟା କାବ୍ୟ (୨) ନଦୀ ଟିଲେ ନାହିଁ (୩) କରୁଣାକର ଜଣାଣ (୪) ହରିହର ଭେଟ (୫) ସଙ୍ଗୀତରତ୍ନ-ପେଡ଼ି (୬) ଭଜନ ସଙ୍ଗୀତାବଳୀ (୭) ବୁଢ଼ାକେନ୍ଦୁ ଜଣାଣ (୮) ଅନୁତାପ (୯) ବ୍ରତ ସମ୍ଭବ (୧୦) ଜନନୀ (୧୧) ପତିଶାନାମା (୧୨) ନୂଆଁହାଟ (୧୩) ବୁଦ୍ଧିପଞ୍ଚାଭିଷେକ ଏହାଛଡ଼ା ଆହୁରି ୧୫ ଗୋଟି ବହିର ପାଣ୍ଡୁଲିପି ସମେତ ଉପରୋକ୍ତ ମୁଦ୍ରିତ ଆକାରରେ ପ୍ରକାଶିତ ବହି ଅଗ୍ନିକାଣ୍ଡରେ ସମ୍ପୂର୍ଣ୍ଣ ଭାବେ ଭସ୍ମୀଭୂତ ହୋଇଗଲା ।

କବି ଶ୍ୟାମସୁନ୍ଦର ଥିଲେ ସୌନ୍ଦର୍ଯ୍ୟର ପୂଜାରି । ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରିବା ଥିଲା—ତାଙ୍କର ସହଜାତ ପ୍ରବୃତ୍ତି । ଗଞ୍ଜାମର ବୃହତ୍ତମ ଓ ସୁନ୍ଦରତମ ଋଷିମାଳ ନନ୍ଦିନୀ, କଳକାକଳୀ ନିନାଦିନୀ, ଘନକପିନ-ବିହାରିଣୀ, ଗଞ୍ଜାମର ମନ୍ଦାକିନୀ, ଅଗଣିତ କବି ବିଦ୍ୱଜ୍ଜନ ସେବିନୀ ଋଷିକୁଲ୍ୟା ତରଙ୍ଗିଣୀର ପ୍ରାକୃତିକ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସେ ଦୁଇଶତାଧିକ ପୃଷ୍ଠାବ୍ୟାପୀ ଋଷିକୁଲ୍ୟାକାବ୍ୟ ପ୍ରଣୟନ କରି ଉତ୍କଳ ସାହିତ୍ୟ ଭଣ୍ଡାରକୁ ଏକ ଅମୂଲ୍ୟ ସମ୍ପଦ ଦାନ କରିଛନ୍ତି । କବିବର ରାଧାନାଥ ଋଷିକୁଲ୍ୟାର ପ୍ରାକୃତିକ ଶୋଭା ସମ୍ପଦରେ ମୁଗ୍ଧହୋଇ ଯେଉଁ ଦୁଇପଦ ତାଙ୍କ ଚିଲିକା କାବ୍ୟରେ ଉଲ୍ଲେଖ କରିଛନ୍ତି ତାର ପ୍ରଭାବରେ ହେଉ କିମ୍ବା 'ଚିଲିକା' କାବ୍ୟ ସୃଷ୍ଟିର ପ୍ରେରଣାରେ ହେଉ କବି 'ଋଷିକୁଲ୍ୟାକୁ'ଆଧାର କରି ଏହି କାବ୍ୟରଚନାକରି

ତାଙ୍କର ପୃଷ୍ଠପୋଷକ ରାଜା ପଦ୍ମନାଭ ସିଂହ ଦେଓଙ୍କୁ ଉତ୍ସର୍ଗ କରିଛନ୍ତି । ରାଧାନାଥ ଗଂଜାମର 'ମହେନ୍ଦ୍ର' ଚିନ୍ତାମଣି ମହାନ୍ତି 'ଉଦ୍ୟାନଖଣ୍ଡ' 'ମେଘାସନ' ପର୍ବତ ନାମକ କ୍ଷୁଦ୍ରକାବ୍ୟ ରଚନା କରି ଗଞ୍ଜାମର ପ୍ରାକୃତିକ ଶୋଭା ସମ୍ପଦକୁ ଲୋକଲୋଚନକୁ ଆଣି ପାରିଥିଲେ । ଋଷିକୂଲ୍ୟା ସମ୍ପର୍କରେ ରାଧାନାଥ ଉଲ୍ଲେଖ କରିଛନ୍ତି—

"ଋଷିମାଳ ସୁତା ଋଷିକୂଲ୍ୟା ନଦୀ   ପତିତ ପାବନୀ ଯଥା ବସ୍ତ୍ରପ୍ରଦା
ସଦାଅନାବିଳ-ସଳିଳ ଦ୍ରବିଣା   କର୍ପୂର ଧବଳ ବିପୁଳ ପୁଳିନା ।

କବି ଋଷିକୂଲ୍ୟା ନଦୀ ତଟରେ ବାସକରି ତାର ସଳିଳ, ତଦ୍-ବକ୍ଷବାହୀ ସମୀରଣ ତନ୍ନିର ପରିବର୍ଦ୍ଧିତ ଶସ୍ୟଦ୍ୱାରା ଜୀବନ ଧାରଣ କରିବା ହେତୁ ଋଷିକୂଲ୍ୟାନଦୀକୁ ତାଙ୍କର ପରମ ମାତାବୋଲି ଅଭିହିତ କରିଛନ୍ତି । ନଦୀର ଜନ୍ମ ପର୍ବତ ଋଷିମାଳଠାରୁ ଆରମ୍ଭକରି ତା'ର ଅଙ୍ଗ ପୋଷଣ ଓ ଶୁଶ୍ରୂଷାଳୟ ବଙ୍ଗୋପସାଗର ଗମନ ପର୍ଯ୍ୟନ୍ତ ଏକଶତ ମାଇଲ ଦୀର୍ଘ ତୀରବର୍ତ୍ତୀ କାଟିଙ୍ଗା, ଚଦୋପୁର, ସୋରଡ଼ା, ଧରାକୋଟ, ଆସିକା, ପିତଳ, ପୁରୁଷୋତ୍ତମପୁର ଓ ଗଞ୍ଜାମ ପ୍ରଭୃତି ବିସ୍ତୃତ ଭୂଖଣ୍ଡର ପ୍ରାକୃତିକ, ବହୁ ସାମାଜିକ ଐତିହାସିକ, ରାଜନୈତିକ ଓ ଲୌକିକ ସ୍ମୃତି ବିଜଡ଼ିତ ଘଟଣା ଉଲ୍ଲେଖ କରି ନିଜର ଅପୂର୍ବ ବିଶେଷଣୀ ଶକ୍ତି ଓ କବି ପ୍ରତିଭାର ଚୂଡ଼ାନ୍ତ ପରିଚୟ ଦେଇଛନ୍ତି । କବି ଋଷିକୂଲ୍ୟା ତୀରବର୍ତ୍ତୀ ବହୁ ଦେବଦେବୀ ଓ ଦେବ ମନ୍ଦିରର ଚମତ୍କାର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ତୀରବର୍ତ୍ତୀ ବହୁ କବି ଓ ପଣ୍ଡିତଙ୍କ ପରିଚୟ ଓ ତାଙ୍କ ସାହିତ୍ୟ କୃତି ବିଷୟରେ ଅତ୍ୟନ୍ତ ଚମତ୍କାର ଭାବେ ବର୍ଣ୍ଣନା କରିଛନ୍ତି । ଏହି କାବ୍ୟ ପାଠକଲେ ଜଣାଯାଏ ଋଷିକୂଲ୍ୟାର ତୀର ହେଉଛି ଶୋଭାର ନିଳୟ । ଏହି କାବ୍ୟରେ ସେ ଯେପରି

ଭାବରେ ପ୍ରାକୃତିକ ସୌନ୍ଦର୍ଯ୍ୟର ଚିତ୍ରଣ କରିଛନ୍ତି ସେଥିପାଇଁ ତାଙ୍କୁ ଗଞ୍ଜାମର ରାଧାନାଥ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କବି ତାଙ୍କ କାବ୍ୟରେ 'ଋଷିକୂଲ୍ୟାର' ଉତ୍ପତ୍ତି ବିଷୟରେ ଯେଉଁ ପୌରାଣିକ ଆଭାସ ସହ ସୁରମ୍ୟ ଶୋଭା ସମ୍ପଦରେ ବର୍ଣ୍ଣନା କରିଛନ୍ତି ତାର ପଟାନ୍ତର ନାହିଁ । କବି ଏହି କାବ୍ୟକୁ 'ନଟବାଣୀ' ବୃତ୍ତରେ ରଚନା କରିଛନ୍ତି ।

ନମସ୍ତେ ନମସ୍ତେ ଋଷିମାଳ ସୁତେ
ପତିତ ପାବନ ସର୍ବଶୁଭଯୁତେ
ଗିରିଜେ ଗିରୀଶ ମୌଳୀ ବିହାରିଣୀ
ପ୍ରସ୍ତରୂପିଣି ଗୋ ପୂଣ୍ୟସ୍ୱରୂପିଣି

× × ×

ତୋ ଜନମ ସ୍ଥଳ ବଡ଼ ମନୋହର
ଛୁଏଁ ନାହିଁ କେବେ ଖର କର କର
ବହୁଦଣ୍ଡ ପୂର୍ଣ୍ଣ ଋଷିମାଳାଚଳ
ହୋଇଥିଲା ଋଷି ପ୍ରିୟ ବାସସ୍ଥଳ
ଧାଡ଼େ ମାଳ ନଦୀ ଧବା ଧବାବଳୀ
ମୃଗ ବିହଙ୍ଗମ ରମ୍ୟ କ୍ରୀଡ଼ାସ୍ଥଳୀ

କାଳିଙ୍ଗା, ଗଦାପୁର ଅଞ୍ଚଳରେ ବାସକରୁଥିବା ଶବର ଜାତୀୟ ଲୋକମାନଙ୍କର ନିଷ୍କପଟ ଧାର୍ମିକ ଓ ସରଳ ଜୀବନଯାପନ ପ୍ରସଙ୍ଗରେ ବହୁ ନୀତିପୂର୍ଣ୍ଣ ବାକ୍ୟ ଉଲ୍ଲେଖ କରିଛନ୍ତି । ଆଲୋଚ୍ୟ ଉପଦେଶାବଳୀ ସାଧାରଣତଃ ସଂସାରର କ୍ଷଣ ଭଙ୍ଗୁରତା, ମନୁଷ୍ୟର ଅସାର ବାହୁବଳ,

ଧନ ସମ୍ପତ୍ତିର ଅସାରତା ଓ ଅନତ୍ୟତା, ଦେବତା ଓ ପିତୃଭକ୍ତି, ଦୈବର ଅଲଂଘ୍ୟ ଶକ୍ତି ଆଦି ପ୍ରସଙ୍ଗକୁ ନେଇ ଶୋଧିକ ବାକ୍ୟ ପ୍ରଦତ୍ତ ହୋଇଛି । ଦୃଷ୍ଟାନ୍ତ ସ୍ୱରୂପ ନିମ୍ନରେ କେତୋଟି ପଂକ୍ତି ଉଦ୍ଧାର କରାଗଲା ।

ଭୁଞ୍ଜିଲେ ଦେବତା ପିତୃଙ୍କୁ ନଦେଇ
ଗଣନା ହୁଅଇ ପାପୀଗଣେ ସେହି

× × ×

ଦେବତା ପ୍ରସନ୍ନ ବିଶ୍ୱାସରେ ମିଳେ
ଶବରୀ ଉଚ୍ଛିଷ୍ଟ ଶ୍ରୀରାମ ଭକ୍ଷିଲେ
ବିଶ୍ୱାସ ଆକର୍ଷେ ନିଶ୍ଚେ ଦୈବୀବଳ
ବାକ୍ୟବଳେ ପିତୃ ସନ୍ତୋଷ କେବଳ

× × ×

ସମ୍ପଦେ ବିପଦେ ସ୍ୱଭାବ ନପାଏ
ଘୋଷିଲେ ଚନ୍ଦନ ବାସକ ପଳାଏ

ଏହି ପଞ୍ଚ ସର୍ଗାତ୍ମକ କାବ୍ୟ ଧରାକୋଟର ଗୌରବ ବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ସମଗ୍ର ଗଞ୍ଜାମ ବାସୀଙ୍କ ପ୍ରାଣରେ ଗର୍ବ ଓ ଅଭିମାନ ସୃଷ୍ଟି କରିପାରିଛି । ଋଷିକୁଲ୍ୟା କାବ୍ୟ ତାଙ୍କ ସହଜାତ ପ୍ରତିଭାର ଚୂଡ଼ାନ୍ତ ପରି ପ୍ରକାଶ । ସେ କେବଳ ଋଷିକୁଲ୍ୟାର ଭୌଗଳିକ ଓ ଐତିହାସିକ ତଥ୍ୟ ପ୍ରକାଶ କରି ନାହାନ୍ତି ଆନୁଷଙ୍ଗୀକ ଭାବରେ ଓ ପ୍ରାଣର ଆବେଗରେ ବହୁ ମନସ୍ତତ୍ତ୍ୱ ପ୍ରଚ୍ଚର କରିଛନ୍ତି । ଋଷିକୁଲ୍ୟାର ମହତ୍ତ୍ୱ ଓ ପବିତ୍ରତା ବର୍ଣ୍ଣନାରେ ଲେଖକଙ୍କ ନୈପୁଣ୍ୟର ଦୃଷ୍ଟାନ୍ତ ଦିଆଗଲା ।

କୁଞ୍ଜର ତାରଣ କୁଞ୍ଜର ମାରଣ
କୁଞ୍ଜର ବାରଣ ଗୁଞ୍ଜା ଆଭରଣ

ଭକ୍ତ ଶାଶୁ ଶ୍ୱଶୁରଙ୍କ ବାସସ୍ଥାନ
ତଟେ ସ୍ଥାନେ ସ୍ଥାନେ ଅଛି ବିଦ୍ୟମାନ
କେତେ ବା ମହର୍ଷି କେତେ ବା ସନ୍ୟାସୀ
କେତେ ମହାତମା ନାନାଦେଶୁ ଆସି
କରିଛନ୍ତି ଭୋର ପୂତଜଳେ ସ୍ନାନ
ଏଣୁ ବୋଲାଉଛୁ ସ୍ୱର୍ଗତୀର୍ଥ ସମାନ

ତାଙ୍କ ସମୟରେ ଜାତିର ପିତା ଗାନ୍ଧୀଜୀଙ୍କ ନେତୃତ୍ୱରେ ବିଦେଶୀ ଜିନିଷ ବର୍ଜନ ସ୍ୱଦେଶୀ ଜିନିଷ ବ୍ୟବହାର ନେଇ ଦେଶରେ ବିରାଟ ଆନ୍ଦୋଳନ ଚାଲିଥିଲା । ବସ୍ତ୍ର ଶିଳ୍ପରେ ଦେଶକୁ ଆତ୍ମନିର୍ଭରଶୀଳ କରି ଦେଶକୁ ଅର୍ଥନୈତିକ ଶୋଷଣରୁ ରକ୍ଷାକରିବା ପାଇଁ ଗାନ୍ଧୀଜୀ ଦେଶରେ କାର୍ପାସ ଚାଷର ଉନ୍ନତି ଘଟାଇ ବସ୍ତ୍ର ଉତ୍ପାଦନ ପାଇଁ ଯେଉଁ ଚରଖା ଆନ୍ଦୋଳନ ଚଳାଇଥିଲେ ସେ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ସେହି ବିଷୟ ତାଙ୍କ କାବ୍ୟରେ ବଡ଼ ସୁନ୍ଦର ଭାବରେ ଉଲ୍ଲେଖ ନିଜ ଦେଶାତ୍ମ ବୋଧର ପରିଚୟ ଦେଇଛନ୍ତି ନିମ୍ନୋକ୍ତ ପଂକ୍ତିରୁ ଜଣାଯାଏ ।

କାଳରେ ଅଣାଇ ଧନରେ ଅଣ୍ଟାଇ
ମିତ-ପୃଷ୍ଠବାସେ ଦେଶ ଚହଟଇ
ଧନର ଅଭାବେ ଗ୍ଲାସ ଗୋ-ଦାନବ
ଦେଖୁଁ ବସ୍ତ୍ର ଶିଳ୍ପ କରିଥିଲା ଖର୍ବ
କୃଷୀ ସୁବାଞ୍ଛିତ ଇକ୍ଷୁ ଧନ କାଳ
କୃଷି କଳ୍ପତରୁ କରେ ଧନଶାଳୀ
'ଗ୍ଲାସ ଗୋ' ଦାନବ ସଂହାରଣ ଅସ୍ତ୍ର
ଗାନ୍ଧୀ ପ୍ରଚାରିତ ଚରଖା ସ୍ୱତନ୍ତ୍ର

ଦାନା କନା ପାଇଁ ବିଦେଶକୁ ଦେଶ
ନରୁହିଁଲେ ତାର ଘୁଞ୍ଚିଯିବ କ୍ଳେଶ
(ଇକ୍ଷୁ - ଆଖୁ; ଧଳ - କାର୍ପାସ; କାଳ - ତୈଳବୀଜ, ରାଶି)

କାବ୍ୟର ଛନ୍ଦ ବିନ୍ୟାସ ରୀତି, ଆଳଂକାରିକ ଛଟା ମଧ୍ୟରେ ରଚନାର ମୌଳିକତା ଭାଷାର ଲାଳିତ୍ୟ, ଉପଧାମିଳନ, ଶବ୍ଦ ବିନ୍ୟାସ ରୀତିରୁ କବିଙ୍କ ଅପୂର୍ବ ନୈସର୍ଗିକ କବି ପ୍ରତିଭାର ପରିଚୟ ମିଳେ । ଏହି କାବ୍ୟରେ ତାଙ୍କର ମାନସ ଚକ୍ଷୁ ବିଷୟ ବସ୍ତୁର ଅନ୍ତରତମ ପ୍ରଦେଶ ନିରୀକ୍ଷଣ କରି ସୁନ୍ଦର ଉନ୍ନତ ଭାବ କରିବାରେ ଯେପରି ନୈପୁଣ୍ୟଲାଭ କରିଥିଲା ତାଙ୍କର ପ୍ରକାଶ ଶକ୍ତି ସେହିପରି ତାହାକୁ ମଧୁର ଉନ୍ନତ ପଦାବଳୀର ବିନ୍ୟାସରେ ଚିତ୍ତର ପ୍ରସାଦ ଜନ୍ମାଇବାକୁ ସମର୍ଥ ହୋଇପାରିଛି ।

ଏହି କାବ୍ୟ ବ୍ୟତୀତ କବି 'ହରିହର ଭେଟ' ନାମକ ଅନ୍ୟ ଏକ କାବ୍ୟ ମଧ୍ୟ ପ୍ରଣୟନ କରିଛନ୍ତି । ଏହି ଧିରିକୋଟ ରାଜ୍ୟ, ରାଜା ଓ ରାଜୋତାର ପରମ୍ପରା ବର୍ଣ୍ଣନା ପ୍ରସଙ୍ଗରେ ଲେଖକ ରାଜବଂଶର ଇଷ୍ଟଦେବ ( ଶ୍ରୀ ଶ୍ରୀ ଶ୍ରୀ ମଦନମୋହନ ) ଓ ହର ( ଶ୍ରୀ ଶ୍ରୀ ମୁକ୍ତେଶ୍ବର ) ଙ୍କ ଶିବରାତ୍ରି ଦିନ ଗୋବର୍ଦ୍ଧନପୁର ଶାସନରେ ବିଜେ ହୋଇଥିବା ମୁକ୍ତେଶ୍ବରଙ୍କ ପ୍ରାଙ୍ଗଣରେ ହେଉଥିବା ପରସ୍ପର ମିଳନକୁ ଅବଲମ୍ବନ କରି ବଙ୍ଗଳଶ୍ରୀ ବୃତ୍ତରେ ଏହି କାବ୍ୟରଚନା କରିଛନ୍ତି । ପ୍ରାର୍ଥନା ପଞ୍ଚକ, ଭଜନ ସଙ୍ଗୀତାବଳୀ, ଶ୍ରୀଚୈତନ୍ୟ ସ୍ତୁତି ମାଳାରେ କବିଙ୍କ ଯେଉଁ କବିପ୍ରତିଭାର ଆଦ୍ୟମୁକୁଳ ପରିଲକ୍ଷିତ ହୋଇଥିଲା ସେହି କବି ପ୍ରତିଭାର ବିକଚ ବିକାଶ ହେଉଛି ପରବର୍ତ୍ତୀ କାଳରେ ଶ୍ରୀ ହରିହର ଭେଟ । ଏଥିରେ ପଲ୍ଲୀର ନିଖୁଣ ଚିତ୍ର ଓ ଗ୍ରାମଗହଳରେ ଅନୁଷ୍ଠିତ ହେଉଥିବା ଦେବ ଯାତ୍ରା ଉତ୍ସବର ବିଭିନ୍ନ ଘଟଣା-

ଗୁଡିକ ଯେପରି ଜୀବନ୍ତଭାବେ ବର୍ଣ୍ଣିତ ହୋଇଛି ଆଧୁନିକ ଯୁଗର ଲେଖକଙ୍କ ମଧ୍ୟରେ ତାହା କ୍ୱଚିତ ଦେଖିବାକୁ ମିଳେ । କାବ୍ୟରେ ଲୋକଙ୍କ ଉତ୍ସାହ, ଆତିଥ୍ୟ, ପ୍ରକୃତି ବର୍ଣ୍ଣନା, ଯାହାକୁ କିଜେ ସମୟରେ ରାଜାଡ଼ମ୍ବର, ଧରାକୋଟ ରାଜବଂଶର ଅତୀତ ଐତିହ୍ୟ ପ୍ରଭୃତିକୁ ସମାବେଶ କରି କବି ଶବ୍ଦାଳଂକାର ଓ ଅର୍ଥାଳଂକାରେ କବିତା କବିତାକୁ ସାଳଂକୃତ କରି ସୁରୁଚି ସମ୍ପର୍ଣ୍ଣ କରି ପାରିଛନ୍ତି । ଧରାକୋଟ ରାଜ୍ୟର ଅତୀତ ବିଭବ ଓ ପ୍ରାକୃତିକ ଶୋଭା ସମ୍ଭାରରେ ଅଭିଭୂତ ହୋଇ କବି କାବ୍ୟର ପ୍ରାରମ୍ଭରେ ଉଲ୍ଲେଖ କରିଥିବା କେତେକ ପଦରୁ ଦୁଇପଦ ଏଠାରେ ଦର୍ଶାଗଲା –

ବିଶାଳ ଉତ୍କଳ ଯାମ୍ୟଦେଶେ ସ୍ଥିତ
ପବିତ୍ର ଗଞ୍ଜାମ ନାମେ
ମହାକବି ଉପେନ୍ଦ୍ର କବି ସୂର୍ଯ୍ୟ
ଜନ୍ମିଥିଲେ ଯେଉଁ ଧାମେ
ଗଞ୍ଜାମ ଉଦ୍ୟାନେ ଜନ ମନୋହର
ଗୋଲାପ କୁସୁମ ପରି
ଧୀରା ପ୍ରସବିନୀ ଧରାକୋଟରେ ଧରା
ରାଜେ ବହୁ ଶୋଭା ଧରି

ଏହି କାବ୍ୟରେ ଘଟଣା ଗୁଡ଼ିକୁ ତନ୍ନ ତନ୍ନ କରି କବି ଆପଣାର ଦୃଷ୍ଟିରେ ଯେପରି ଦେଖିବାକୁ ପାଇଛନ୍ତି ତା'ହା ତୁଳିକା ସାହାଯ୍ୟରେ ଏପରି କୌଶଳରେ ସେଗୁଡ଼ିକୁ ରୂପଦେଇ ପାରିଛନ୍ତି ଯେ ତାହା ପାଠକରି ପାଠକମାନେ ଅମାପ୍ତ ଆନନ୍ଦ ଉପଭୋଗ କରିପାରନ୍ତି ଉଭୟ ଦେବତାଙ୍କ ଭେଟ ସମୟରେ ବ୍ରାହ୍ମଣମାନେ କିପରି ଆନନ୍ଦ ଉଲ୍ଲାସରେ ଘଣ୍ଟ ବାଦନ କରୁଥାନ୍ତି କବି ପାଣ୍ଡିତ୍ୟ ପୂର୍ଣ୍ଣଭାଷାରେ କିପରି ବର୍ଣ୍ଣନା କରିଛନ୍ତି ଦେଖାଯାଉ

ଦ୍ୱିଜ ରାଜ ରଥ -            ଦ୍ୱିଜ ରାଜ ମାଥ
ସଙ୍ଗେ ଦ୍ୱିଜରାଜ ଛତ୍ର
ମହାନନ୍ଦ ଭରେ            ନାନାବି ଭଙ୍ଗିରେ
ଘଣ୍ଟ ବଜାଇ ଚଳନ୍ତି

କବି ଉଚ୍ଚ ସ୍ତରର କାବ୍ୟ ଓ କବିତା ରଚନା କରିବା ସଙ୍ଗେ ସଙ୍ଗେ ଅତିଉଚ୍ଚକୋଟିର ଲୌକିକ ସାହିତ୍ୟ ( Popular literature ) ସୃଷ୍ଟି କରିବାରେ ସିଦ୍ଧହସ୍ତ ଥିଲେ । ସେ ସହସ୍ରାଧିକ ପ୍ରବଚନ ଓ ନୀତିବଚନ ଅତି ମାର୍ଜିତ ଓ ମଧୁର ଭାଷାରେ ରଚନା କରିଛନ୍ତି । ଏଗୁଡ଼ିକରେ ଦେଶର ଓ ସମାଜର ଅନେକ ତତ୍ତ୍ୱ ଓ ରୀତିନୀତି ଉଲ୍ଲେଖ କରି ଗୋଟିଏ ବିଷୟରେ ଉତ୍କର୍ଷ ଓ କୃତିତ୍ୱ ଲାଭ କରିଥିବା ବ୍ୟକ୍ତି ନିକୃଷ୍ଟ ବିଷୟରେ କୃତିତ୍ୱ ଲାଭ କରି ନପାରିଲେ ଜୀବନରେ ଦୁଃଖ ଓ କ୍ଷୋଭ ପ୍ରକାଶ ନକରିବା ପାଇଁ ଉପଦେଶ ଛଳରେ "ନଘଟିଲେ ନାହିଁ" ପୁସ୍ତକରେ 'ନ' କାରାଦ୍ୟ ବହୁ ବ୍ୟଙ୍ଗାତ୍ମକ ପ୍ରବଚନ ଆମୋଦ ମୟ ଭାବରେ ପ୍ରକାଶ କରିଛନ୍ତି । ସାମାଜିକ ଓ ନିତ୍ୟ ନୈମିତ୍ତିକ ଅନୁଷ୍ଠାନ ମାନଙ୍କରେ ଶ୍ରୁତି ଓ ସ୍ମୃତିର ଯେପରି ନିଜର ଲୋଡ଼ା ସେପରି ଜନଜୀବନକୁ ନବ ନିୟନ୍ତ୍ରଣ କରିବା ପାଇଁ ଦୈନନ୍ଦିନ ଜୀବନରେ ଅବୁଝା ମନୁଷ୍ୟକୁ ଓ ଅବୁଝା ମନକୁ ସାନ୍ତ୍ୱନା ଦେବାପାଇଁ ଏହି ନୀତିବାକ୍ୟ ଓ ପ୍ରବଚନ ଗୁଡ଼ିକ ଆବଶ୍ୟକ ହୁଏ ।

ଏହି ପ୍ରବଚନ ଗୁଡିକ ମଧ୍ୟରୁ ମୃରିଗୋଟିର ମାତ୍ର ଉଦାହରଣ ସ୍ୱରୂପ ପ୍ରଦତ୍ତ ହେଲା ।

ଗୋପବନ୍ଧୁଙ୍କର ପରି ଯା ମନ            ଗରିବ ଦୁଃଖରେ କାନ୍ଦଇ ପ୍ରାଣ
ପରଧନେ ପୁଞ୍ଜିପତି ବୋଲାଇ            ଚୋରବଜାରେ କାଳ କାଟିବା ପାଇଁ
ନଘଟିଲେ ନାହିଁ, ନରତେ ଏଥିକି ଚିନ୍ତା କିମ୍ପାଇଁ

ରବିବର୍ମା ପରି ଅତି ସୁନ୍ଦର ଛବି କାର୍ଯ୍ୟେ ଅଟେ ଯେ ଅଗ୍ରସର
କରଇ ଅଦ୍ଭୁତ ସୁଚିତ୍ର ଲେଖା ଓଷାକୋଠି ବାଡ଼େ ଲେଖିବା ଲେଖା
ନଥିଟିଲେ ନାହିଁ ନରଟେ ଏଥିକି ଚିନ୍ତା କମାଇଁ

ଧରବର ସୁତା ବର ମଉଳୀ ଜଟାଟଗୀ ବନ୍ଧାରଣୀ ଧବଳୀ
ସୁମନ ଚଟିମା ଚଟେ ଯା ବାସ ନିଶଧୁଆ ମାରେ ଯିବାକୁ ଶୋଷ
ନଥିଟିଲେ ନାହିଁ ନରଟେ ଏଥିକି ଚିନ୍ତା କମାଇଁ ।

ନବ୍ୟରୁଚି ସୁସମ୍ପନ୍ନ ଯୁବକ ନେକଟାଇରେ ଯେ ମଣ୍ଡଇ ବେକ
ନିଶ ପୋଛେ ଧେଣ୍ଟକନାକୁ ସାଜ ନାଶ ନାକ ପୋଚ୍ଛ ଗନ୍ଧଅ ଝୁଜ
ନଥିଟିଲେ ନାହିଁ ନରଟେ ଏଥିକ ଚିନ୍ତା କମାଇଁ ।

ଶ୍ରାନ୍ତ କ୍ଲାନ୍ତମୟ ଜୀବନକୁ ସରସ, ଓ ସୁନ୍ଦର କରିବା ପାଇଁ ହାସ୍ୟ ରସିକ ଆଶୁ କବି ଉତ୍କଳ ଘଣ୍ଟ ଯଦୁମଣିଙ୍କ ପରି ବହୁ ହାସ୍ୟରସ ସମ୍ବଳିତ କବିତା ଓ ପ୍ରବଚନ ରଚନା କରିଛନ୍ତି । କବି ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତ ସିଂହାର, ଯଦୁମଣି ପ୍ରଭୃତିଙ୍କ ରଚିତ କାବ୍ୟ କବିତାର ଜଣେ କୁଶଳୀ ବ୍ୟାଖ୍ୟାକାର ରୂପେ ଗଞ୍ଜାମରେ ସୁଖ୍ୟାତି ଲଭି କରିଥିଲେ । ଏଣୁ ଭଞ୍ଜ ଜୟନ୍ତୀ, କବିସୂର୍ଯ୍ୟ ଜୟନ୍ତୀ, କୃଷ୍ଣସିଂହ ପ୍ରଭୃତି କବିମାନଙ୍କ ଜୟନ୍ତୀ ଉତ୍ସବକୁ ଆମନ୍ତ୍ରିତ ହୋଇ ଶ୍ରୋତୃବର୍ଗଙ୍କୁ ତାଙ୍କ ବିଦ୍‌ବତ୍ତା ଓ ବାଗ୍ମିତା ଦ୍ୱାରା ମନ୍ତ୍ରବନ୍ଦ୍ର ମୁଗ୍‌ଧ କରି ପାରୁଥିଲେ । ସେ ରସିକାଗ୍ରଗଣ୍ୟ ଥିଲେ । ତାଙ୍କର ସୁନ୍ଦର ସୁଠାମ ଶରୀର, ସୁଲଳିତ କଣ୍ଠ । ଅଟ୍‌ଟିଳ ବାଦ୍‌-ବିତ୍ତୃଷା ତାଙ୍କର ପ୍ରତିଭାମୟ ଜୀବନକୁ ଗୌରବରେ ମଣ୍ଡିତ କରିଥିଲା । ତାଙ୍କର ବୁଦ୍ଧି ଦୀପ୍ତ କପାଳ, ଦୀର୍ଘକାୟ ଗୌରବର୍ଣ୍ଣ ଅଙ୍ଗଶ୍ରୀ, ଆଜାନୁଲମ୍ବିତ ବାହୁ, ସମ୍ମୋହନ ନୟନ ତାଙ୍କ ବ୍ୟକ୍ତିତ୍ୱକୁ ଜନ ସମାଜକୁ ବିଶେଷ ଆକୃଷ୍ଟ କରିପାରିଥିଲା । ସର୍ବୋପରି ତାଙ୍କର ମିଷ୍ଟାଳାପ ଓ ମାନବ ପ୍ରୀତି ତାଙ୍କୁ ଅଜାତଶତ୍ରୁ ଆସନରେ ଆସୀନ କରି ପାରିଥିଲା ।

କବି ଦୀର୍ଘ ୫୦ ବର୍ଷ କାଳ ନିରବଚ୍ଛିନ୍ନ ଭାବେ ସାହିତ୍ୟ ସାଧନା କରି ୭୮ ବର୍ଷ ବୟସରେ ୧୯୬୩ ମସିହାରେ ନିଜ ବାସଭବନସ୍ଥିତ ରସିକ-ରାଜ ମନ୍ଦିରାଶ୍ରମରେ ବ୍ରଜପ୍ରାପ୍ତ ହେଲେ । ତାଙ୍କର ତିରୋଭାବରେ ଗଞ୍ଜାମର ସାହିତ୍ୟ ଗଗନରୁ ଏକ ଦୀପ୍ତିମନ୍ତ ନକ୍ଷତ୍ର ଖସିପଡ଼ିଲା ।

# କବି ସାରଥି ଦାସ

କବି ସାରଥି ଦାସ ୧୮୮୨ ମସିହାରେ ଏକ ଶ୍ରୋତ୍ରୀୟ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ରଘୁନାଥ ଦାସ । କିନ୍ତୁ ସେ ତାଙ୍କର ଦତ୍ତକ ପିତା ସନ୍ୟାସୀ ଦାସଙ୍କ ଦ୍ୱାରା ଲାଳିତପାଳିତ ହୋଇଥିଲେ । ତାଙ୍କର ଶିକ୍ଷା ଓ ଯୋଗ୍ୟତା ଅତି ଅଳ୍ପ ହୋଇଥିଲେ ମଧ୍ୟ ବାଲ୍ୟକାଳରୁ ତାଙ୍କଠାରେ ନୈସର୍ଗିକ କବି ପ୍ରତିଭାର ଉନ୍ମେଷ ଦେଖାଦେଇ ଥିଲା । ପ୍ରସିଦ୍ଧ ଇଂରେଜ କବିଙ୍କ ଭାଷାରେ " **Poets are born but not made** " ଅର୍ଥାତ୍ ଯେଉଁମାନେ କବି ଅଛନ୍ତି ସେମାନେ ଐଶ୍ୱରିକ କବି ପ୍ରତିଭା ନେଇ ଜନ୍ମ ଗ୍ରହଣ କରିଥାନ୍ତି ଆଉ କେତେକଙ୍କ ମତରେ ମନ୍ତ୍ର ସାଧନା ବଳରେ ଦୈବୀ କୃପାରୁ କେତେକ ବ୍ୟକ୍ତି ଅସାଧାରଣ କବିତ୍ୱ ଶକ୍ତିର ଅଧିକାରୀ ହୋଇଥାନ୍ତି । କବିଙ୍କ କନିଷ୍ଠ ଭ୍ରାତାଙ୍କ ଠାରୁ ଜଣାଯାଏ ଯେ, ସେ ପ୍ରତିଦିନ ସ୍ନାନ ପରେ ଦେବୀଙ୍କ ଫଟୋ କାନ୍ଥରେ ଲଟକାଇ ଫଟୋ ତଥା ଦେବୀଙ୍କ ମସ୍ତକରେ ଏକ ମନ୍ଦାର ପୁଷ୍ପ ଚଢ଼ାଇ ନିଜର ଦୁଇଗୋଟି ଗୋଡ଼ ଊର୍ଦ୍ଧ୍ୱ କରି କାନ୍ଥରେ ଭରାଦେଇ ମୁଣ୍ଡ ତଳକୁ ରଖି କିଛି ସମୟ ମନ୍ତ୍ର ସାଧନା କରିବା ପରେ ଗ୍ରନ୍ଥ ରଚନାରେ ହାତ ଦିଅନ୍ତି । ଏଣୁ ଦୈବଶକ୍ତିର ପ୍ରଭାବରୁ ତାଙ୍କର କବିତ୍ୱ ଶକ୍ତିର ସ୍ଫୁରଣ ହୋଇଥିଲା ବୋଲି ସ୍ପଷ୍ଟ ଜଣାଯାଏ ।

କବିଙ୍କର ଉଭୟ-ଶାକ୍ତ ଓ ବୈଷ୍ଣବ ଧର୍ମ ପ୍ରତି ପ୍ରଗାଢ଼ ବିଶ୍ୱାସ ଥିଲି । ସେ ଜଣେ ସ୍ମାର୍ତ୍ତ ବୈଦିକ କୋଟିର ବ୍ରାହ୍ମଣ ଥିଲେ ମଧ୍ୟ ବୈଷ୍ଣବ ପୀଠ ପୁରୀ ଗଙ୍ଗାମାତା ମଠ ମହନ୍ତଙ୍କ ଠାରୁ ମନ୍ତ୍ରୋପଦେଶ ଗ୍ରହଣ କରିଥିଲେ । କବି ଅତ୍ୟନ୍ତ ଗରିବ ଥିଲେ । ଏଣୁ ରାଜା ମଦନମୋହନଙ୍କ ପୃଷ୍ଠ-ପୋଷକତା ଲଭିକରି ବହୁ ଛନ୍ଦ, ଚୌପଦୀ ଓ ଜଣାଣ ଲେଖିବା ଅଭ୍ୟାସ କରି ଶେଷ ଜୀବନରେ ପ୍ରେମ ପଞ୍ଚାମୃତ ନାମକ ଏକ ପୌରାଣିକ କାବ୍ୟ ଶ୍ରୀମଦ୍‌ଭାଗବତରେ ଶ୍ରୀକୃଷ୍ଣ ଚରିତ ଅବଲମ୍ବନରେ ରଚନା କରିଛନ୍ତି । ଏହି ଗ୍ରନ୍ଥରେ ବିଶେଷ ଭାବରେ ଶ୍ରୀକୃଷ୍ଣଙ୍କ ଗୋପ ଓ ଦ୍ୱାରକାଲୀଳାର ଅବତାରଣା କରାଯାଇଛି । ଏଥିରେ ମୁଖ୍ୟତଃ ଶାନ୍ତ, ସଖ୍ୟ, ଦାସ୍ୟ, ବାତ୍ସଲ୍ୟ ଓ ଶୃଙ୍ଗାର ଏହି ପଞ୍ଚବିଧ ରସ ବା ପ୍ରେମ ଭକ୍ତି ମୂଳକ ଚରିତ ବର୍ଣ୍ଣିତ ହୋଇଥିବାରୁ କବି ଏହାର ନାମ ରଖିଛନ୍ତି "ପ୍ରେମପଞ୍ଚାମୃତ" । ଏହି ଗ୍ରନ୍ଥ ଦୁଇ ଭାଗରେ ୧୯୭୧ ମସିହାରେ ମୁଦ୍ରିତ ଆକାରରେ ପ୍ରକାଶ ପାଇଛି । କବି ଏକାଧାରରେ ଜଣେ କୃଷ୍ଣଭକ୍ତ ଓ ଦେବୀଭକ୍ତ ଥିବା ତାଙ୍କ ପୁରାଣରୁ ଜଣାଯାଏ ।

ନମୋ ନାରାୟଣଙ୍କ ମାନସ ମୋହିନୀ
ନମୋ ମହାମାୟା ଗୋ ବିପଞ୍ଚିଧାରିଣୀ
ସାରଥି ଦାସ ତୁମ୍ଭ ଗୁଣକୁ ଗାୟନ
କରିବାକୁ ଭାବୁଛି ଦିଅ ଦିବ୍ୟଜ୍ଞାନ ।

ଏହି ଗ୍ରନ୍ଥରେ ପ୍ରାତଃ ସାୟଂକାଳ ଶବରୀ ସନ୍ଧ୍ୟା ଓ ଆଶ୍ରମ ବର୍ଣ୍ଣନାରେ ଭାଙ୍ଗୀୟ ସାହିତ୍ୟ ଛଟା ଫୁଟିଅଛି । ଏହି ବର୍ଣ୍ଣନା ଅତ୍ୟନ୍ତ ମନୋରମ ଓ ସ୍ୱଭାବୋକ୍ତି ପୂର୍ଣ୍ଣ । ଏହି ବିଷୟ ଗୁଡ଼ିକ ସୁନ୍ଦର ପଦାବଳୀରେ ଆଳଂକାରିକ ରୀତିରେ ବିମଣ୍ଡିତ ହୋଇ ପୁରାଣର ଗୌରବ ବର୍ଦ୍ଧନ କରିପାରିଛନ୍ତି । ରାତ୍ରି ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି--( ଚତୁର୍ଦ୍ଦଶ ଅଧ୍ୟାୟ )

ଏହି କାଳେ ରଜନୀ ନାୟୀ ହୋଇ ବେଶ
ବାହାରିଲା ଚନ୍ଦ୍ରଙ୍କୁ ଦେବାକୁ ସୁରସ
ଅଳକା ପାଟି ତାରାମାନ ଶିରେ ଧରି
କଳାଶାଢ଼ୀ ପିନ୍ଧିଲା ରଜନୀ ସୁନ୍ଦରୀ
ଅଟଇ ତ ସହଜେ ନିଶାକର ରାଣୀ
ଜଳାଇଲା ଝୁମ୍ପୁ ଦିବ୍ଯୁଡି ଦୀପ ଶ୍ରେଣୀ ।

କବି ସ୍ରୀଷ୍ଟ ପୁରାଣରେ ପ୍ରକୃତିଠାରେ ବ୍ୟକ୍ତିତ୍ୱ ଆରୋପ କରି ପ୍ରାକୃତିକ ବାତାବରଣ ଜୀବନ୍ତ ପରିଚୟଣ କରିଛନ୍ତି । ଏହି ଋତୁ ବର୍ଣ୍ଣନା ଗୁଡ଼ିକ ମନୋଜ୍ଞ ଓ ଆଲଂକାରିକ ଛଟାରେ କରାଯାଇଛି । ଅନ୍ୟାନ୍ୟ ଋତୁର ସୌନ୍ଦର୍ଯ୍ୟ ସହ ବର୍ଷା ଓ ଶରତ୍‌କାଳର ବର୍ଣ୍ଣନା କବି କପରି ୨୧ ଅଧ୍ୟାୟରେ କରିଛନ୍ତି ସେଥିରୁ କିଯୁତ୍ ଅଂଶ ଦିଆଗଲା । ଏହି ବର୍ଣ୍ଣନାରେ ସ୍ଥାନେ ସ୍ଥାନେ କବି ତାଙ୍କର ବାସ୍ତବ ଅନୁଭୂତିର ଆଲେଖ୍ୟ ପ୍ରଦାନ କରିଛନ୍ତି ।

ନିଷ୍କଳଙ୍କ ବସ୍ତୁଙ୍କ ପରି ମେଘ ରୂପ
କଲା ଅଙ୍ଗେ ରଜନୀ ବସନ ସ୍ୱରୂପ
ପୁଣି କାକକାର ପରାଏ ମେଘ ହେଲା
କାଞ୍ଚନ ମାଳା ଭୁଲି ଚଞ୍ଚଳା କରେ ଖେଳା ।
କେତେବେଳେ ନୀଳଶାଟୀର ପରିଧାନ
ଦିଶେ ଇନ୍ଦ୍ରଧନୁ ଚଉକ ଶୋଭାବନ ।
ବକାଳୀ ହଂସାବଳୀ ଶାଢ଼ୀରେ ପଡ଼ିଥିଲା
ଶ୍ରୀକୃଷ୍ଣ ପରିଧାନ କରିବେ ଭାବିଲା ।

× × ×

ନଦୀମାନେ ଘନ ରସରେ ପୂର୍ଣ୍ଣ ହେଲେ
ନାବିକମାନେ ଧନ ଉପାର୍ଜ୍ଜନ କଲେ ।

× × ×

ମୂଳିଆ ମାନେ ମୂଳ ଖାଇ ସୁଖୀ ହେଲେ
କେ ଡାକିଲେ ପାଇଛି ଅଛୁ ହେ ବୋଇଲେ ।

× × ×

ଶରତ କାଳ ବ୍ୟାଘ୍ର ଆସିବାର ଦେଖି
ବରଷା ମୃଗ ପଳାଇଲା ହୋଇ ଦୁଃଖି ।
ପାପୀଜନେ ହରି ଭଜନେ ନିର୍ମଳ
ହୋଇପରି ହେଲେ ସେ ଜଳଧରକୂଳ ।

ଋତୁଚୟ ବର୍ଣ୍ଣନା ବର୍ଣ୍ଣନା ଛଡ଼ା, ଯମୁନା, ସରସ୍ୱତୀ ଓ ଉପବନ ବର୍ଣ୍ଣନାରେ କବିଙ୍କ କଳ୍ପନାର ବିଳାସ ବହୁ ଉଚ୍ଚକୁ ଟେକିଥିବା ମନେହୁଏ । ଏହି ସ୍ଥଳଗୁଡିକ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କର ପ୍ରେମ ଲୀଳାସ୍ଥଳୀ ହୋଇଥିବା ହେତୁ କବି ଏଗୁଡ଼ିକୁ ରସାନୁକୂଳ କରିପାରିଛନ୍ତି । କବି ସରସ୍ୱତୀ ନଦୀକୁ ଏକ ନାୟିକାରୂପେ କପରି ବର୍ଣ୍ଣନା କରିଛନ୍ତି ତାର କିଛି ଅଂଶ ଉଲ୍ଲେଖ କରିଗଲି ।

ଶୋଭିବନ ବଶଇ ଶାରଦା ତଟିନୀ
ନାରୀପରି ଆଡ଼ମ୍ବରକୁ ଅଛି ଘେନି ।
ତଟିନୀ ଅବଳାର ଚକ୍ରବାକ ସ୍ତନ
କଳେନ୍ଦୀବର ତାର ହୋଇଛି ନୟନ ।
କୁମୁଦ ହାସପରି ଦଶଇ ଉପମା
ଶିଆଳୀ ଚିକୁରରେ ଦଶଇ ସୁଷମା ।

ପଙ୍କଜ ମୁଖ ତା ମୃଣାଳ ଚଉବାହା
ପୁଳିନ ଜାନୁରକ୍ତ ବର୍ଣ୍ଣଗୁରୁଦେହା ।
ପାଦ କଚ୍ଛପର ଯେ ଶୋଭାକୁ ପାଉଛି
ଗଙ୍ଗାର ଗୁଣେ ବଙ୍କ ହୃଦୟ ହୋଇଛି ।

ସୁନ୍ଦର ଉପମା ସହିତ ମଧୁର ଦୋବଳୀ ବର୍ଣ୍ଣନାକୁ ସରସ ଓ ସୁନ୍ଦର କରିପାରିଛି । ଶ୍ରୀକୃଷ୍ଣଙ୍କ ଦ୍ୱାରକାରେ ବିବିଧ ଐଶ୍ୱର୍ଯ୍ୟଶାଳୀ ହୋଇ ଯଶସ୍ୱୀ ହୋଇଥିଲେ ମଧ୍ୟ ପ୍ରିୟବନ୍ଧୁ ସୁଦାମା ପ୍ରତି ତାଙ୍କର ଐକାନ୍ତିକ ସ୍ନେହ ଥିଲା । ଏହି ସଖାଭାବ ସେ ସୁନ୍ଦର ରୂପେ ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣଙ୍କ ଅନ୍ତଃପୁରରେ ସୁଦାମା ପ୍ରବେଶ କଲାପରେ ସେ ମିତ୍ରଙ୍କୁ ଉପଯୁକ୍ତ ଭାବେ ଅଭ୍ୟର୍ଥନା ଓ ସତ୍କାର କରିଛନ୍ତି । ଏଥିରେ ହିନ୍ଦୁର କୌଳିକ ଶିଷ୍ଟାଚାର ଓ ବ୍ୟବହାରର ଚିତ୍ର ସୁନ୍ଦର ଭାବେ ପ୍ରକାଶ ପାଇଛି ।

ମିତ୍ରଙ୍କୁ ଦେଖି ହରି ପଲଙ୍କୁ ଉଠିକରି
ଚରଣକୁ ଧୋଇଲେ ଧରି ସୁନାଝରି ।
ପଟ୍ଟବସ୍ତ୍ର ଧରିଣ ପାଦ ପୋଛି ଦେଲେ
ରୁକ୍ମିଣୀ ଗନ୍ଧ ପୁଷ୍ପ ଦେଇଣ ପୂଜିଲେ ।

× × ×

ଷୋଡ଼ଅର୍ଘ୍ୟେ ପାଦ-ପଙ୍କଜ ବିପ୍ରଙ୍କର
ପୂଜିଣ ଚରଣରେ କଲେ ନମସ୍କାର ।

ରାସକ୍ରୀଡ଼ା ସମୟରେ ଗୋପାଙ୍ଗନାଗଣ ବିଶ୍ୱବ୍ରହ୍ମାଣ୍ଡର ପ୍ରତ୍ୟେକ ବସ୍ତୁରେ ପରଂବ୍ରହ୍ମଶ୍ରୀକୃଷ୍ଣଙ୍କ ସ୍ୱରୂପକୁ ଅନୁଭବ କରୁଥିଲେ । କବି ଏହି ବିଷୟ ଅତ୍ୟନ୍ତ ମନୋରମ ଭାଷାରେ ବର୍ଣ୍ଣନା କରିଛନ୍ତି । ଏକତ୍ରିଂଶ ଅଧ୍ୟାୟରେ ଭଗବାନ କୃଷ୍ଣଙ୍କର 'ଗର୍ବଗଞ୍ଜନ' ନାମରେ ସାର୍ଥକତା

ପ୍ରତିପାଦିତ ହୋଇଛି । ପ୍ରେମମୁଗ୍ଧା, ପ୍ରେମଗର୍ବିତା ବୃନ୍ଦାବତୀ ରସକେଳି-ପରେ ଆଶ୍ୱାସ ଛଳରେ ଚାଲିବା ପାଇଁ ଅକ୍ଷମତା ପ୍ରକାଶ କରିବାରୁ ଗର୍ବଗଞ୍ଜନ ବାନା ଭଗବାନ ବୃନ୍ଦାବତୀଙ୍କୁ କାନ୍ଧରେ ବସାଇ ତଳେ କରିଡ ଘୋର ବନସ୍ତ ମଧ୍ୟରେ ଛାଡିଦେଇ ଅନ୍ତର୍ହିତ ହୋଇଗଲେ । ଭୟବିହ୍ୱଳିତ ବୃନ୍ଦାବତୀ ଘୋର ଅନ୍ଧକାର ଭିତରେ ବନଭିତରେ କୃଷ୍ଣଙ୍କୁ ଅନ୍ୱେଷଣ କରି ରୋଦନ କରି ଶରଣାପନ୍ନ ହେବାରୁ ଶ୍ରୀକୃଷ୍ଣ ଭକ୍ତର ଗର୍ବଗଞ୍ଜନ କରି ତାଙ୍କୁ ରକ୍ଷା କରିଥିଲେ ।

ବୃକ୍ଷଙ୍କ ଛାୟାଦେଖି ଉରନ୍ତି ତରୁଣୀ
ହାକୃଷ୍ଣ ବୋଲି କାନ୍ଦି ଲୋଟନ୍ତି ଧରଣୀ ।
ମରଣକୁ ବରଣ କରିବା ଭାବ କରି
ଉରି ରହିଲେ ହରି ପାଦଧ୍ୟାନ କରି ।

ପ୍ରୟୋଜନରେ ଅର୍ଥାତ୍ ନିଜର କାମଲାଳସା ଚରିତାର୍ଥ କରିବା ପାଇଁ ପ୍ରେମିକଲେ ପ୍ରେମିକା ପ୍ରତି କୃଷ୍ଣ ଗୋପୀମାନଙ୍କୁ ଘୋର ଅରଣ୍ୟରେ ଛାଡି ଗଲାପରି ବ୍ୟବହାର କରନ୍ତି । ପୁଣିମନରେ ଗର୍ବକଲେ ବୃନ୍ଦାବତୀଙ୍କୁ କାନ୍ଧରେ ବସାଇ ତଳେ କରିଡ ଦେଇ ଘନ ଅନ୍ଧକାରପୂର୍ଣ୍ଣ ବନରେ ଏକାକୀ ଛାଡିଦେଲା ପରି ବ୍ୟବହାର କରନ୍ତି ।

ରାଗାତ୍ମିକା ଭକ୍ତି ମାଧ୍ୟମରେ ରାସକ୍ରୀଡ଼ାରେ ପରମାତ୍ମାଙ୍କ ସହିତ ଜୀବାତ୍ମାର ଅପୂର୍ବ ମିଳନ କବି କରି ପାରିଛନ୍ତି । ଏଣୁ ଯେଉଁମାନେ କୃଷ୍ଣଙ୍କୁ କାମୁକ ଓ ବ୍ରଜାଙ୍ଗନା ଗୋପୀମାନଙ୍କୁ ବିଳାସୀ ଭାବେ ଚିତ୍ରଣ କରୁଛନ୍ତି । 'ଶୁକଦେବଙ୍କ' ମୁଖରେ କବି ଗୋପୀମାନଙ୍କୁ ନିଷ୍କାମ ଭକ୍ତ ଓ କୃଷ୍ଣଙ୍କୁ ପର'ବ୍ରହ୍ମରୂପେ ପ୍ରତିପାଦିତ କରିଛନ୍ତି ।

କହନ୍ତି ଶୁକଦେବ ଶୁଣ ମହାରାଜା
ବଡ଼ଲୋକମାନଙ୍କ ବିପରୀତ ମଜା ।
ସେମାନେ ଯା କରନ୍ତି ନକରନ୍ତି କେହି
ବିଶେଷରେ କୃଷ୍ଣତ ଜଗତ ଗୋସାଇଁ ।
ସାଗରେ ଅଳଆ ପଡ଼ଣ ମଳନ
ହୋଇବକି କହହେ ହସ୍ତିନା ରାଜନ ?
ଅଗ୍ନିଦେବ ଜଗତେ ସବୁତ ଖାଆନ୍ତି
ଶୁଣିଛକି ତାଙ୍କର ହଜିଛି ଜାତି ଜ୍ୟୋତି ।
× × ×
ଶ୍ରୀକୃଷ୍ଣ ପରନାରୀ ହରିଲେ ବୋଲିକରି
ଯେ କହିବ ପାତକ ହୋଇବ ତାହାରି
କୃଷ୍ଣଙ୍କର ମହିମାର ତ ନାହିଁ ଅନ୍ତ
ଏଣୁ ତାଙ୍କ ନାମ ହୋଇଛି ଅନନ୍ତ ।

ରାଧିକା ଅଂଶରେ ଯେତେ ଗୋପୀ ଜନ୍ମ ହୋଇଛନ୍ତି ସେମାନେ କୃଷ୍ଣଙ୍କର ଜୀବନ ସ୍ୱରୂପ । ଜୀବ ପରମରେ ପ୍ରବେଶ କଲାପରି ଗୋପୀ ଓ କୃଷ୍ଣଙ୍କର ସମ୍ବନ୍ଧ ଜୀବ ଓ ପରମ ଏକ ହେଲେ ମଧ୍ୟ ଭୋଗ ସଂଯୋଗ ଭିନ୍ନ ଭିନ୍ନ ଅଟେ ।

ପ୍ରେମ ପଞ୍ଚାମୃତ ବ୍ୟତୀତ କବି ବ୍ୟାଘ୍ରପୁରାଣ ମଧ୍ୟ ରଚନା କରିଥିଲେ । ଏହି ପୁରାଣ ଅପ୍ରକାଶିତ ଅବସ୍ଥାରେ ପଡ଼ି ରହିଛି ।

ସାମାଜିକ ଓ ସାହିତ୍ୟିକ ଦୃଷ୍ଟିକୋଣରୁ ଦେଖିଲେ କବିଙ୍କ ପ୍ରେମ-ପଞ୍ଚାମୃତ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । କବି ପାଣ୍ଡିତ୍ୟର ସହିତ କଳ୍ପନାକୁ ଯୋଗକରି ଏହି ସୁନ୍ଦର ପୁରାଣ ରଚନା

କରିଛନ୍ତି ରାଜା ମଦନ ମୋହନଙ୍କ ଅନୁକମ୍ପା ଓ ପ୍ରୋତ୍ସାହନରୁ । ଏଣୁ କବି ତାଙ୍କ ପୁରାଣର ଶେଷ "ପ୍ରାର୍ଥନା ଅଧ୍ୟାୟ"ରେ ଲେଖିଛନ୍ତି ।

ଶ୍ରୀ ମଦନମୋହନ କେଶରୀ ନୃପଙ୍କର
ଆଶାରେ ରହିଥାଏ ମୁହିଁ ନିରନ୍ତର ।
ସେ ନୃପଙ୍କର ଅନ୍ନ ଜଳ ପାଇ କରି
ଏ ଗ୍ରନ୍ଥ ମୁଁ ବୋଇଲି ଶ୍ରୀକୃଷ୍ଣଙ୍କୁ ସ୍ମରି ।

କବି ଏହି ପୁରାଣ ୧୮୩୫ ମସିହାରେ ସମାପ୍ତ କରି ୧୯୪୪ ମସିହାରେ ଇହଧାମ ତ୍ୟାଗ କରିଥିଲେ ।

# ଭୁବନେଶ୍ୱର ମିଶ୍ର କବି ବଲ୍ଲଭ

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଶାର ଯେଉଁ ବିଶିଷ୍ଟ ସାହିତ୍ୟିକ ମାନେ ସେମାନଙ୍କର ଅନ୍ତଃତମସ୍ପର୍ଶୀ ଲେଖନୀ ଚାଳନାରେ ଓଡ଼ିଆ ସାହିତ୍ୟ ଓ ଭାଷାକୁ ସମୃଦ୍ଧିଶାଳୀ କରି ଯାଇଛନ୍ତି ସେମାନଙ୍କ ମଧ୍ୟରେ ଧରାକୋଟ ଅନ୍ତର୍ଗତ ଶ୍ରୀ ରାମଚନ୍ଦ୍ରପୁର ଶାସନ ନିବାସୀ ସ୍ୱର୍ଗୀୟ ଭୁବନେଶ୍ୱର ମିଶ୍ର କବି ବଲ୍ଲଭ ଅନ୍ୟତମ । ସ୍ୱର୍ଗୀୟ ମିଶ୍ର ତା ୧୩-୭-୧୮୮୯ ରେ ଜନ୍ମ ଗ୍ରହଣ କରି ୭୫ ବର୍ଷ ଜୀବିତ ରହି ତା ୧୧-୮-୧୯୬୪ ରେ ଅମରଧାମର ଯାତ୍ରୀ ହୋଇଥିଲେ । ପ୍ରାଥମିକ ଶିକ୍ଷା ସମାପନ ପରେ ସେ ବ୍ରହ୍ମପୁରସ୍ଥ ଉଚ୍ଚ-ଇଂରେଜୀ ବିଦ୍ୟାଳୟରେ ଅଧ୍ୟୟନ କରି ଏସ୍. ଏଲ୍. ସି. ପରୀକ୍ଷାରେ ୧୯୦୮ ମସିହାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ଧରାକୋଟ ମଧ୍ୟଇଂରେଜୀ ବିଦ୍ୟାଳୟରେ କିଛି ସମୟ ଶିକ୍ଷକତା କରି ଶିକ୍ଷକ ତାଲିମ ପାଇବା ପାଇଁ

ରାଜମହେନ୍ଦ୍ରୀସ୍ଥିତ ଗୁରୁ ତାଲିମ କେନ୍ଦ୍ରରେ ତାଲିମ ପ୍ରାପ୍ତ ହୋଇଥିଲେ । ତାଲିମ ଶେଷରେ ପୁନର୍ବାର ଧରାକୋଟ ମଧ୍ୟ ଇଂରେଜୀ ବିଦ୍ୟାଳୟରେ ସହକାରୀ ଶିକ୍ଷକ ରୂପେ ନିଯୁକ୍ତି ପାଇଥିଲେ । ସେ କିଛିକାଳ ବୋଇରାଣୀ (କବିସୂର୍ଯ୍ୟନଗର) ମଧ୍ୟ ଇଂରେଜୀ ବିଦ୍ୟାଳୟରେ କାମ କରି ତତ୍କାଳୀନ ରେନ୍‌ସଫୋର୍ଡ ସାହେବଙ୍କ ସୁପାରିଶକ୍ରମେ ଶିକ୍ଷା ବିଭାଗୀୟ ପରିଦର୍ଶକ ରୂପେ ପୁରୁଷୋତ୍ତମପୁରରେ ଅବସ୍ଥାପିତ ହେଲେ । ସେଠାରେ ଦୁଇବର୍ଷ କାମ କରିବା ପରେ ଧରାକୋଟର ଗୁଣଗ୍ରାହୀ, ବିଦ୍ୟୋତ୍ସାହୀ ଓ ଶିକ୍ଷାପ୍ରେମୀ ରାଜା ମଦନମୋହନ ସିଂହ ଦେଓ ତାଙ୍କର ସାହିତ୍ୟ ରସିକତା ଓ କାର୍ଯ୍ୟଦକ୍ଷତାରେ ମୁଗ୍‌ଧ ହୋଇ ତାଙ୍କ ପ୍ରତିଷ୍ଠିତ ବିଦ୍ୟାଳୟରେ ଶିକ୍ଷକରୂପେ ଯୋଗଦେବା ପାଇଁ ପୁନର୍ବାର ଅନୁରୋଧ କରିବାରୁ ସେ ପରିଦର୍ଶକ କାମରୁ ଅବ୍ୟାହତି ନେଇ ତାଙ୍କ ସ୍କୁଲରେ ୧୯୨୧ ଖ୍ରୀଷ୍ଟାବ୍ଦରେ ଯୋଗଦେଇ ସେହି ଦିନଠାରୁ ଧାରାବାହିକ ରୂପେ ଅଧ୍ୟାପନା କାର୍ଯ୍ୟରେ ରତରହି ୧୯୪୮ ଖ୍ରୀଷ୍ଟାବ୍ଦରେ କର୍ମକ୍ଷେତ୍ରରୁ ଅବସର ଗ୍ରହଣକଲେ ।

ସ୍ୱର୍ଗୀୟ ମିଶ୍ର ଦୀର୍ଘ ତ୍ରିଂଶବର୍ଷ ଶିକ୍ଷକ ଓ ଶିକ୍ଷାପରିଦର୍ଶକ ରୂପେ କାମକରି ଏ ଜିଲ୍ଲାର ଶିକ୍ଷା, ଶିକ୍ଷକ, ଶିକ୍ଷାୟତନ ଓ ସମାଜର ପ୍ରଭୂତ ଉନ୍ନତି କରିବା ସଙ୍ଗେ ସଙ୍ଗେ ନିରବଚ୍ଛିନ୍ନ ସାହିତ୍ୟ ସାଧନାରେ ରତରହି ବହୁ ମୌଳିକ ଗ୍ରନ୍ଥରଚନା ସମେତ ପ୍ରଖ୍ୟାତ ସଂସ୍କୃତ କବି କାଳିଦାସ ଓ ଇଂରେଜ କବି ଓ ଦାର୍ଶନିକମାନଙ୍କ ବହୁ ଗ୍ରନ୍ଥ ଓ ନୀତି ସମ୍ବଳିତ ଉପଦେଶାବଳୀ ବାକ୍ୟ ଗୁଡ଼ିକୁ ଓଡ଼ିଆରେ ଗଦ୍ୟ ଓ ପଦ୍ୟାନୁବାଦ କରି ଓ ସେ ଗୁଡ଼ିକୁ ମୁଦ୍ରିତ ଆକାରରେ ପ୍ରକାଶ କରି ସାହିତ୍ୟ ମନ୍ଦିରର ମଣିଶାଳକୁ ସୁରଭିତ କରି ପାରିଛନ୍ତି । ସେ ତାଙ୍କର କର୍ମମୟ ଜୀବନରେ କେବଳ ଛାତ୍ରମାନଙ୍କୁ ବିଦ୍ୟାଳୟରେ ଶିକ୍ଷାଦେଇ ନାହାଁନ୍ତି ଅଧିକନ୍ତୁ ସେ ସମଗ୍ର ମାନବ ସମାଜକୁ ଶିକ୍ଷାଦେଇ ପାଇଛନ୍ତି ତାଙ୍କ ନୀତି ଗର୍ଭକ ମୌଳିକ କବିତା ଭିତରେ । ତାଙ୍କ କବିତା ଭିତରେ ଏହି ଶିକ୍ଷକ ସୁଲଭ ଦୃଷ୍ଟିଭଙ୍ଗୀ ପରିଦୃଷ୍ଟ ହୁଏ,

ଫଳରେ ଅନ୍ତରର ସ୍ୱତଃ ସ୍ଫୁର୍ତ୍ତି ଆବେଗ ଅପେକ୍ଷା ପ୍ରଜ୍ଞାବାଦ୍ର ଭାବେ ସଭାର ପ୍ରାଚୁର୍ଯ୍ୟହେତୁରେ କେତେକ ସ୍ଥଳରେ ତାଙ୍କ କବିତା ନୀରସ ହୋଇ ପଡ଼ିଛି ।

ସେ ଥିଲେ ଏ ଯୁଗର ସାହିତ୍ୟରଥୀ, ଶିକ୍ଷକ ପୁଣି ମଣିଷକୁ ଭଲପାଉଥିବା ଦରଦୀ କବିଟିଏ । କବିତା କଲମ ଗାରରେ ଅବାଟରେ ଯାଉଥିବା ପୁଅକୁ ବାଟକୁ ଆଣିବା ପାଇଁ, ସମାଜ ପଥଭ୍ରାନ୍ତ ହେଲେ ତାକୁ ଠିକ୍ ଭାବରେ ଚେତାଇ ଦେବାପାଇଁ ଓ ପ୍ରତ୍ୟେକ ବ୍ୟକ୍ତିକୁ ଶ୍ରମର ମର୍ଯ୍ୟଦା ବିଷୟରେ ସଚେତନ କରାଇବା ପାଇଁ ପ୍ରାନମିନ ବଚନରେ କପରି ପ୍ରୟାସ କରିଛନ୍ତି ଦେଖାଯାଉ ।

ପରିଶ୍ରମ-ଦେବ' ଯିବେ ଯେବେ ଘରୁ ତୋ କବାଟ–ବାଟ ଦେଇ
'ଦାରିଦ୍ର୍ୟ 'ଦାନବ' ପ୍ରବେଶିବ ଘର ଭିତରେ ଗବାକ୍ଷ ଫେଇ
ପରିଶ୍ରମ ଯାର ମନ୍ଦିରେ ବିରାଜେ ଦିବସ ଶର୍ବରୀ ସାରା
'ଦାରିଦ୍ର୍ୟ ଦାନବ' ଲେଶ ପରବେଶ–କରିବା ନଥାଏ ଦ୍ୱାରା ।

ଇଂରେଜୀ ଆପ୍ତବାକ୍ୟ – When industry goes out of the door, poverty comes in at the window ( ପ୍ରା. ମି. ୩ୟ ଭାଗ )

ଓଡ଼ିଆର ନିତିଦିନିଆ ଜୀବନର ଭାଷାରେ ଓଡ଼ିଆଘରର ଚଳଣି, କମ୍ବଦନ୍ତୀ ଓ ଜୀବନଧାରାର ପ୍ରକୃତ ରୂପକୁ ଚିହ୍ନି ବହୁ ତଗଡ଼ମାନୀ ଆମ ପରିଚିତ ବୁଝିଲା ଭାଷାରେ ତାଙ୍କ "ମହିଳା ମଣିଙ୍କ ମୁଖମଧୁ ମନ୍ଦାକିନୀ ଧାରା" ବହିରେ କପରି ଉଲ୍ଲେଖ କରିଛନ୍ତି ତାର ଦୁଇଟି ଉଦାହରଣ ଦିଆଗଲା ।

୧) ଏରେଠୁ ବନ୍ଧକି କାଣ୍ଡେ
ଗଲା ବ୍ରହ୍ମପୁର ଦାଣ୍ଡେ
ଆସିକା ଲୋକେ ସାକ୍ଷୀ
କାହାର ସହସ୍ର ଆଖି ?

୨) ନାଲି ଟହ ଟହ ଗୋଲାପଫୁଲ
ସବୁଦିନ ଏକ ରହିବ ?
କ୍ଷୀରରେ ଧୋଇଲେ ଖଣ୍ଡରେ ମୋହିଲେ
'ନିମ' କି ମଧୁର ହୋଇବ ?

ଇଂରେଜୀ, ଓଡ଼ିଆ, ସଂସ୍କୃତ ଓ ତେଲୁଗୁ ଭାଷାରେ ତାଙ୍କର ଅସାଧାରଣ ଜ୍ଞାନ ଥିଲା । ଶିକ୍ଷା, ପାହିଯାଏ କିନ୍ତୁ ପୁସ୍ତକ ପାଠ ଓ କବିତାଲେଖା ସରେ ନାହିଁ । ମାତୃଭୂମି, ମାତୃଭାଷା ଓ ସାହିତ୍ୟର ପାଇଁ ଅହରହ ଚିନ୍ତା କରୁଥିବା ବ୍ୟକ୍ତି ବିଭିନ୍ନ ଭାଷାର ଉଚ୍ଚକୋଟୀର ରଚନାକୁ ଆପଣା ଭାଷାରେ ଅନୁବାଦ କରିଛନ୍ତି । ମହାକବି କାଳି-ଦାସଙ୍କର କୁମାର ସମ୍ଭବ ଓ ରଘୁବଂଶ ସଂସ୍କୃତ ସାହିତ୍ୟର ସୌରଭ ଓ ସୌନ୍ଦର୍ଯ୍ୟ ଯେପରି ଚତୁର୍ଦ୍ଦିଗ ବିକିରଣ କରିଅଛି ଏହାର ଉତ୍କଳାନୁ-ବାଦ ସେପରି ସରଳ ସୁସ୍ପଷ୍ଟ ରୂପେ ପାଠକମାନଙ୍କୁ ସାହିତ୍ୟର ପବିତ୍ର ମନ୍ଦାକିନୀର ବିପୁଳ ପ୍ଲାବନରେ ବୁଡ଼ାଇ ଦେଇଛି । ମୂଳ ସଂସ୍କୃତ ଶ୍ଳୋକର ସାମଞ୍ଜସ୍ୟ ରକ୍ଷାକରି ପଦ୍ୟରେ ଭାଷାନ୍ତରିତ କରିବା ସାମାନ୍ୟ ପ୍ରତିଭା ଓ ଗବେଷଣାର ପରିଚୟସୂଚକ ନୁହେ । ପଦଲାଳିତ୍ୟ, ଶବ୍ଦ ସନ୍ନିବେଶ, ମାଧୁର୍ଯ୍ୟ ଓ ବର୍ଣ୍ଣନା ପ୍ରଭୃତିରେ କବି ବିଶେଷ କୃତ କାର୍ଯ୍ୟ ହୋଇଥିବା ପରିଲକ୍ଷିତ ହୁଏ । ମୂଳ ସଂସ୍କୃତ ଶ୍ଳୋକର ଅନୁବାଦ କିପରି କରାଯାଇଛି ତାର ଗୋଟିଏ ଦୃଷ୍ଟାନ୍ତ ଦିଆଗଲା ।

କୁବେର ଗୁପ୍ତାଂ ଦିଶ ମୁଷ୍ଣରଶ୍ମୌ ଗନ୍ତୁଂ ପ୍ରବୃତ୍ତେ ସମୟଂ ବିଲଂଘ୍ୟ
ଦିଗ୍ ଦକ୍ଷିଣା ଗନ୍ଧବହଂ ମୁଖେନ ବ୍ୟଳୀକ ନିଶ୍ୱାସ ମିବୋତ୍ସସର୍ଜ ॥

ଓଡ଼ିଆ ଅନୁବାଦ—'ଦକ୍ଷିଣ ଦିଗ' ତେଜି ଉତ୍ତରେ ପ୍ରୟାଣ
ଏହିକାଳେ ଅକାଳ କରନ୍ତି ବିବସ୍ୱାନ
'ଦକ୍ଷିଣ ଦିଗ ଯୋଷା' ସ୍ୱ-ବିଷାଦଯୁକ୍ତ
ଦୀର୍ଘଶ୍ୱାସ ବ୍ୟାଜରେ ମଳୟ ମରୁତ
ନିଜ ମୁଖରୁଁ ତେଜଇ ବିଚ୍ଛେଦ ଦୁଃଖରୁ
ଅସହ୍ୟ କରି ପତି ଗତି ଦେଖିବାରୁ ।
(କୁ. ସମ୍ଭବ. ତୃତୀୟ ଭାଗ ୨୫ ଶ୍ଳୋକ)

ଅନୁବାଦ ଏକ ଆୟାସ ସାପେକ୍ଷକଳା । ଅନୁବାଦ ପାଇଁ ଉଭୟ ଭାଷା (ମାତୃଭାଷା ଓ ଅନୂଦିତ ହେଉଥିବା ଭାଷା) ରେ ଅନୁବାଦଙ୍କର ଉପଯୁକ୍ତ ଜ୍ଞାନ ଥିବା ଆବଶ୍ୟକ କେବଳ ଗୋଟିଏ ମାତୃ-ଭାଷା ଉତ୍ତମରୂପେ ଜାଣିଥିଲେ ଅନୁବାଦ କରିବା ସହଜ ସାଧ୍ୟ ନୁହେଁ । ପ୍ରତ୍ୟେକ ଭାଷା ଏକ ସମାଜ ଓ ସଂସ୍କୃତି ସହ ଜଡ଼ିତ ହୋଇଥିବା ହେତୁ ସେହି ସମାଜ ଓ ସଂସ୍କୃତି ସମ୍ପର୍କରେ ଅନୁବାଦକର ଯଥେଷ୍ଟ ଜ୍ଞାନ ହାସଲ କରିଥିବା ଆବଶ୍ୟକ । ଏଣୁ କୃତି ଅନୁବାଦକଙ୍କୁ ମଧ୍ୟ ଏକ ପ୍ରକାର ନୂତନ ସ୍ରଷ୍ଟା ବୋଲି କୁହାଯାଇପାରେ । କବିଙ୍କ 'ଧୀରାନନ୍ଦ-ଧାରା' ଏକ ନୀତିମୂଳକ ଗ୍ରନ୍ଥ । ଏଥିରେ ଇଂରେଜୀ ସାହିତ୍ୟର ତଥା ବିଶ୍ୱର ବହୁ ମନୀଷୀଙ୍କ ଇଂରେଜୀ ଲିଖିତ ବହୁ ଆପ୍ତ ବଚନକୁ କବି ସରଳ ସଂସ୍କୃତ, ଶ୍ଳୋକ ଓ ଓଡ଼ିଆରେ ପଦ୍ୟାନୁବାଦ କରି ତାର ଭାବାର୍ଥ ସଂସ୍କୃତ ଗଦ୍ୟରେ ଉଲ୍ଲେଖ କରି ସାମାଜିକ ଜୀବନକୁ ନୀତିପୂର୍ଣ୍ଣ ତଥା ଶୃଙ୍ଖଳିତ କରିବା ପାଇଁ ଚେଷ୍ଟା କରିଛନ୍ତି । ଯଥା—

**Fair paly is a Jewel**

ସଂସ୍କୃତ—ଏକାଳଂକାର ରୂପେଣ ଶୋଭତେ ନ୍ୟାୟ ସଙ୍ଗତଃ
ବ୍ୟବହାର ଇତି ପ୍ରାହୁ ନୀତିଶାସ୍ତ୍ର ପରାୟଣାଃ ।

ଗଦ୍ୟ— ନ୍ୟାୟ୍ୟ ସଂଗତଃ ବ୍ୟବହାରଃ ଏକାଳଂକାର
ରୂପେଣ ଶୋଭତେ—

ଇତି ନୀତିଶାସ୍ତ୍ର ପରାୟଣାଃ ଆହୁଃ ।

ଓଡ଼ିଆ ପଦ୍ୟ—ଜଗତେ ନରର ନ୍ୟାୟ ବ୍ୟବହାର
ଅଟଇ ବିମଳ ତନୁ ଅଳଂକାର ।

(ଧୀରାନନ୍ଦ ଧାରା. ୩୩ ଶ୍ଳୋକ)

ଏପରି ପ୍ରାୟ ୫୦୦୦ (ପାଞ୍ଚହଜାର) ଆପ୍ତବାକ୍ୟରୁ ଅଳ୍ପ କେତେକ ମାତ୍ର 'ଧୀରାନନ୍ଦ ଧାରା' ପୁସ୍ତକରେ ସନ୍ନିବେଶିତ ହୋଇ ପ୍ରକାଶ ପାଇଛି । ଅର୍ଥାଭାବରୁ କବି ଏଗୁଡ଼ିକର ମୁଦ୍ରଣ କରିବା ପାଇଁ ତତ୍କାଳୀନ ଓଡ଼ିଶାର ଗଭର୍ଣ୍ଣର ସ୍ୱର୍ଗୀୟ କୈଳାସନାଥ କାଟ୍‌ଜୁଙ୍କୁ ଅନୁରୋଧ କରିଥିଲେ । ଗଭର୍ଣ୍ଣର ମହୋଦୟ କିଛି ଆର୍ଥିକ ସହାୟତା କରି ଏହାର ମୁଦ୍ରଣ ଭାର ବହନ କରିବାକୁ ରାଜ୍ୟ ସରକାରଙ୍କୁ ସୁପାରିଶ କରିଥିଲେ । କିନ୍ତୁ କାଟଜୁ ମହୋଦୟଙ୍କ ଓଡ଼ିଶାରୁ ବିଦାୟ ପରେ କବିଙ୍କ ଅର୍ଥ ଲାଭ ଆଶା ବିଫଳ ହେଲା । ପଣ୍ଡିତ ଗୋଦାବରୀଶ ମିଶ୍ର ଏହି ବହିର ଉପାଦେୟତା ଉପଲବ୍ଧି କରି ଇଂରେଜୀରେ ଯେଉଁ ସାର୍ଦ୍ଧ ମନ୍ତବ୍ୟ ଦେଇଛନ୍ତି ତାର କିଛି ଅଂଶ ଉଦ୍ଧୃତ କରାଗଲା ।

It is a book of authology Composed of what may be Called triple floral wreaths. The author has

**done his best to preserve some of the best thoughts of the west into Indian languages expected to live long. The author deserves congratulations.**

**G. Misra**
**11—3—59**

ଓଡ଼ିଶାର ସୁବିଖ୍ୟାତ କବି ବଳଦେବରଥଙ୍କ ଗ୍ରନ୍ଥ, ଚମ୍ପୂ, ଚୌପଦୀ ପ୍ରଭୃତିକୁ ସଂଗ୍ରହକରି ପଣ୍ଡିତ କୁଳମଣି ମିଶ୍ର କବିସୂର୍ଯ୍ୟ ଗ୍ରନ୍ଥାବଳୀରେ ପ୍ରକାଶ କରିଛନ୍ତି । କବିସୂର୍ଯ୍ୟଙ୍କର ବହୁ ଅପ୍ରକାଶିତ କବିତା କବିଙ୍କ ଗୃହରେ ତାଳପତ୍ର ପୁସ୍ତକରେ ସନ୍ନିବେଶିତ ହୋଇ ରହିଥିଲା । କବିଙ୍କ ବୃଦ୍ଧ ପ୍ରପିତାମହ ପଣ୍ଡିତ ମାଧବ ମିଶ୍ର ଓ ପ୍ରପିତାମହ ପଦ୍ମନାଭ ମିଶ୍ର ଧରାକୋଟ ରାଜସଭା ପଣ୍ଡିତ ମଣ୍ଡଳୀର ସୁଯୋଗ୍ୟ ବିଗ୍ରହ ଥିଲେ । ପଦ୍ମନାଭ ମିଶ୍ରଙ୍କର କବି ରବିଙ୍କ ସହିତ ମୈତ୍ରୀ ସ୍ଥାପିତ ହୋଇଥିଲା । ଏଣୁ 'କବି' କବିସୂର୍ଯ୍ୟଙ୍କ ବହୁ ଅପ୍ରକାଶିତ କବିତା ଗୁଡ଼ିକୁ ବହୁ ପରିଶ୍ରମ କରି ଓ ଅର୍ଥ ବିନଯୋଗ କରି ପ୍ରକାଶ କରି ପାରିଥିବାରୁ ସାହିତ୍ୟ ପ୍ରେମୀ ଓଡିଆଙ୍କର ପ୍ରଶଂସା ଭାଜନ ହୋଇ ପାରିଛନ୍ତି । ସେ ପ୍ରତ୍ୟେକ କବିତାର ଭାବ ଓ ଭାଷା ପ୍ରାଞ୍ଜଳ କରିବା ପାଇଁ ଓଡିଆ ଓ ଇଂରେଜୀରେ ଟୀକା ସନ୍ନିବେଶିତ କରି ଗ୍ରନ୍ଥାବଳୀକୁ 'କବି ରବି-ଗୀତି-ଗରିମା' ନାମରେ ନାମିତ କରିଛନ୍ତି ।

ଶିଶୁ ସାହିତ୍ୟ ସୃଷ୍ଟିରେ ତାଙ୍କର ସଫଳତା ଅତି ସ୍ମରଣୀୟ । କୋମଳମତି ଶିଶୁର କୋମଳ ମନ ବିନୋଦନ କେବଳ ତାର ଲକ୍ଷ୍ୟ ନୁହେ । ଆଜିର ଶିଶୁକୁ ଆସନ୍ତା କାଲିର ନାଗରିକ ରୂପେ ଗଢ଼ି ତୋଳିବା ପାଇଁ ଏକ ଭିତ୍ତି ଭୂମି ସୃଷ୍ଟି କରିବା ତାର ଲକ୍ଷ୍ୟ । ଶିଶୁ ମାନଙ୍କର ମନକୁ ଈଶ୍ୱରାଭିମୁଖୀ କରିବା ପାଇଁ ଓ ପରମେଶ୍ୱରଙ୍କ

ସଂପର୍କରେ ଶିଶୁକୁ ସଚେତନ କରିବା ପାଇଁ 'ଚକାଡ଼ୋଳା' କବିତାରେ କବି କିପରି ନିଜର ଭାବ ବ୍ୟକ୍ତ କରିଛନ୍ତି ଦେଖାଯାଉ –

ଚକାଡୋଳା ଆହେ, ଚକାଡ଼ୋଳା – ମୁଁ ତୁମ୍ଭ ଭକତ ହେବେ ହେଲା
ହେ ଚକାଡ଼ୋଳା ।

ମର୍ତ୍ତ୍ୟ ବଇକୁଣ୍ଠେ କଲ ବିଜେ– ନିଷ୍ଟୁନ୍ତେ ଥିବ କି ପ୍ରଭୋ ! କିଜେ ?
ଢେଡିତପାବନ ବାନା ଉଡେ ପରି ? ଦାନା ମାଗି ମିଳେ ବନ୍ଧାଧୋଳା
ଶି. ମୋ (୧୩ ଭାଗ)

ମାଦକ ଦ୍ରବ୍ୟ ସେବନରୁ ଶିଶୁମାନଙ୍କୁ ନିବୃତ୍ତ କରି ସେମାନଙ୍କର ଚୂରିତ୍ରିକ, ମାନସିକ ଓ ବୌଦ୍ଧିକ ବିକାଶ ଘଟାଇବା ପାଇଁ ଦୃଷ୍ଟି ରଖି 'ଟିକା ଟିଆଳ' କବିତାରେ ଚୁଡ଼ମାନଙ୍କୁ ଯେଉଁ ଉପଦେଶ ଦେଇଛନ୍ତି ତାର କିଯ୍ଦଂଶ ଅଂଶ ନିମ୍ନରେ ଦିଆଗଲା ।

ପିକା ପିଆଳରେ ପିକା ଟିଆଳ  ଫୁଙ୍କୁଛୁ ବସିକ ପଦ୍ମକାହାଳୀ ।

× × ×

ବୁଦ୍ଧିରେ ସିନା ତୁ ନପାରୁ କଳ  କାହାକରେ ପିଉ ସଂସାର ମଳ ।
ପିକାଠା ନୁହଇ ତୋ ପାଇଁ 'ଖାନା' ସୁନା ତୁଣ୍ଡକରୁ ତୁ 'ପାଇଖାନା' ।

ଛୋଟ ଶିଶୁମାନଙ୍କୁ ପାରି ଓ ବିରାଡ଼ିକୁ ଦେଖାଇ ବାପ ଓ 'ମା' ମାନେ ଶିଶୁ ମନରେ ଆନନ୍ଦର ଢେଉ ଖେଳାଇଥାନ୍ତି । ଅବୋଧ, ଅଝଟ ଶିଶୁକୁ ଶୁଆଇ ଦେବାର ଅଜବ କାଇଦାଟିଏ ତାଙ୍କ ଶିଶୁ ସଙ୍ଗୀତରେ କିପରି ଛପି ରହିଛି ଦେଖାଯାଉ ।

୧) ଆମ୍ଭେ ବଗଡ଼ ପିଇବୁ କ୍ଷୀର—ଗିନା ଖୃଟି ଆମ କୁମାର
୨) ଦାଆରେ କାଟିଲି ଘାସ—ମୋ କୁମା ମୁହଁରେ ରୁଚିର ହାସ ଯେ
ଗଉ ଗଉ ପରକାଶ ।

ଏପରି ଅଜସ୍ର ଶିକ୍ଷଣୀୟ କବିତା ପିଲଙ୍କ ମନକୁ ସ୍ପର୍ଶ କଲା ଭଳି ଅତିସରଳ ଭାବରେ ଅନୁପମ ଶବ୍ଦ ଯୋଜନାରେ ରଚନା କରି 'ଶିଶୁମୋହନ ନାମକ' ଚଉଦଖଣ୍ଡି କ୍ଷୁଦ୍ର ପୁସ୍ତିକା ପ୍ରକାଶ କରିଛନ୍ତି । ଏ ଗୁଡ଼ିକ ଯାହା ହେଉନା କାହିଁକି ଏହାର ଛନ୍ଦ ଓ ପଦଲାଳିତ୍ୟ ଶିଶୁମାନଙ୍କ ମନରେ ଗଭୀର ରେଖାପାତ କରିଥାଏ । ପଦକୁ ପଦ ଏକ ସ୍ୱରରେ ଏକ ତାଳରେ ଏସବୁ ଗୀତ ଗାଇବା ବେଳେ ପିଲଙ୍କ ମନ ତଳର ଅବ୍ୟକ୍ତ ଆନନ୍ଦ ଭିତରେ କବିବଲ୍ଲଭଙ୍କ ହସ ଟିକକ ଝରିପଡ଼ିଲା ପରି ମନେ ହୁଏ ।

ବିଦ୍ୟାଦାୟିନୀ ଶ୍ରୀ ସରସ୍ୱତୀଙ୍କ ପ୍ରାର୍ଥନା ଉଦ୍ଦେଶ୍ୟରେ ଓ ଶ୍ରୀପଞ୍ଚମୀ ଦିନ ଛାତ୍ରମାନେ ଶ୍ରୀଫଳ ଧାରଣ କରି ଶ୍ରୀ ଗୁରୁଙ୍କ ପାଇଁ କିପରି ଦକ୍ଷିଣା ସଂଗ୍ରହ କରିଥାନ୍ତି ସେହି ବିଷୟକୁ ଭିତ୍ତି କରି ଏକ ପୁସ୍ତିକା ପଦ୍ୟାକାରରେ ଲେଖିଛନ୍ତି ।

ଉଲ୍ଲିଖିତ ଶିଶୁ ସାହିତ୍ୟ ବ୍ୟତୀତ କବି 'ହରିହର ଚଉତିଶା' ନାମକ ଏକ ମୌଳିକ ଗ୍ରନ୍ଥ ଅତି ପାଣ୍ଡିତ୍ୟ ପୂର୍ଣ୍ଣ ଭାଷାରେ ରଚନାକରି ଚଉତିଶା ସାହିତ୍ୟରେ ଏକ ନୂତନ ଦିଗନ୍ତ ସୃଷ୍ଟି କରିଛନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଅଧିକାଂଶ ଚଉତିଶାର ମୁଖ୍ୟ ଉପଜୀବ୍ୟ ହେଉଛି ବିରହୀଜନର ପ୍ରେମଜନିତ ବିଳାପ । କିନ୍ତୁ କବିଙ୍କ ଚଉତିଶା ହେଉଛି ହରି ଓ ହରଙ୍କ ମହିମା ମଣ୍ଡିତ, ପ୍ରାର୍ଥନା

ମୂଳକ ଓ ସଂସାରର ଅନିତ୍ୟତା ପ୍ରଗୃରକ । କବି ସାଂସାରିକ ଝଡ଼-ଝଞ୍ଜାରୁ ମୁକ୍ତିଲାଭ ପାଇଁ ଆକୁଳ ପ୍ରାଣରେ ଭଗବାନଙ୍କୁ ନିବେଦକ କରିବାକୁ ଯାଇ ହରିଙ୍କ ବିଷୟରେ 'କ' ଠାରୁ 'କ୍ଷ' ଯାଏ ଏବଂ ହରଙ୍କ ଉଦ୍ଦେଶ୍ୟରେ 'କ' ଠାରୁ 'କ୍ଷ' ଯାଏ ଏପରି ମୋଟ ୬୮ ଗୋଟି ପଦରେ 'ରାଧାନାମ' ବାଣୀରେ ପ୍ରକାଶ କରିଛନ୍ତି । ଏହି ଚଉତିଶା କିପରି ସଂସ୍କୃତ ଶବ୍ଦାଡ଼ମ୍ବରରେ ପରିପୂର୍ଣ୍ଣ ତାର ଗୋଟିଏ ଉଦାହରଣ ଦିଆଗଲା ।

କପାଳି କଡରେ କୁ-କପାଳେ କର କରି ନିବେଶ
କରେ ନତି ନିକର କଳାଯା କଳାକର ମୁକୁଟ କୂଟ
କଳାଜା କଳି, କମ୍ପା ନା'ଠି ନିଲୁଠ ?
କିନାଶ ମୋ ବିନାଶ କରି ନପାରି ହରି ହେଲି କି ନାଶ ?

ଅର୍ଥ—କପାଳି କଡରେ-ଶିବଙ୍କ ପାଶରେ, 'କୁ' କପାଳେ-ମନ୍ଦଲଲାଟରେ କର କରି ନିବେଶି ହାତରଖି; ନତି ନିକର-ନିବେଦନମାନ, କଳାକର ମୁକୁଟ-ହେ ଚନ୍ଦ୍ରଚୂଡ଼ ମହାଦେବ; କୂଟ-କପଟ, କଳାଜା କଳି-ଦମ୍ଭ ପରୀକ୍ଷା କରି କମ୍ପା ନା'ଠି ନିଲୁଠ ମୋ ଜୀବନ ନାଟିକା କାହିଁକି ନାଶ ନକର; କିନାଶ-ଯମଦେବ ।

ଏହି ଚଉତିଶାରେ କବିଙ୍କ ଶବ୍ଦାଡ଼ମ୍ବର, ଭାବଗାମ୍ଭୀର୍ଯ୍ୟ, ତଥା ଆଳଂକାରିକ କୃତିତ୍ୱର ପରିଚୟ ମିଳେ । କବି ପଦ୍ୟାଭିଧାନ ନାମକ ଏକ ପ୍ରକାଣ୍ଡ କୋଷଗ୍ରନ୍ଥଟିକୁ ଅତି ସୁଲଳିତ ଛନ୍ଦରେ ପଦ୍ୟା-

କାରରେ ରଚନାକର ଆଧୁନିକ ରୁଚି ସମ୍ମତ ଭାଷାରେ ହୃଦୟଗ୍ରାହୀ କରିବାକୁ ଚେଷ୍ଟା କରିଛନ୍ତି ! ଏହି ପାଣ୍ଡୁଲିପିର କେତେକାଂଶ ପାଠ କରି ୰ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଏହି ଗ୍ରନ୍ଥ ଉପରେ ନିମ୍ନ ଲିଖିତ ମନ୍ତବ୍ୟ ପ୍ରଦାନ କରିଥିଲେ । "କାନନ ପ୍ରସୂତ କୁସୁମ ସର୍ବଥା ଉଦ୍ୟାନ ସୁମନ ଅପେକ୍ଷା କମନୀୟ କଥା ବାସଯୁକ୍ତ-କିନ୍ତୁ ଦୁର୍ଭାଗ୍ୟ ସେ କଦାଚିତ ଲୋକ ବ୍ୟବହାର ସୌଭାଗ୍ୟ ଲାଭ କରିଥାଏ" । ପଣ୍ଡିତ ମହାଶୟଙ୍କ 'ପଦ୍ୟାଭିଧାନର' ପଦ୍ୟକୋଷର ଅବସ୍ଥା ତଦ୍ରୂପ ତହିଁର ଏକ ପ୍ରଧାନ କାରଣ ଯେ-ଏହା ଓଡ଼ିଆ ଭାଷାରେ ଲିଖିତ ।

ଦିଗ୍‌ବିଜୟୀ ବୀରପରି ସେ ସାହିତ୍ୟର ସକଳ ଦିଗ ଜୟ କରିଥିଲେ କେବଳ-ଏତିକିହିଁ ତାଙ୍କର ସ୍ୱରାଜ୍ୟ । ଛୋଟ ବଡ଼ ପ୍ରାୟ ଅର୍ଦ୍ଧ ଶତାଧିକ ବହି ରଚନା କରି ପ୍ରକାଶ କରିଛନ୍ତି । କବିଙ୍କ ବହୁ-ଲେଖା ଅପ୍ରକାଶିତ ଅବସ୍ଥାରେ ପଡ଼ି କୀଟ ଓ ଜଳ ଦ୍ୱାରା ନଷ୍ଟ ଭ୍ରଷ୍ଟ ହୋଇଗଲେଣି । କବିଙ୍କ ପୁସ୍ତକ ପ୍ରକାଶନ ବ୍ୟବସାୟ ଭିତ୍ତିକ ହୋଇ-ଥିଲେ ହୁଏତ ସେ ପ୍ରଚୁର ଲାଭବାନ୍ ହୋଇଥାନ୍ତେ । କିନ୍ତୁ ତାହା ଥିଲା ବିତରଣୋ ଭିତ୍ତିକ । ଏଣୁ ପୁସ୍ତକ ପ୍ରକାଶନରେ ନିଜର ବିପୁଳ ପୈତୃକ ଭୂସମ୍ପତ୍ତି ବିନିଯୁକ୍ତ କରି ଓ ନିଜ ଅର୍ଜିତ ଅର୍ଥ ବିନିଯୋଗ କରି ଜୀବନର ଶେଷ ଭାଗରେ ଘୋର ଆର୍ଥିକ ସଙ୍କଟର ସମ୍ମୁଖୀନ ହୋଇଥିଲେ ! ସରକାର ତାଙ୍କର ଗ୍ରାସାଚ୍ଛାଦନ ପାଇଁ ଦୁସ୍ଥ ସାହିତ୍ୟିକ ହିସାବରେ ସାମାନ୍ୟ ବୃତ୍ତି ଦେବାର ବ୍ୟବସ୍ଥା କରିଥିଲେ ।

କବିଙ୍କ ରଚିତ ଓ ପ୍ରକାଶିତ ବହି ଗୁଡ଼ିକର ତାଲିକା ଦିଆଗଲା ।

୧) ଶିଶୁମୋହନ ୧୪ ଭାଗ (୨) ଛାତ୍ରମିତ୍ର-୫ ଭାଗ (୩) ରଘୁବଂଶ-

୨ଭାଗ (୪) ବଣ୍ଣ୍ୟବନ୍ଧୁ ୨ ଭାଗ (୫) ଶ୍ରୀ ହରିହର ଚଉତିଶା (୬) ପଦ୍ୟ ସୁଧା (୭) ଆତ୍ମ ଆଖ୍ୟାନ (୮) ଭଜନହାର (୯) ଜଗାବଳିଆ (୧୦) ଶ୍ରୀ ଗୁଣ୍ଡିଚା ଗୀତ (୧୧) ଶ୍ରୀ ଲକ୍ଷ୍ମୀନାରାୟଣାଭିଧାନ (୧୨) ପଦ୍ୟ ବ୍ୟାକରଣାଙ୍କୁର (୧୩) ଶିବ ଦୁର୍ଗାଭିଧାନ (୧୪) କାଳୀକୀର୍ତ୍ତି ଚଉତିଶା (୧୫) ଶ୍ରୀ ସୂର୍ଯ୍ୟ-ସହସ୍ରନାମ (୧୬) ବାଳ ପଦାବଳୀ (୧୭) ପକ୍ଷୀପ୍ରସଙ୍ଗ (୧୮) ପଶୁ ପ୍ରସଙ୍ଗ (୧୯) ମା' ଓଡ଼ିଶା ବିଳାପ (ପଣ୍ଡିତ ଗୋଦାବରୀଶଙ୍କ ମୃତ୍ୟୁ ଉପଲକ୍ଷେ୍ୟ) (୨୦) ସର୍ବ ଶିଷ୍ୟ ସର୍ବସ୍ୱ ଶତକ (୨୧) କବିରବ ଗୀତିଚୋମ୍ପୂ (୨୨) ଅଧମୋଦ୍ଧାରଣ ପଦ୍ୟାଳଂକାର (ଆଳଂକାରିକ ଚିତ୍ର) (୨୩) ମଙ୍ଗଳା ମଣିଙ୍କ ମୁଖ ମଧୁ ମନ୍ଦାକିନୀ ଧାରା (୨୪) ସାବିତ୍ରୀ (୨୫) Lettle mens' letters (୨୬) Dearest Diamond ୪ ଭାଗ (୨୭) ଧର୍ମାନନ୍ଦ ଧାରା ।

କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନଙ୍କପରି ସେ ତାଙ୍କର ସମସ୍ତ ପଦ୍ୟରେ ଉପଧାଟିଳନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ସେ ସାହିତ୍ୟରେ ଗଦ୍ୟ ଓ ପଦ୍ୟ ଉଭୟ ଦିଗରେ ଲେଖନୀଚାଳନା କରିଥିଲେ ହେଁ, କବିତା ଉପରେ ଅଧିକ ପ୍ରାଧାନ୍ୟ ଦେଇଥିବା ହେତୁ ଓ ସେଥିରେ ନିଜର ମୌଳିକ ସୃଜନ କଳାର ବୈଚିତ୍ର୍ୟ ପ୍ରତିପାଦନ କରିଥିବା ହେତୁ ଧରାକୋଟର ତତ୍କାଳୀନ ଗୁଣଗ୍ରାହୀ ରାଜା ସ୍ୱର୍ଗୀୟ ମଦନମୋହନ ସିଂହଦେଓ ତାଙ୍କୁ ୧୯୨୫ ମସିହାରେ କବିବଲ୍ଲଭ ପଦବୀରେ ଭୂଷିତ କରିଥିଲେ । କବି ନିଜର ପୃଷ୍ଠପୋଷକ ରାଜାଙ୍କ ନିକଟରେ ନିଜର କୃତଜ୍ଞତା 'ଶ୍ରୀ ସୂର୍ଯ୍ୟସହସ୍ର ନାମ' ବହିରେ ଉଲ୍ଲେଖ କରିଛନ୍ତି ଦେଖାଯାଉ —

ଋଷିକୁଲ୍ୟା ତଟିନୀ-ତଟ ଧରାକୋଟ
ରାମଚନ୍ଦ୍ରପୁରର – ବଟୁ ଅତି ଶ୍ରେଷ୍ଠ
ଗଜପତି ଗୋଷ୍ଠୀସ୍ଥ – ରାଜଗୁରୁ ଘର

ଚନ୍ଦ୍ରମଣି ଦେବଙ୍କ ଅଧମ କୁମର
ନୃସିଂହଦାର - ଶ୍ରୀ ମଦନମୋହନ
ଦେବାଧୀନ ଶିକ୍ଷକ ହୀନ ଅକଞ୍ଚନ
ଭୁବନେଶ୍ୱର କବି ବଲ୍ଲଭ ଏ ଗୀତ
ବହୁ ଶ୍ରମେ କରନ୍ତୁ ବସି ବିରଚିତ ।

କବିଙ୍କ ସମସ୍ତ କବିତା ଛନ୍ଦୋବଦ୍ଧ, ଗୀତିମୟ ଓ ସାଙ୍ଗୀତିକ ଗୁଣ ଧର୍ମରେ ପରିପୁଷ୍ଟ । ତେଣୁ କବିଙ୍କ ରଚନା ଗୁଡିକ ସୁଖ ପାଠ୍ୟ ଓ ସୁଶ୍ରାବ୍ୟ ହୋଇ ପାରନ୍ତି । ସେ ମାତୃ ସାହିତ୍ୟର ଉନ୍ନତି ବିଧାନ ପାଇଁ ତରୁଣ ବୟସରୁ ଯେଉଁ ସାଧୁ ଉଦ୍ୟମ କରିଥିଲେ ସେହି ଉଦ୍ୟମକୁ ସେ ସ୍ୱୀୟ ଜୀବଦ୍ଦଶାର ଅନ୍ତିମ ବର୍ଷର ପର୍ଯ୍ୟନ୍ତ ଅବ୍ୟାହତ ରଖି ପାରିଥିଲେ । ମାତୃଭୂମିର ସାହିତ୍ୟ ପ୍ରତି ତାଙ୍କ ହୃଦୟରେ ଅକଳମୟ ମମତା ଗଢ଼ି ଉଠିଥିଲା । ତେଣୁ ସେ ତଦୀୟ ଅମୂଲ୍ୟ ଅବଦାନ ଦ୍ୱାରା ଉତ୍କଳ ସାହିତ୍ୟକୁ ମହିମାମୟ କରିଯାଇଛନ୍ତି ।

ସେ ଥିଲେ ସରଳ, ନିଷ୍କପଟ, ପବିତ୍ରମନା ଓ ଆଦର୍ଶ ଶିକ୍ଷକ । ତାଙ୍କର ଈଶ୍ୱର ଭକ୍ତି ଅନନ୍ୟ ସାଧାରଣ । ଏଣୁ ତାଙ୍କ ସମ୍ପର୍କରେ ଯେଉଁ-ମାନେ ଆସିଛନ୍ତି, ତାଙ୍କର ଚରିତ୍ରବତ୍ତା, ଆଧ୍ୟାତ୍ମିକତା, ଦେଶାତ୍ମବୋଧ, ସମାଜସେବା, ଆଦର୍ଶ ଶିକ୍ଷା ଦାନ, ନିରଳସ ଜୀବନଯାପନ କର୍ତ୍ତବ୍ୟନିଷ୍ଠା ସର୍ବୋପରି ଗୋସେବା ଓ ଦୀନ ଦରିଦ୍ର ସେବା ଭଳି ମହନୀୟ ଗୁଣରେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ହୋଇ ପାରିଛନ୍ତି ।

—o—

# ରାମକୃଷ୍ଣ ରଥ

କବି ରାମକୃଷ୍ଣ ଧରାକୋଟ ଅନ୍ତର୍ଗତ ଟଙ୍ଗୋପୁର (ଓରଫ- ପୁରୁଷୋତ୍ତମପୁର) ଆଦେଯ୍ୟ ଗୋସଜ କବିରାଜ ନୀଳକଣ୍ଠ ରଥଙ୍କ ଔରସରେ ଉମାଦେବୀଙ୍କ ଗର୍ଭରୁ ୧୮୬୧ ମସିହାରେ ଜନ୍ମଗ୍ରହଣ କରି ୧୯୩୫ ମସିହାରେ ଦେହତ୍ୟାଗ କରିଥିଲେ । କବି ଶୈଶବରେ ନିଜର ବିଦ୍ୱାନ୍ ପିତା ଓ ଅନ୍ୟାନ୍ୟ ସ୍ଥାନୀୟ ପଣ୍ଡିତଙ୍କଠାରୁ ସଂସ୍କୃତ ଓ ଓଡ଼ିଆ ଭାଷା ଶିକ୍ଷା କରିଥିଲେ । ସେ ନିଜର କର୍ମନିଷ୍ଠା, ଚରିତ୍ରବତ୍ତା ଓ ଉଚ୍ଚ ମାନବିକତା ଗୁଣରେ ସ୍ଥାନୀୟ ଜନସାଧାରଣଙ୍କର ଶ୍ରଦ୍ଧା ଭାଜନ ହୋଇ ପାରିଥିଲେ । ନିଜର ଭ୍ରତଭକ୍ତି, ପାଣ୍ଡିତ୍ୟ ଓ ସଦ୍‌ଗୁଣାବଳୀ ଯୋଗୁଁ ଧରାକୋଟ ରାଜା ମଦନମୋହନ ସିଂହ ଓ ତଦୀୟ ପୁତ୍ର ଯୁବରାଜ ଶ୍ରୀ ବ୍ରଜକିଶୋର ଚନ୍ଦ୍ର ସିଂହଙ୍କର ପ୍ରୀତିଭାଜନ ହୋଇ ପାରିଥିଲେ ।

ଅତି ବାଲ୍ୟକାଳରୁ ତାଙ୍କ କବି ପ୍ରତିଭାର ଉନ୍ମେଷ ହୋଇଥିଲା । ସେ ରାମାୟଣର ଉତ୍ତରାକାଣ୍ଡ ଅବଲମ୍ବନରେ "ଲବକୁଶ ଉପାଖ୍ୟାନ" ନାମକ ଏକ ଗ୍ରନ୍ଥ ସମାଜର ସାଧାରଣ ନରନାରୀଙ୍କୁ ପୌରାଣିକ ଉପାଖ୍ୟାନ ଓ ସାହିତ୍ୟ ପରିସରକୁ ଆଣିବା ପାଇଁ ଲୋକ ପ୍ରଚଳିତ ଭାଷାରେ ରଚନା କରି-ଛନ୍ତି । କବି ନିଜର ଆତ୍ମପରିଚୟ ବିଷୟରେ ଗ୍ରନ୍ଥରେ ପ୍ରତ୍ୟକ୍ଷ ଭାବରେ କିଛି ଉଲ୍ଲେଖ ନକରି କେବଳ ଗ୍ରନ୍ଥ ସମାପ୍ତି ବିଷୟରେ ଶେଷ ଅଧ୍ୟାୟରେ ଲେଖିଛନ୍ତି ।

ଲବ କୁଶ ଉପାଖ୍ୟାନ ଦୁଇ ଦଶ— ଅଧ୍ୟାୟ ଏହିଠାରେ ହୋଇଲା ଶେଷେ

× × ×

କୋଡ଼ି ଅଠର ଶ ତେତିଶି ମକର – ତେର ଦିବସରେ ଶେଷ ଏ ଗ୍ରନ୍ଥର
ଭାଷା ରଚନାଟି ହୋଇଲା ସଫଳ— ଦିନ ଜାଣିବାକୁ ଲେଖିଲି ସକଳ

କବି ସଂସ୍କୃତ ପଦ୍ମ-ପୁରାଣାନ୍ତର୍ଗତ କ୍ରିୟା ଯୋଗସାରର ଆକ୍ଷରିକ ଓଡ଼ିଆ ପଦ୍ୟାନୁବାଦ ଅତ୍ୟନ୍ତ ମନୋଜ୍ଞ ଭାଷାରେ କୃଷ୍ଣସିଂହ ବାଣୀରେ ଅନୁବାଦ କରିଛନ୍ତି । କ୍ରିୟାଯୋଗ ସାର ହେଉଛି ପଦ୍ମପୁରାଣର ଏକ ଅତିରିକ୍ତ ଅଂଶ । ଏହି ପୁରାଣରେ ଭକ୍ତିବାଦ ବର୍ଣ୍ଣିତ ହୋଇଛି । ସ୍କନ୍ଦଙ୍କ ବିବାହ, ପତିବ୍ରତା ମାହାତ୍ମ୍ୟ, ଗଙ୍ଗାସ୍ନାନ, ମାଘ ମାସରେ ବିଷ୍ଣୁଭକ୍ତି, କାର୍ତ୍ତିକରେ ଦୀପଦାନ ଆଦିର ମହତ୍ତ୍ୱ ଏଥିରେ ବର୍ଣ୍ଣନା କରାଯାଇଛି । ଏହି ଅନୁବାଦରେ କବି ନଦୀ ପର୍ବତ ଓ ଋତୁର ବର୍ଣ୍ଣନାରେ ନିଜର କଳ୍ପନା ଶକ୍ତିକୁ ସ୍ୱଚ୍ଛନ୍ଦ ଭାବେ ପ୍ରକାଶ କରିବାକୁ କୁଣ୍ଠାବୋଧ କରିନାହାନ୍ତି । ପବିତ୍ର ଗଙ୍ଗା ନଦୀରେ ସ୍ନାନ କରି ମାତୃଦେଶରେ ମାନବ ଶରୀର ତ୍ୟାଗକଲେ କିପରି ସକଳ ପାପରୁ ମୁକ୍ତିଲାଭ କରି ମୁକ୍ତି ପ୍ରାପ୍ତହୁଏ କବି ତାହା ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି ।

ବିଷମ ପାପରାଶି ନାଶିନୀ ଗଙ୍ଗାଙ୍କର
ଯେଉଁ ଦ୍ୱିଜ ଭକ୍ତିରେ ପ୍ରତିଦିନେ ତୀର
ଭୟଙ୍କର ସଂସାର ସାଗର ପାରକୁ
ସେହି ଦ୍ୱିଜବର ତରେଣ ତାହାକୁ
ଶରୀରକୁ ପାପରୁ ମୁକ୍ତ କରି ଦେଇ
ସେହି କ୍ଷଣି ପାରକୁ ଗମନ କରଇ
ଏହିପରି ଶ୍ରୀଯୁତ ପଦ୍ମ ପୁରାଣରେ
ବ୍ୟାସ ଜଇମିନୀ ମୁନି ସମ୍ବାଦରେ
କ୍ରିୟା ଯୋଗ ସାର ସପ୍ତମ ଅଧ୍ୟାୟ
ଶେଷ କଲେ ଏଠାରେ ବ୍ୟାସ ମହୋଦୟ

ଋଷିମାନ ନନ୍ଦନୀ, ଗଞ୍ଜାମର ମନ୍ଦାକନୀ ଓ ଅଗଣିତ କବବନ୍ଦନ୍ଦନ ସେବନୀ ଋଷିକୁଲ୍ୟା ତରଙ୍ଗିଣୀର ପବନ୍ଧତାରେ ମୁଗ୍ଧ ହୋଇ ଏହ ପୁରାଣ ପ୍ରସିଦ୍ଧ ନଦୀରେ ସ୍ନାନ, ତର୍ପଣ, ଦାନ ଅସ୍ଥି ପ୍ରକ୍ଷେପ, ଦଣ୍ଡପ୍ରଣାମ ଓ ତତ୍ତଟରରେ ପ୍ରତିଷ୍ଠିତ ଶ୍ରୀ ଚନ୍ଦ୍ରକଳ୍ଲେଶ୍ୱର ମହାପ୍ରଭୁଙ୍କ ପୂଜା ଉପାସନା-ପୂର୍ବକ ମାନବ କପରି ମୁକ୍ତି ପଥର ଯାତ୍ରୀ ହୋଇପାରିବ, ସେହି ଉଦ୍ଦେଶ୍ୟରେ ସରଳ ସଂସ୍କୃତ ଭାଷାରେ ଶ୍ଳୋକାକାରରେ "ଋଷିକୁଲ୍ୟା ସ୍ନାନ ବଧି" ନାମକ ଏକ କ୍ଷୁଦ୍ର ପୁସ୍ତିକା ରଚନାକରି ସ୍ୱୀୟ ଗୁଣଗ୍ରାହୀ ଯୁବରାଜଙ୍କ ନାମରେ ୧୯୧୭ ମସିହାରେ ଉତ୍ସର୍ଗ କରିଛନ୍ତି । ଋଷିକୁଲ୍ୟା ନଦୀର ପବନ୍ଧତା ଓ ମହାତ୍ମ୍ୟ ବଷୟରେ ମହାଭାରତରେ ବନପର୍ବ ବସ୍ତାଅଣି ଅଧ୍ୟାୟରେ ବର୍ଣ୍ଣିତ ବଷୟ ପାଠକରି କବ ଏହି କ୍ଷୁଦ୍ରଗ୍ରନ୍ଥ ଲେଖିଥିବା ମନେହୁଏ । ସଂସ୍କୃତ ମୂଳ ମହାଭାରତ ବନପର୍ବରେ ବର୍ଣ୍ଣିତ ବଷୟରୁ ଦୁଇଟି ମାତ୍ର ଶ୍ଳୋକ ଉଲ୍ଲେଖ କରାଗଲା ।

ଋଷକୁଲ୍ୟାଂ ସମାସାଦ୍ୟ ନରଃସ୍ନାତ୍ୱା ବକଳ୍ମଷଃ
ଦେବାନ୍ ପିତୃନ୍ ଚାର୍ଚୟିତ୍ୱା ଋଷିଲୋକଂ ପ୍ରପଦ୍ୟତେ ।
ଯଦି ତତ୍ରବସେତ୍ର ମାସଂ ଶାକାହାରୋ ନରାଧିପ
ଭୃଗୁତୁଙ୍ଗଂ ସମାସାଦ୍ୟ ବାଜବୋଧ ଫଳଂ ଲଭେତ୍

ବହୁପୁରାତନ କାଳରୁ ଧରାକୋଟର ପ୍ରସିଦ୍ଧ ଶୈବପୀଠ ଶ୍ରୀ ଚନ୍ଦ୍ରକଳ୍ଲେଶ୍ୱରଙ୍କ ନିକଟସ୍ଥ ଋଷିକୁଲ୍ୟା ନଦୀର ଉତ୍ତର ବାଙ୍କରେ ଚୈତ୍ର କୃଷ୍ଣ ତ୍ରୟୋଦଶୀ ଦନ ସହସ୍ର ସହସ୍ର ଲୋକ ପ୍ରାତଃରୁ ବୁଡ଼ ସ୍ନାନକରି

ସନ୍ଧ୍ୟାବନ୍ଦନା, ଦେବତା ଉପାସନା ଓ ପିତୃତର୍ପଣାଦି ଧାର୍ମିକ କର୍ମ କରିଥାନ୍ତି । ସମାଜରେ ଧାର୍ମିକଭାବ ଜାଗରୂକ ରଖିବାପାଇଁ ଏହି କ୍ଷୁଦ୍ର ସନ୍ଦର୍ଭର ଆଦ୍ୟରେ କବି କପର ସଂକ୍ଷିପ୍ତ ସୂଚନା ଦେଇଛନ୍ତି ଦେଖାଯାଉ —

ଚୈତ୍ର କୃଷ୍ଣ ତ୍ରୟୋ-ଦଶ୍ୟାଂ ଶୁଭଯୋଗେ ଶନେର୍ଦ୍ଦିନେ
ଋଷିକୁଲ୍ୟାଂ ଜଳେ ସ୍ନାତ୍ୱା ପ୍ରଣମେଚ୍ଚନ୍ଦ୍ରଶେଖରଂ
ଗଙ୍ଗାସ୍ନାନ ବିଧାନେନ ଋଷିକୁଲ୍ୟାବଗାହନଂ
ଯଃ କରୋତି ନରଃ ପ୍ରାଜ୍ଞଃ ତସ୍ୟ ସ୍ନାନ ଫଳଂ ଲଭେତ୍

ଏହି ସ୍ତୁତି ଗ୍ରନ୍ଥରେ ଶ୍ରାଦ୍ଧଫଳ, ଦାନଫଳ, ପିତୃପୁରୁଷଙ୍କ ଅସ୍ଥି-ପ୍ରକ୍ଷେପ ବିଧି ଚନ୍ଦ୍ରକଲ୍ଲେଶ୍ୱରାଷ୍ଟକ, ଜଗନ୍ନାଥ ସ୍ତୁତି, ଶଙ୍କରାଷ୍ଟକ, ଦୁର୍ଗା, ରାମ, ସୂର୍ଯ୍ୟ ପ୍ରଭୃତିଙ୍କ ସ୍ତୁତି ସଂସ୍କୃତ ଭାଷାରେ ଶ୍ଲୋକାକାରରେ ସନ୍ନିବେଶିତ ହୋଇଛି ।

କବି "ଶମ୍ବର ଦଶମୀ ପର୍ବ ଓ ମହାତ୍ମ୍ୟ" ସରଳ ଓଡିଆ ଭାଷାରେ ରଚନାକରି ବ୍ରତିନସ୍ତ୍ରୀ ଓ ଭକ୍ତିକ ଜନତାର ଅଶେଷ ହିତସାଧନ କରିଛନ୍ତି । ଋଷିକୁଲ୍ୟା ସ୍ନାନବିଧି, ଶମ୍ବର ଦଶମୀ ପର୍ବଛଡ଼ା, କ୍ରିୟାଯୋଗସାର ଓ ଲବକୁଶ ଉପାଖ୍ୟାନ ଏଯାଏଁ ମୁଦ୍ରିତ ଆକାରରେ ପ୍ରକାଶ ପାଇନାହିଁ । ଏଗୁଡ଼ିକ ଅତି ଜୀର୍ଣ୍ଣଶୀର୍ଣ୍ଣ କାଗଜ ପୁସ୍ତକରେ ପାଣ୍ଡୁଲିପି ଆକାରରେ ଲେଖକଙ୍କ ଗୃହରେ ପଡ଼ିରହିଛି । ଏହି ଅମୂଲ୍ୟ ଲେଖାଗୁଡ଼ିକ ଯଥାକ୍ରମେ ଶୀଘ୍ର ପ୍ରକାଶ କରାନଗଲେ ବିସ୍ମୃତି ଗର୍ଭରେ ଲୀନ ହୋଇଯିବାର ଆଶଙ୍କା ରହିଛି ।

—୦—

# ଗଣପତି ସାହୁ

ଧଗଡ଼କୋଟ ଅନ୍ତର୍ଗତ ଜଗମୋହନ ଗ୍ରାମନିବାସୀ ୰ ଗଣପତି ସାହୁ ୧୮୮୩ ମସିହାରେ ଜନ୍ମଗ୍ରହଣ କରିଥିଲେ । କବି ଉଚ୍ଚଶିକ୍ଷାଲାଭରୁ ବଞ୍ଚିତଥିଲେ । ସେ ନିଜ ଗ୍ରାମରେ ମାଟିବଂଶ ଅବଧାନଙ୍କଠାରୁ ଗଣିତ ଓ ଓଡ଼ିଆଭାଷା ବାଲ୍ୟବୟସରେ ଶିକ୍ଷାଲାଭ କରିଥିଲେ । ସେ ଏକାଧାରରେ ଜଣେ ସୁଲେଖକ, କର୍ମଠ, ନିରାଡ଼ମ୍ବରପ୍ରିୟ ଓ କଂସାବାସନ ନିର୍ମାଣର ଜଣେ ସୁଦକ୍ଷ ବଣିକ ଥିଲେ । ତାଙ୍କର ପାଣ୍ଡିତ୍ୟ, ପ୍ରତିଭା କୌଶଳଜ୍ଞାନ ଓ ସ୍ୱାଧୀନଚେତା ଚରିତ୍ରରେ ସାହିତ୍ୟ ସାଧନା ଓ ଅଧ୍ୟବସାୟ ପ୍ରତି ଯେଉଁମାନେ ଦୃଷ୍ଟିପାତ କରିଛନ୍ତି ସେମାନେ ବାସ୍ତବରେ ଅଭିଭୂତ ହୋଇ ପଡ଼ିଛନ୍ତି ।

ସେ କବିସୂର୍ଯ୍ୟଙ୍କ ସର୍ପଜଣାଣ ଢଙ୍ଗରେ ଏକ ଅଭିନବ ଜଣାଣ ରଚନାକରି 'ମର୍କଟ ଜଣାଣ' ଆଖ୍ୟା ଦେଇଛନ୍ତି । ଏହି 'ଚଉତିଶାରେ' ସେ ଭଗବାନଙ୍କୁ ମର୍କଟ ସହିତ ଅତ୍ୟନ୍ତ ମନୋହର ଚିତ୍ତାକର୍ଷକ, ଆଳଂକାରିକ ଓ ଶବ୍ଦାଡ଼ମ୍ବର ପୂର୍ଣ୍ଣ ଭାଷାରେ ବର୍ଣ୍ଣନାକରି ଭଗବାନ ହିଁ ତାଙ୍କୁ ଭଲମନ୍ଦ ପ୍ରଭୃତି ବିବିଧ କାର୍ଯ୍ୟରେ ନିଯୁକ୍ତ କରିଛନ୍ତି ବୋଲି ବର୍ଣ୍ଣନା କରିଛନ୍ତି । ଏହାଛଡ଼ା ସେ ଶୃଙ୍ଖଳାନୁପ୍ରାସ ସମ୍ବଳିତ 'କ' କାରରୁ 'କ୍ଷ' କାରାନ୍ତ 'ଶ୍ରୀ ରାଧାକାନ୍ତ ଜଣାଣ' ନାମକ ଏକ ଭକ୍ତି ରସପ୍ରଧାନ ଜଣାଣ ଲେଖିଛନ୍ତି । ଏହି ଛନ୍ଦୋବଦ୍ଧ, ଯମକାନୁପ୍ରାସ ଜଣାଣଟି ଭଞ୍ଜୀୟ ସାହିତ୍ୟ ଛଟାରେ ଲିଖିତ । ଏହି ଜଣାଣରେ କବି ତାଙ୍କ ପ୍ରାଣର ବେଦନା ଓ ବ୍ୟାକୁଳତା କିପରି ହରିଙ୍କ ନିକଟରେ ଜଣାଇଛନ୍ତି ନିମ୍ନଲିଖିତ ପଦରୁ ଜଣାଯାଏ—

ହର-ହସ୍ତ ବିଭବ, ଭବଆଦି ପ୍ରଭବ ଜୀବନା ମନୁ ପରିହରି<br>
ହରିନାମ କେବଳ ବଳକରି ସକଳ, କଳହ ନାଶଯିବ ତରି<br>
ହେ ! ମହାପ୍ରଭୁ ।

ହେଉ ଏତେକ କୃପାହର ! 'ହର'ଜୀବ ମୁଁ ନରହର
ହର-ହୃତ ଦୁଆର ଆରପାରକୁ କର କରଯୋଡ କହେ
ଜଗନ୍ନାଥେ ।

କବି କନକଙ୍କ ଭାରତୀ ଓ ଭଞ୍ଜଜୟନ୍ତୀ ତରଫରୁ ଆୟୋଜିତ ହୋଇଥିବା ଛାନ୍ଦ ରଚନା ଓ ସମସ୍ୟାପୂରଣ କବିତା ପ୍ରତିଯୋଗିତାରେ ଅଂଶଗ୍ରହଣକରି ଶ୍ରେଷ୍ଠ ବିବେଚିତ ହୋଇ ପ୍ରଶଂସାପତ୍ର ସହ ପୁରସ୍କୃତ ହୋଇଥିଲେ । ଭଞ୍ଜସାହିତ୍ୟ ତଥା ରୀତି ଯୁଗ ସାହିତ୍ୟର ସେ ଜଣେ କୁଶଳୀ ବ୍ୟାଖ୍ୟାକର ଥିଲେ । କବି ଭିନ୍ନଭିନ୍ନ ସମୟରେ ବିଭିନ୍ନ ଭାବଧାରା ଅବଲମ୍ବନରେ ଛାନ୍ଦ ଚୌପଦୀ, ଭଜନ, କୀର୍ତ୍ତନ ପ୍ରଭୃତି ଭକ୍ତିମୂଳକ ଓ ରାଧାକୃଷ୍ଣ ପ୍ରେମ ସମ୍ବଳିତ ଗୀତ ରଚନା କରିଛନ୍ତି । ବିଭିନ୍ନ ରାଗରାଗିଣୀ ଓ ତାଳଲୟର ବ୍ୟଞ୍ଜନାରେ ତାଙ୍କ ଲେଖାଗୁଡିକ ଓଡିଆ ସାହିତ୍ୟ ଭଣ୍ଡାରରେ ଅନନ୍ୟ ଓ ଏକ ଗୌରବର ଅଧିକାରୀ ହୋଇପାରିଛି । ଉପେନ୍ଦ୍ର ଭଞ୍ଜଙ୍କ ଲେଖାର ଶୈଳୀ ଓ ଆଦର୍ଶକୁ ଗ୍ରହଣ କରିଥିବା ହେତୁ ତାଙ୍କର କେତେକ ଛାନ୍ଦରେ ଶବ୍ଦାଡ଼ମ୍ବରର ଘନଘଟା ଓ ଅଳଂକାର ଯୋଜନାର କଠୋର ଶୃଙ୍ଖଳ ଦେଖିବାକୁ ମିଳେ । କବିଙ୍କର ଅନ୍ୟ କେତେକ ଛାନ୍ଦ ଭାବପୂର୍ଣ୍ଣ ଓ ଭାଷା ଅତ୍ୟନ୍ତ ସରଳ ଓ କୋମଳ ହେତୁ ଶ୍ରୁତିମଧୁର ହୋଇ ପାରିଛି ।

ଅତ୍ୟନ୍ତ ଆନନ୍ଦ ଓ ଗୌରବର କଥା କବିଙ୍କ ତୃତୀୟପୁତ୍ର ସାହିତ୍ୟପ୍ରେମୀ ଓ ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀ ଜଗତବନ୍ଧୁ ସାହୁ ବହୁପରିଶ୍ରମକରି ତାଙ୍କର ଲେଖାଗୁଡ଼ିକୁ ୧୯୯୦ ମସିହାରେ 'ଗଣପତି ଗ୍ରନ୍ଥାବଳୀରେ ମୁଦ୍ରିତାକାରରେ ପ୍ରକାଶ କରିଛନ୍ତି ।

—o—

# ଚନ୍ଦ୍ରମଣି ରଥ

ଧରାକୋଟ ରାଜ୍ୟାନ୍ତର୍ଗତ ଋଷିକୂଲ୍ୟା ନଦୀର ଉତ୍ତର ତଟରେ ଅବସ୍ଥିତ ନାରାୟଣପୁର ଶାସନରେ ଏକ ଶ୍ରୋତ୍ରିୟ ବ୍ରାହ୍ମଣ ପରିବାରରେ ୰ ଚନ୍ଦ୍ରମଣି ରଥ ୧୮୯୫ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । କବିଙ୍କ ପିତାଙ୍କ ନାମ ନୀଳକଣ୍ଠ ରଥ । ଉଭୟ ପିତା ଓ ପୁତ୍ର ମଦନମୋହନ ସିଂହ-ଦେଓଙ୍କ ରାଜଦରବାର ସହିତ ସଂଶ୍ଳିଷ୍ଟଥିଲେ । ସେ ୧୯୧୯ ମସିହାରେ କାବ୍ୟତୀର୍ଥ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ ।

ସେ କାଳିଦାସଙ୍କ ବିରଚିତ ସଂସ୍କୃତ "ମାଳବିକାଗ୍ନି" ନାଟକର ଆକ୍ଷରିକ ଓଡ଼ିଆ ଅନୁବାଦ କରିଥିଲେ । ଏଥିରେ ବିଦିଶାରେ ରାଜତ୍ୱ କରୁଥିବା ଶୁଙ୍ଗବଂଶର ରାଜା ଅଗ୍ନିମିତ୍ରଙ୍କ ସହିତ ବିଦର୍ଭର ରାଜକୁମାରୀ ମାଳବିକା ସହିତ ଗୁପ୍ତପ୍ରଣୟ ବର୍ଣ୍ଣିତ ହୋଇଛି । ମାଳବିକା ଅଗ୍ନିମିତ୍ରଙ୍କ ରାଜପ୍ରସାଦରେ ଆତ୍ମଗୋପନକରି ରହିଥିଲେ । ଅଗ୍ନିମିତ୍ରଙ୍କ ପାଟରାଣୀ ଧାରିଣୀଙ୍କ ସହନଶୀଳତା ଓ ଧୀରତା, ଦ୍ୱିତୀୟରାଣୀ ଇରାବତୀଙ୍କ ଅଭିମାନ ଓ ଈର୍ଷା, ରାଜାଙ୍କ କାମୁକତା, ବିଦୂଷକଙ୍କ ନାୟକ ଓ ନାୟିକାଙ୍କ ମିଳନ କାର୍ଯ୍ୟରେ ଚତୁରତା ଓ ତତ୍ପରତା ଏବଂ ରାଜ ଅନ୍ତଃ- ପୁରର ବାସ୍ତବଚିତ୍ର ସୁନ୍ଦର ରୂପେ ଅଙ୍କିତ । ଆକ୍ଷରିକ ଅନୁବାଦରେ ଭାଷାବିନ୍ୟାସ ଓ ଭାବସଙ୍ଗତି ସୁଦୂର ପ୍ରସାରୀ ନହୋଇ ସୀମିତ ହୋଇଥିଲେ ମଧ୍ୟ ଏହି ଅନୁବାଦକୁ ସରସ ଓ ଚିତ୍ତାକର୍ଷକ କରିବା ପାଇଁ ଲେଖକ ଯତ୍ପରୋନାସ୍ତି ଚେଷ୍ଟା କରିଛନ୍ତି ।

ବିଦର୍ଭାଧିପତି ଯୁଦ୍ଧରେ ପରାସ୍ତ ହେବା ସମ୍ବାଦପାଇ ଅଗ୍ନିମିତ୍ର ଓ ବିଦୂଷକଙ୍କ ଆଳାପ ଓ ଆଲୋଚନା ବେଳେ ରାଜା ବିଦୂଷକଙ୍କ ନିକଟରେ ନିଜର ଉତ୍କଣ୍ଠା କିପରି ପ୍ରକାଶ କରିଛନ୍ତି ଦେଖାଯାଉ ।

ସେ ସଖୀର ଶୁଭମିଳନ ହବ ସୁଲଭେତର ।
ପୁଣି ଶୁଣିବଲେ ପରସ୍ପରର ବଦଭେ'ଶ୍ବର ।
ଧାରାପାତ ସିକ୍ତ ଆତପେ ଭୂମରସ ସମାନ ।
ସୁଖଦୁଃଖ ଉପଭୋଗଇ ଏବେ ମୋହର ମନ ।

ଉକ୍ତ ନାଟକର ଅନୁବାଦ ପାଠକରି ୧୯୨୭ ମସିହାରେ ଆସିକା ହାଇସ୍କୁଲର ତତ୍କାଳୀନ ପ୍ରଧାନ ଶିକ୍ଷକ ପରଶୁରାମ ବର୍ମା ଓ ଖଲ୍ଲିକୋଟ କଲେଜର ଓଡ଼ିଆ ଅଧ୍ୟାପକ ସ୍ୱର୍ଗୀୟ ଲିଙ୍ଗରାଜ ମିଶ୍ର ଶାସ୍ତ୍ରୀ ଅତି ଉଚ୍ଚକୋଟିର ମନ୍ତବ୍ୟ ପ୍ରକାଶ କରିଛନ୍ତି । ସ୍ୱର୍ଗୀୟ ଶାସ୍ତ୍ରୀଙ୍କ ମନ୍ତବ୍ୟ ଦିଆଗଲା—

**He has finely translated in to Oriya the well known Sanskrit drama "Mala-vikagnimitra" which itself is a proof that he possesses a very good knowledge of both languages - Sanskrit & Oriya.**

ସେ ଓଡ଼ିଆରେ ବହୁ କ୍ଷୁଦ୍ର କବିତା; ତେଲୁଗୁ ଓ ସଂସ୍କୃତରେ ପଞ୍ଚ ଦେବତାଙ୍କ ଉଦ୍ଦେଶ୍ୟରେ ବହୁ ଭଜନ ଅତି ପାଣ୍ଡିତ୍ୟ ପୂର୍ଣ୍ଣଭାଷାରେ ରଚନା କରିଛନ୍ତି । ସ୍ୱର୍ଗୀୟ ମଦନମୋହନ ସିଂହ ଦେଓଙ୍କ ଉଦ୍ଦେଶ୍ୟରେ ରଚିତ ବହୁ ଆଶୀର୍ବାଦ ଶ୍ଳୋକରୁ ଗୋଟିକର ଦୃଷ୍ଟାନ୍ତ ଦିଆଗଲା ।

ଯାଧ୍ମାକ୍ଷ ପତଙ୍ଗ ପାବକ ଶିଖା ଚଣ୍ଡୀଦ୍ଵିଖଣ୍ଡୀକୃତା
ପ୍ରୋଚ୍ଚଣ୍ଡା କୃତ ଚଣ୍ଡମୁଣ୍ଡ ଦନୁଜା ଚାମୁଣ୍ଡ ସମ୍ମଣ୍ଡିତା
ଯାର୍ବୈ ଶୁମ୍ଭ ନିଶୁମ୍ଭ ଦାବଦହନା ଯା ରକ୍ତ ବୀଜାସନା
ପାୟାତ୍ତ୍ଵ ମନ୍ମଥ ମୋହନ ଦ୍ଵିପପତିମର୍ତ୍ତ୍ୟଂ ମହୀପଂହସା

ଅର୍ଥାଭାବରୁ ତାଙ୍କର ସମସ୍ତ ଲେଖା ଏ ଯାଏଁ ଅପ୍ରକାଶିତ ଅବସ୍ଥାରେ ପଡିରହିଛି । କବି ୧୯୫୮ ମସିହାରେ ଦେହତ୍ୟାଗ କରିଥିଲେ ।

—୦—

# ହରିହର ମିଶ୍ର

ଧରାକୋଟ ଅନ୍ତର୍ଗତ ରାଜେନ୍ଦ୍ରପୁର ଶାସନରେ ହରିହର ମିଶ୍ର ଚଳିତ ଶତାବ୍ଦୀର ପ୍ରଥମ ଦଶକରେ ଜନ୍ମଗ୍ରହଣ କରି ସପ୍ତମ ଦଶକରେରେ ସ୍ୱର୍ଗଲୋକ ପ୍ରାପ୍ତ ହୋଇଥିଲେ । ସେ ୧୯୨୦ ମସିହାରେ କାବ୍ୟତୀର୍ଥ ଉପାଧିରେ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କର ପିତା ବୀରଭଦ୍ର ସାହିତ୍ୟଭୂଷଣ ସଂସ୍କୃତ ଭାଷାରେ ରାଧାମାଧବ ଚମ୍ପୂ ରଚନା କରିଥିବା ଜଣାଯାଏ ବୀରଭଦ୍ର ମିଶ୍ର ମଦନମୋହନ ସିଂହଦେଓଙ୍କ ଦ୍ୱାରା ସାହିତ୍ୟଭୂଷଣ ଉପାଧିରେ ଭୂଷିତ ହୋଇଥିଲେ ।

ପଣ୍ଡିତ ହରିହରଙ୍କର ସ୍ମୃତି ଓ ଧର୍ମଶାସ୍ତ୍ରରେ ଅସାଧାରଣଜ୍ଞାନଥିଲା । ଗଞ୍ଜାମର ବିଭିନ୍ନ ଅଞ୍ଚଳରୁ ଲୋକମାନେ ସାମାଜିକ ବିଧିବ୍ୟବସ୍ଥା ପରାମର୍ଶ ପାଇଁ ତାଙ୍କନିକଟକୁ ଆସୁଥିଲେ । ସେ ଏ ଅଞ୍ଚଳର ଧର୍ମବ୍ୟବସ୍ଥାପକଥିଲେ । ସେ ଆମ ଉତ୍କଳରେ ସର୍ବଶ୍ରେଷ୍ଠ ସମାଦୃତ ଗଦାଧର ପଦ୍ଧତି (କାଳସାର) ସ୍ମୃତି ଅବଲମ୍ବନରେ 'କାଳବିବେକ' ନାମକ ଏକ ମୌଳିକଗ୍ରନ୍ଥ ଓଡ଼ିଆ ଭାଷାରେ ପ୍ରଣୟନ ଓ ମୁଦ୍ରଣକରି ଧାର୍ମିକ ଜନତାର ଅଶେଷ କଲ୍ୟାଣ କରିଛନ୍ତି ।

ଏହି ଗ୍ରନ୍ଥରେ ଲେଖକ ନିଖିଳ ଧର୍ମକୃତ୍ୟ ବିଧାନ ଯଥା ବାରମାସର ପଞ୍ଚପର୍ବାଣି, ବ୍ରତ, ଉପବାସ, ବିବିଧ ଅନୁଷ୍ଠାନ, ଶୌଚାଶୌଚ ବିଧାନ ବିଭିନ୍ନ ଶ୍ରାଦ୍ଧ, ଅନ୍ତ୍ୟେଷ୍ଟିକ୍ରିୟା, ନିତ୍ୟ ନୈମିତ୍ତିକ କାମ୍ୟକର୍ମ ପ୍ରଭୃତି ଅନୁଷ୍ଠିତ କରିବା ପାଇଁ ସବିଶେଷ ବିବରଣୀ ସହ ଏଗୁଡ଼ିକର କାଳ ନିର୍ଣ୍ଣୟ କରିଛନ୍ତି ।

ଏହି ଗ୍ରନ୍ଥଯୋଗୁଁ ହରିହର ଉତ୍କଳ ଧର୍ମରାଜ୍ୟରେ ଅମରହୋଇ ରହିଛନ୍ତି ।

—୦—

# ଶ୍ରୀ ଗଣେଶ୍ୱର କବିଚନ୍ଦ୍ର

ଧରାକୋଟର ଗୌରବରବି-ପଣ୍ଡିତ ଗଣେଶ୍ୱର ଉଦ୍ଗାତା ୧୯୦୧ ଖ୍ରୀଷ୍ଟାବ୍ଦରେ ଋଷିକୁଲ୍ୟା ଉତ୍ତରତଟବର୍ତ୍ତୀ ନାରାୟଣପୁର ଗ୍ରାମରେ ଏକ ଗରିବ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ବୀରଭଦ୍ର ଉଦ୍ଗାତା ଜଣେ କୃତବିଦ୍ୟ ଆୟୁର୍ବେଦ ଚିକିତ୍ସକ ଥିଲେ । ପିତା ଅତ୍ୟନ୍ତ ଗରିବଥିବାହେତୁ ଗଣେଶ୍ୱର ଅର୍ଥକରୀ ପାଶ୍ଚାତ୍ୟ ଶିକ୍ଷାଲୋକରୁ ବଞ୍ଚିତ ହୋଇଥିଲେ । ପ୍ରାଥମିକ ଶିକ୍ଷାଲାଭ ପରେ ସଂସ୍କୃତଶିକ୍ଷାପ୍ରତି ତାଙ୍କର ଆଗ୍ରହ ପ୍ରକାଶ ପାଇଥିବା ହେତୁ ପିତା ସ୍ଥାନୀୟ ପଞ୍ଚଦେବ ସଂସ୍କୃତ ଟୋଲରେ ପଢ଼ିବାପାଇଁ ତାଙ୍କର ବ୍ୟବସ୍ଥା କରିଥିଲେ । ଏହି ଟୋଲରେ କିଛିକାଳ ଅଧ୍ୟୟନ ପରେ ପୁରୀରୁ ସଂସ୍କୃତ ଶିକ୍ଷାଲାଭ କରିବାକୁ ଗଲେ । କିନ୍ତୁ ପୁରୀର ଜଳବାୟୁ ତାଙ୍କ ସ୍ୱାସ୍ଥ୍ୟର ପ୍ରତିକୂଳ ହେବାହେତୁ ସଂସ୍କୃତ ମଧ୍ୟମା ପାସ-କରିବାପରେ ପଞ୍ଚଦେବ ଟୋଲରେ ତୃତୀୟ ସହକାରୀ ଶିକ୍ଷକଭାବେ ନିଯୁକ୍ତିଲାଭକଲେ । ଏହି ଟୋଲରେ ଅଧ୍ୟାପନା କାର୍ଯ୍ୟରେ ବ୍ୟାପୃତରହି ନିଜପ୍ରଚେଷ୍ଟା, ଅଧ୍ୟବସାୟ ଓ ଅଧ୍ୟୟନ ଫଳରେ ଘରେଇ ଛାତ୍ରଭାବେ ଆଚାର୍ଯ୍ୟ ପରୀକ୍ଷାଦେଇ କୃତିତ୍ୱର ସହ ଉତ୍ତୀର୍ଣ୍ଣହୋଇ ଏହି ଅନୁଷ୍ଠାନର ପ୍ରଧାନ ପଣ୍ଡିତ ପଦକୁ ଉନ୍ନୀତହୋଇଥିଲେ । ୬୦ ବର୍ଷପରେ ମଧ୍ୟ ଆଉ କିଛିକାଳ ଏହି ଅନୁଷ୍ଠାନରେ ପ୍ରଧାନ ପଣ୍ଡିତରୂପେ କାମକରିଥିଲେ । ଦୀର୍ଘ ୫୧ ବର୍ଷ କାଳ କର୍ମକରି କର୍ମକ୍ଷେତ୍ରରୁ ବିଦାୟନେବାର ୫ ବର୍ଷପରେ ତା ୧୭-୬-୧୯୮୭ ଆଷାଢ଼ କୃଷ୍ଣ ସପ୍ତମୀ ବୁଧବାରଦିନ ସଂସାର କ୍ଷେତ୍ରରୁ ଚିରବିଦାୟ ନେଇଥିଲେ ।

ଏହି ଅନୁଷ୍ଠାନରେ ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତ ହେବା ଦିନଠାରୁ ଜୀବନର ଶେଷ ନିଶ୍ୱାସ ତ୍ୟାଗପର୍ଯ୍ୟନ୍ତ ଓଡ଼ିଆ-ଓ ସଂସ୍କୃତ ସାହିତ୍ୟସାଧନାରେ

ବ୍ରହ୍ମାରଙ୍କ ନିଜର ବଳିଷ୍ଠ ଲେଖନୀ ଚାଳନାଦ୍ୱାରା ଉଭୟ ଭାଷା ଓ ସାହିତ୍ୟର ସମୃଦ୍ଧି ସାଧନ କରିପାରିଛନ୍ତି । ତାଙ୍କର ଅନବଦ୍ୟ ପ୍ରତିଭା ଓ ନୈସର୍ଗିକ କବିତ୍ୱରେ ବିମୋହିତ ହୋଇ ରାଜା ମଦନମୋହନ-ସିଂହ ଦେଓ ୧୯୩୪ ଖ୍ରୀଷ୍ଟାବ୍ଦରେ ତାଙ୍କୁ କବିଚନ୍ଦ୍ର ଉପାଧିରେ ଭୂଷିତ କରିଥିଲେ । ସେ ସମୟରେ ସ୍ଥାନୀୟ ରାଜଦରବାରର ପ୍ରୋତ୍ସାହନ ପାଇ ଓ ରାଜଦରବାରରେ ନିଜକୁ ଅଧିକ ସମ୍ମାନିତ କରିବା ପାଇଁ ଗଣେଶ୍ୱର କବିଚନ୍ଦ୍ର, ଶ୍ୟାମସୁନ୍ଦର ଚଦ୍ୟାଳଂକାର ଓ ଭୁବନେଶ୍ୱର କବିବଲ୍ଲଭଙ୍କ ଭିତରେ ବଳିଷ୍ଠ କବିତ୍ୱର ପୂର୍ଣ୍ଣାଙ୍ଗ ପରିପ୍ରକାଶ ପାଇଁ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ଚାଲିଥିଲା । ଏଣୁ ଉପରୋକ୍ତ କବିତ୍ରୟ ସାହିତ୍ୟର ସର୍ବାଙ୍ଗୀନ ସମୃଦ୍ଧି ବର୍ଦ୍ଧନଲାଗି ବିଶେଷତଃ କାବ୍ୟ କବିତା, ସଙ୍ଗୀତ ସାହିତ୍ୟ, ଅନୁବାଦ ସାହିତ୍ୟ ଓ ଛନ୍ଦୋବଦ୍ଧ ସାହିତ୍ୟର ବିକାଶଲାଗି ଅହରହ ଉଦ୍ୟମକରି ନିଜ ନିଜ ସାଧନାରେ ସାଫଲ୍ୟ ମଣ୍ଡିତ ହୋଇଥିଲେ ।

କବିଚନ୍ଦ୍ର ଓଡ଼ିଆରେ ଆଶୁକବିତା, ସଂସ୍କୃତ ଶ୍ଳୋକ ଓ ସମସ୍ୟା ପୂରଣ ଶ୍ଳୋକ ରଚନାରେ ଅସାଧାରଣ ଦକ୍ଷତା ହାସଲ-କରିଥିଲେ । ସଂସ୍କୃତ କାବ୍ୟ କବିତାକୁ ଅନୁବାଦ କରିବାରେ ସେ ବିଶେଷ ଖ୍ୟାତି ଅର୍ଜ୍ଜନ କରିଥିଲେ । କାଳିଦାସଙ୍କ ବିରଚିତ ରଘୁବଂଶ କାବ୍ୟରେ ବର୍ଣ୍ଣିତ ଅଜ-ବିଳାପର ଏକ ମନୋରମ ଅନୁବାଦ ସେ ସ୍ଥିତ ପାଇଛନ୍ତି । ରଘୁପୁତ୍ର 'ଅଜ' ବିଗତ ପ୍ରାଣାପ୍ରିୟତମା ଇନ୍ଦୁମତୀଙ୍କୁ କୋଳରେ ଧରି ସନ୍ତାପରେ କପରି ଅଶ୍ରୁବର୍ଷଣ କରୁଛନ୍ତି । ତାହା ଏହି କାବ୍ୟର ଉପଜୀବ୍ୟ ବିଷୟ । ଏହା ବ୍ୟତୀତ ସେ ଶ୍ରୀ ହର୍ଷକୃତ ନୈଷଧ କାବ୍ୟର ନବମ ସର୍ଗରେ ବର୍ଣ୍ଣିତ ବିଷୟକୁ ରେଖି ରାଗରେ

ମର୍ମାନୁବାଦ କରି ବହିର ନାମକରଣ କରିଛନ୍ତି 'ବୈଦେହୀ' । ଶୃଙ୍ଗାର ଓ କରୁଣ ରସ ବିଭୂଷିତ ଏହି କାବ୍ୟରେ କବି ଦମୟନ୍ତୀଙ୍କ ସ୍ୱୟଂବର ବିଷୟ ଅତ୍ୟନ୍ତ ଜନମନୋହର ଭାଷାରେ ବର୍ଣ୍ଣନା କରିଛନ୍ତି । ପତିପ୍ରାଣା ଦମୟନ୍ତୀ ସ୍ୱୟଂବର ସଭାରେ ଇନ୍ଦ୍ର, ଅଗ୍ନି, ଯମ, ବରୁଣ ପ୍ରଭୃତିଙ୍କ ଉପସ୍ଥିତିରେ ନଳଙ୍କ ପ୍ରକୃତ ସନ୍ଧାନ ନପାଇ ଅତି ଦୁଃଖରେ କିପରି ଅଶ୍ରୁବର୍ଷଣ କରିଛନ୍ତି ତାର ଉଦାହରଣ ନିମ୍ନରେ ଦିଆଗଲା । ଏହି ଅନୁବାଦରେ କବି ସ୍ୱକୀୟ ପାଣ୍ଡିତ୍ୟପୂର୍ଣ୍ଣ ବକ୍ତୃତ୍ୱର ଚଖିର ମୁଦ୍ରା ଛୁଡ଼ି ଯାଇଛନ୍ତି ।

ତଥା କଜ୍ଜଳ କଚିର      ସହିତ ଚଞ୍ଚଳତର
ନେତ୍ରାଶ୍ରୁ ବିନ୍ଦୁ ଯୁଗଳ ସେ ଝୁମଜାର
ନେତ୍ରୋତ୍ପଳ ବିନ୍ଦୁ ଖସି      ସ୍ତନ କୋରକରେ ପଶି
ସେ ଯୁଗଳରେ ବିଳସିଥିବା ହାରର
ମଧ୍ୟବର୍ତ୍ତୀ ମଧୁବାନଳ      ମଣି ସୁଷମା ଧରିଲା
ଶୀତଳ ସଲିଳ

ବିଭିନ୍ନ ଧର୍ମଶାସ୍ତ୍ର ଓ ସ୍ମୃତି ଗ୍ରନ୍ଥଗୁଡ଼ିକରେ ବ୍ରତ, ପୂଜା, ଉପବାସ ପାଳନ କରିବା ବିଭିନ୍ନ କାଳ ଓ ବ୍ୟବସ୍ଥା ଉଲ୍ଲିଖିତ ଥିବାହେତୁ ଓ ପଞ୍ଜିକା ଗୁଡ଼ିକରେ ଉପରୋକ୍ତ ବିଷୟରେ ଦ୍ୱୈଧମତ ପ୍ରକାଶ-ପାଉଥିବା ହେତୁ ଧାର୍ମିକ ଜନତା ବହୁ ସମୟରେ ଏହି ସାମାଜିକ ବିଧି ବିଧାନ ଓ ଧର୍ମାନୁଷ୍ଠାନ ପାଳନରେ ବିଭ୍ରାନ୍ତ ହେଉଛନ୍ତି । ଏଣୁ ପଣ୍ଡିତ ମହାଶୟ କେତେକ ସମସ୍ୟା ଉପରେ ଧର୍ମଶାସ୍ତ୍ର ଓ ସ୍ମୃତି-ଗ୍ରନ୍ଥର ଜଟିଳ ବିଷୟଗୁଡ଼ିକୁ ସଂସ୍କୃତ ଗଦ୍ୟରେ ଓ ଓଡ଼ିଆରେ ବ୍ୟାଖ୍ୟାକରି 'ଧର୍ମଶାସ୍ତ୍ର ଓ ମତଭେଦଃ' ନାମକ ଏକ ପୁସ୍ତକ ରଚନା ଓ ପ୍ରକାଶକରି ଧାର୍ମିକ ଜନତାର ଅଶେଷ ଉପକାର ସାଧିତ କରିଛନ୍ତି ।

ଏହି ବହିର ଅନ୍ତିମ ନିବେଦନରେ ପଣ୍ଡିତ ଶବ୍ଦର ବ୍ୟାଖ୍ୟା କିପରି କରିଛନ୍ତି ପାଠକମାନେ ଅନୁଧ୍ୟାନ କରିବେ ।

ତ୍ୟକ୍ତ୍ୱା ମମାହ ମିତି ବନ୍ଧକରେ ପଦେ ଦ୍ୱେ
ଯେ ସନ୍ତ୍ର ଭୂମି ବିଳସନ୍ତ୍ୟୂହ ତ ଏବ ଧୀରାଃ
ତେଷାଂ ପଦାବ୍ଜଯୁଗଳଂ ସତତଂ ନମାମି
କୁର୍ବନ୍ତୁ ତେଽପି କରୁଣା ମୟିମେ କବୀନ୍ଦ୍ରେ

କବିବଲ୍ଲଭଙ୍କ ଦ୍ୱାରା ରଚିତ 'ଧୀରାନନ୍ଦ ଧାରା' ଗ୍ରନ୍ଥର ପ୍ରାୟ ୫୦୦୦ ଇଂରେଜୀ ଆପ୍ତବାକ୍ୟର ସଂସ୍କୃତ ଶ୍ଲୋକ ରଚନାରେ ସେ ସାହାଯ୍ୟ କରିଛନ୍ତି । କବିଙ୍କ ଦ୍ୱାରା ରଚିତ ଓ ପ୍ରକାଶିତ ସମସ୍ତ ବହିର ତାଲିକା ପ୍ରଦତ୍ତ ହେଲା (୧) ଗ୍ରନ୍ଥବନ୍ଧୁ ( ମାତିଗର୍ଭିକ ପୁସ୍ତକ ) (୨) ସରଳ ସଂସ୍କୃତ ବ୍ୟାକରଣ (୩) ଧର୍ମ ଦରିଦ୍ରକଳ (୪) ସମାସ-ପରିଚୟ (୫) ମୁଖଶ୍ରୀ (୬) ଚନ୍ଦ୍ରକଲ୍ଲେଶ୍ୱର ପଞ୍ଚଗୀତିକା (୭) ଏକାଦଶୀ-ମହାତ୍ମ୍ୟ – ମାର୍ଗଶୀର ମାସ (୮) ସାନୁବାଦ ଦୀନବନ୍ଧ୍ୱାଷ୍ଟକ (୯) ଅପୂର୍ବ ମାତୃ ଲତିକା (୧୦) ବୈଦର୍ଘ୍ୟ (୧୧) ଅଜବିଳାପ (୧୨) ନେହରୁ ବିୟୋଗ ଗୀତିକା (୧୩) ଧର୍ମଶାସ୍ତ୍ର ମତଭେଦଃ । ଏତଦ୍ ବ୍ୟତୀତ ସଂସ୍କୃତରେ ଅଷ୍ଟଭୂଜା ଜଣାଣ ଓ ଦେବୀଙ୍କ ଉଦ୍ଦେଶ୍ୟରେ ଶତାଧିକ ସ୍ତୁତି ଓ ସ୍ତୋତ୍ର ସଂସ୍କୃତ ଶ୍ଲୋକାକାରରେ ରଚନା କରିଛନ୍ତି । ଏଗୁଡିକ ଅପ୍ରକାଶିତ ଅବସ୍ଥାରେ ପଡିରହିଛି ।

କବି ସନ୍ତାନ ଲାଭରୁ ବଞ୍ଚିତଥିଲେ ଏଣୁ ନିଜକୁ ଅସହାୟ ମନେକରି ଏହି ବିପଦ ସଙ୍କୁଳ ସଂସାର କ୍ଷେତ୍ରରେ ଭଗବତୀହିଁ ଏକମାତ୍ର ଆଶ୍ରୟ ବୋଲି ମନେ କରୁଥିଲେ । ଏଣୁ ମଙ୍ଗଳମୟୀ ସଙ୍କଟ ତାରିଣୀ

ପରମେଶ୍ୱରଙ୍କ ଚରଣ ତଳେ ମନ, ପ୍ରାଣ ଓ ହୃଦୟକୁ ସମର୍ପଣକରି ବହୁସ୍ତବ ସରଳ ସଂସ୍କୃତ ଭାଷାରେ ରଚନା କରିଛନ୍ତି । ଦୁଇଟି ଶ୍ଲୋକର ଦୃଷ୍ଟାନ୍ତ ଦିଆଗଲା ।

କୁରୁ ମଙ୍ଗଳ-ବୈରି-ବିଦାରିଣି !
ସୁରୁଚିରାମ୍ବୁଜ ଜାଳ-ବିଳାସିନି
ସ୍ମର ବିନାଶକ ଧାମ-ସୁବାସିନି !
ପ୍ରଣତପଦାଶ୍ରିତ ମନସ୍ୱ ତାରିଣି ।

ବିଧିବିଧାନ ବିପର୍ଯ୍ୟୟ କୌଶଳ କଳିତ ଭକ୍ତଜନେଂମ୍ବୁଜ ଲୋଚନେ !
ଜନନି ! ତେତ୍ୱ ପଦେ ଶରଣଂ ସଦା ତ୍ୱମସି ଯେନ ଭବେ ଶରଣ ପ୍ରଦା

କବି ନିଜର ପରିଚୟ ଦେଇଛନ୍ତି :—

ରଚିତେୟଂ ଶ୍ଲୋକପଂକ୍ତି ର୍ଗଣେଶୁର କବୀନ୍ଦ୍ରନା
ନାରାୟଣ ପୁରସ୍ଥେନ ବୀରଭଦ୍ରସ୍ୟ ସୂନୁନା

କବିତା ରଚନା ଓ ସଂସ୍କୃତ କାବ୍ୟ ଅନୁବାଦରେ ତାଙ୍କର ଅସାଧାରଣ ପ୍ରତିଭା ଥିଲେ ମଧ୍ୟ କବିଜନୋଚିତ ସୌଜନ୍ୟ ରକ୍ଷାକରି ଉକ୍ତ ରଚନାରେ ତ୍ରୁଟି ପରିଲକ୍ଷିତ ହେଲେ ସୁଧୀବର୍ଗଙ୍କ ନିକଟରେ କ୍ଷମାଭିକ୍ଷା କରିବାକୁ ଭୁଲିନାହାଁନ୍ତି । ବୈଦର୍ଭୀ କାବ୍ୟରେ ସେ ଲେଖିଛନ୍ତି—

ନିନ୍ଦା ନକରନ୍ତୁ ବୋଲି ତେଣୁ କରେ ନତି
ବିବୁଧ-ମଣ୍ଡଳୀପୁରେ କବୀନ୍ଦ୍ର ଦୁର୍ମତି ।

କୌଣସି ହେଲେ ମାନ ସମ୍ମାନ ପ୍ରତି ବା ପୁରସ୍କାର ପ୍ରତି ଆଖିନରଖି ଜ୍ଞାନ ତପସ୍ୱୀ କବିଚନ୍ଦ୍ର ଗୋଟିକ ପରେ ଗୋଟିଏ ସାରସ୍ୱତ କୀର୍ତ୍ତି ଠିଆକରି ଜୀବନର ଶେଷ ପାଦରେ ଆର୍ଥିକ ଅନାଟନରୁ ଅତି ସାନହୀନ ଭାବେ ଜୀବନର ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।



# ପିତଳ ଯାତ ଓ କବି ମୋହନ ପଣ୍ଡା

ରାଜା ମଦନ ମୋହନ ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ଉନ୍ନତି ସାଧନ କରିବା ଲାଗି ଲେଖକ ପଣ୍ଡିତ ଓ ଗବେଷକ ମାନଙ୍କୁ ବିପୁଳ ପ୍ରୋତ୍ସାହନ ଦେବା ସଙ୍ଗେ ସଙ୍ଗେ କର୍ମମୟ ଜୀବନକୁ ଅତ୍ୟନ୍ତ ସରସ ଓ ଆନନ୍ଦମୟ କରିବାକୁ ରାଜ୍ୟରେ ପାଳିତ ହେଉଥିବା ବହୁ ଦେବଦେବୀ ଯାତ୍ରାକୁ ଅର୍ଥ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ନିଜେ ଯାତ୍ରାରେ ଉପସ୍ଥିତ ହୋଇ ଓଡ଼ିଶାର ଯାତ୍ରାସାହିତ୍ୟର ବିକାଶ ପାଇଁ କାଳୋଚିତ ଚିନ୍ତା ନିରୂପଣକରି କଳାକାର ମାନଙ୍କ ଶାଶ୍ୱତ କଳା କପରି ବଞ୍ଚିରହିବ ସେଥିପାଇଁ ସେମାନଙ୍କୁ ଉତ୍ସାହିତ କରୁଥିଲେ । ଯାତ୍ରାର ସର୍ବସାଧାରଣ ଅର୍ଥ ହେଉଛି ଗମନକରିବା ବା ଯିବା । ଧର୍ମାନୁଷ୍ଠାନ ସମ୍ପର୍କୀୟ ଲୋକ ଉତ୍ସବ ତଥା ନାଟ୍ୟକଳା ପ୍ରଦର୍ଶନକୁ ଯାତ୍ରା କୁହାଯାଏ । ଅନ୍ୟ କେତେକଙ୍କ ମତରେ ସାର୍ବଜନୀନ ଲୋକ ଉତ୍ସବ ପରି ନାଟ୍ୟକଥା ପ୍ରଦର୍ଶନ କାଳରେ ବହୁଜନ ସମାଗମ, ବହୁଦୃଶ୍ୟ ଏବଂ ଅଭିନୟ ପରିଦର୍ଶନ ତଥା ବିବିଧ ରସ ପରିଗ୍ରହଣ ହେଉଥିବାରୁ ଏହାକୁ ଯାତ୍ରା କୁହାଯାଏ ।

ବହୁ ପୁରାତନ କାଳରୁ ଓଡ଼ିଶାରେ ଯାତ୍ରାଗୀତ ବୋଲି କଥାଅଛି । ବର୍ତ୍ତମାନ ଯୁଗରେ ମଧ୍ୟ ବହୁଲୋକ ଏହି ଯାତ୍ରାଗୀତରେ ମାତି ଅଜସ୍ର ଅର୍ଥବ୍ୟୟ କରୁଛନ୍ତି । ଗଂଜାମର ବହୁସ୍ଥାନରେ ଯଥା ବ୍ରହ୍ମପୁର, କବିସୂର୍ଯ୍ୟନଗରେ, ପୋଲସରା ଓ ଭଞ୍ଜନଗର ପ୍ରଭୃତିରେ ପ୍ରତି ଦୁଇ କିମ୍ବା ତିନି ବର୍ଷରେ ଥରେ ଢ଼େଉଁପର୍ବ ବା ଠାକୁରାଣୀ ଯାତ୍ରା ମହା ସମାରୋହରେ ଅନୁଷ୍ଠିତ ହେଉଅଛି ।

ପତିତପାବନୀ ଋଷିକୂଲ୍ୟା ନଦୀର ଦକ୍ଷିଣ ତଟରେ ଅବସ୍ଥିତ ପିତଳ ଜନପଦରେ ୧୯୨୭ ମସିହାରେ ସଂକ୍ରାମକ ରୋଗରେ ଆକ୍ରାନ୍ତ ହୋଇ ବହୁବ୍ୟକ୍ତି ପ୍ରାଣ ହରାଇଲେ । ଏହି ସଂକ୍ରାମକରୋଗ ବ୍ୟାପିବାର ବହୁ ପୂର୍ବରୁ ପିତଳରେ ଠାକୁରାଣୀଯାତ୍ରା ହୋଇନଥିଲା । ଏହି ଯାତ୍ରା ବହୁ ଦିନରୁ ଅନୁଷ୍ଠିତ ନହୋଇଥିବା ଯୋଗୁଁ ଦେବୀଙ୍କ ପ୍ରକୋପରୁ ସଂକ୍ରାମକ ରୋଗ ବ୍ୟାପୀ ବହୁ ଜନକ୍ଷୟ ହୋଇଥିବା ବିଷୟରେ ଲୋକଙ୍କ ମନରେ ଧାରଣା ସୃଷ୍ଟି ହୋଇଥିଲା । ତେଣୁ ଧରାକୋଟ ପିତଳ ବାଡ଼ ଓ ପୂର୍ବଖଣ୍ଡ ପିତଳର ଜନସାଧାରଣ ଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏହି ଯାତ୍ରା ଉତ୍ସବ ୧୯୨୮ ମସିହା ମାଘମାସରେ ଆରମ୍ଭ କରିଥିଲେ । ଏହି ଠାକୁରାଣୀଯାତ୍ରା ଉତ୍ସବ ୨୧ ଦିନ ବ୍ୟାପି ଚାଲିଲା । ଏଥିରେ ଧରାକୋଟ ବାଡ଼ର ପ୍ରାୟ ଏକଲକ୍ଷ ଟଙ୍କା ବ୍ୟୟ ହୋଇଥିଲା । ସାରା ଗଂଜାମରୁ ବହୁ ବିଶିଷ୍ଟ ବ୍ୟକ୍ତି ଏହିଯାତ୍ରା ଦେଖିବାକୁ ପିତଳରେ ରୁଣ୍ଡ ହୋଇଥିଲେ । ଶେଷଦିନ ଦୁଇଲକ୍ଷ ଲୋକଙ୍କ ସମାଗମ ହୋଇଥିଲା । ଏହି ଅଭୂତ ପୂର୍ବଯାତ୍ରା ଗଂଜାମରେ ଅନ୍ୟ କେଉଁଠାରେ ଏ ଯାଏଁ ହୋଇନାହିଁ ବୋଲି ଜଣାଯାଏ ।

ଏହି ଯାତ୍ରାରେ ଯେଉଁ ଠଙ୍କାପଙ୍କ ହେଲା ତାର ସ୍ମୃତିରକ୍ଷା ପାଇଁ ପିତଳର କବି ମୋହନ ପଣ୍ଡା ଏକ ପୁରାଣ ଚଉଦ ଅକ୍ଷରୀ ବୃତ୍ତିରେ ଅତି ସରଳ ସୁନ୍ଦର ଓ ହାବଲୀଳ ଭାଷାରେ ରଚନାକରି ଅଶେଷ ସଦ୍‌ଗୁଣ ବିଧାନ, ସାହିତ୍ୟ ରସିକ, ଯାତ୍ରାର ଉତ୍ସାହ ଦାତା ଋଷିଙ୍କ ଧରାକୋଟ ଯୁବରାଜ ସ୍ୱର୍ଗତ ବ୍ରଜକିଶୋର ଚନ୍ଦ୍ର ସିଂହ ଦେଓଙ୍କ ନାମରେ ୧୯୩୦ ଖ୍ରୀଷ୍ଟାବ୍ଦରେ ଉତ୍ସର୍ଗ କରିଛନ୍ତି । କବି ଏହି ପୁରାଣରେ ପିତଳ ଜନପଦର ବର୍ଣ୍ଣନା ବସନ୍ତଋତୁ ବର୍ଣ୍ଣନା, ଧରାକୋଟ ଓ ପୁରଂଦଣ୍ଡ ବାଜାର ଶୁଭସମ୍ବନ୍ଧ, ମହାମାୟୀଙ୍କ ବେଶବର୍ଣ୍ଣନା, ଯାତ୍ରାପଡ଼ିଆ ଓ ଦାଣ୍ଡରେ ନିର୍ମିତ, ଇନ୍ଦ୍ରସଭା, ଯୁଧିଷ୍ଠିରଙ୍କ ସଭା ପୋଲିସର କାଳୀ, ରସଲୀଳା ପ୍ରଭୃତି ୫୭ ଗୋଟି ସଭାଗୃହ, ମେଢ଼ ଓ କଳାକୁଞ୍ଜର ବର୍ଣ୍ଣନା, ବହୁ ନାଟକ, ସାର୍କାସ ଓ କଳାକାର ମାନଙ୍କ ଚମତ୍କାର କୁସ୍ତି କସରତ ବର୍ଣ୍ଣନା, ମହାମାୟୀଙ୍କ ଶୋଭାଯାତ୍ରା ଓ ଭେଟ ଓ ବିଂଶତି ଦିବସର ବେଶ ଓ ପଟୁଆର ବର୍ଣ୍ଣନା ଆଲୋକ ସଜ୍ଜା, ଶେଷ ଦିବସର ଅଖଣ୍ଡ-ଯାତ ବର୍ଣ୍ଣନା, ଧରାକୋଟ ରାଜା ମଦନ ମୋହନ ସିଂହ ଦେଓ ଓ ଯୁବରାଜଙ୍କ ଯାତ୍ରାକୁ ବିଜେ ହୋଇଥିବା ସମୟର ପଟୁଆର ବର୍ଣ୍ଣନା ଅତ୍ୟନ୍ତ ପ୍ରାଞ୍ଜଳଭାବେ ମଞ୍ଜୁଳ ଓ ଆଳଂକାରିକ ଭାଷାରେ ବର୍ଣ୍ଣନାକରି ତାଙ୍କ ସୂକ୍ଷ୍ମ ଦୃଷ୍ଟି ଭଙ୍ଗୀ ଓ ରଚନା ପାଟବର ପରିଚୟ ଦେଇଛନ୍ତି ।

ଧରାକୋଟ ରାଜା ଓ ଯୁବରାଜଙ୍କ ଯାତ୍ରାବିଜେ ସମୟର ଆଡ଼ମ୍ବର ପୂର୍ଣ୍ଣ ବର୍ଣ୍ଣନା କବି କିପରି କରିଛନ୍ତି ନିମ୍ନୋକ୍ତ କେତେକ ପଦରୁ ପାଠକମାନେ ଜାଣିପାରିବେ ।

ଐରାବତ ପୃଷ୍ଠରେ ଧରାକୋଟ ଚନ୍ଦ୍ର
ବସି ବାହାରିଲେ ନୃପତିକୁଳ ଚନ୍ଦ୍ର

ପୁଷ୍ପଦଳ ଆବେଢ଼ୀ ଶାରସୁବରାଜ
ବଜସ୍ପ ଦେଖି ଲୋକେ ହୋଇଲେ ଆଶ୍ଚର୍ଯ୍ୟ ।
ତା ପଛକୁ ଲଗି କୁମୁଦାଞ୍ଜନ ହାତୀ
ହାତୁଣୀ ସଙ୍ଗେ ଯେନ ମନ୍ଦରେ କଲ୍ ଗତି ।
ସେହି କାଳେ ଇନ୍ଦ୍ର ଶବସେନ ପରି
ପାଇଲା ଶୋଭା ଜାଣ ପିତଳ ସ୍ୱର୍ଗପୁରୀ ।
ସେହି କାଳେ ବକଟ ଉପମା ହୋଇଲ୍
ଲେଖକଙ୍କୁ ମୋହର ହସ୍ତ ନବଳଲ୍ ।
ପଣ୍ଡିମାଚଳ ତଟେ ଯୋଡଏ ଚନ୍ଦ୍ର ଆସି
ଉଦସ୍ପ ହୋଇଲେକ ଯାଉଥିଲ୍ ଦଶି ।
ଶଶୀ ସୂର୍ଯ୍ୟ ଦୁହେଁକ ଆସି ଏକାବେଳେ
ଧରାକୋଟ ପିତଳ ଯାତରେ ଉଭା ହେଲେ ।
କବା ପ୍ରଦ୍ୟୁମ୍ନଙ୍କୁ ଧରି ହୃଷୀକେଶ
ପିତଳ ଯାତ ମଧ୍ୟେ ହୋଇଲେ ପରବେଶ ।
ସେହିକାଳେ ବୀର କାହାଳୀ ଜସ୍ଦଜସ୍ପ
ବୋଲି ଡାକଦେଲ୍ କମାଇ ନିଜ ଦେହ ।
ତା ଜାଣିପାରି ଐରାବତ ପାଟହାତୀ
ପକାଇଲ୍ ଚ୍ୟମର ରାଜାଙ୍କ ଚଡ଼କନ୍ତ ।

ସଙ୍କଟ ତାରଣୀ ଆର୍ତ୍ତହାରଣୀ, କଳି-କଳୁଷ ବଧ୍ୱଂସିନୀ ଦେବଙ୍କ ମହିମା ରୂପ ବର୍ଣ୍ଣନା ଓ ବନ୍ଦନା କବଙ୍କ ସୁଧା ସ୍ରାବଣୀ ଲେଖନୀ ମୁନରୁ କପରି ଝରେ ତେଉଁ, ତାର କସ୍ପୁତ୍ ଅଂଶ ଦଆଗଲ୍ ।

ଜୟ ଶ୍ରୀ ଦେବୀ ଦୁର୍ଗେ-ଦୁର୍ଗତି-ତାରିଣୀ
ଶଙ୍କର ହୁଲସିନୀ ବିପଦ ବିଧ୍ୱଂସିନୀ ।

ଅମଳ ସୁକୋମଳ ବନଜ ଆନନୀ
ସର୍ବ ଆଭରଣା ଭରଣ-କାତ୍ୟାୟନୀ ।

ସୁରଯକ୍ଷ କିନ୍ନର ଅମର ବନ୍ଦନା
ଭବଭୟ ହାରିଣୀ ଦୁଃଖ ବିମୋଚନୀ ।

ଅମ୍ବୁଜ ପତ୍ର ନେତ୍ରୀ ମହେଶ ବିନୋଦିନୀ
ତ୍ରିଶୂଳ ପାଶେଦଣ୍ଡା ଖଡ଼ଗ ଭୂଷଣୀ ।

ତୁମ୍ଭ ଶ୍ରୀ ଚରଣେ କରୁଛି ଦର୍ଶନି
ମୋହଠାରେ କରୁଣା କର କାତ୍ୟାୟିନୀ ।

ତୁମ୍ଭର ପବନ୍ମିକା ଗୀତରେ ପ୍ରକାଶ
କରିବାକୁ ମୁହିଁ କରୁଛି ସାହାସ ।

ମୋହଠାରେ ସଦୟ ହୁଅ ମହାମାୟୀ
ମୂର୍ଖଙ୍କର ମୂର୍ଖ ଅଟଇଟି ମୁହିଁ ।

ଏକୋଇଶ ଦିନ ତଦ୍ଧ ଯାତ୍ରାଗୀତ
କରିବାକୁ ଆଜ୍ଞାଦିଅ ନେକମାତ ।

କବି ମୋହନ ପଣ୍ଡା ଏହି ଯାତ୍ରା ପୁସ୍ତକଟି ଧରାକୋଟ ଯୁବରାଜଙ୍କ ସାହଚର୍ଯ୍ୟରେ ୧୯୩୦ ମସିହାରେ ମୁଦ୍ରିତ ଆକାରରେ ପ୍ରକାଶକରି ଓଡ଼ିଆ ଭାଷା ସାହିତ୍ୟକୁ ପରିପୁଷ୍ଟ କରି ପାରିଛନ୍ତି ।

—୦—

# ରାଜା ବ୍ରଜକିଶୋରଚନ୍ଦ୍ର ସିଂହ ଦେଓ

ବ୍ରଜକିଶୋରଚନ୍ଦ୍ର ସିଂହ ଦେଓ ସ୍ୱର୍ଗତଯଶ ରାଜାମଦନମୋହନ-ସିଂହ ଦେଓଙ୍କ ଜ୍ୟେଷ୍ଠପୁତ୍ର ଥିଲେ । ସେ ୧୯୦୦ ମସିହାରେ ଭୂମିଷ୍ଠ ହୋଇଥିଲେ । ତାଙ୍କର ବାଲ୍ୟଶିକ୍ଷା ସ୍ଥାନୀୟ ଶ୍ରୀରାଜ ମିଡ଼ଲ ସ୍କୁଲରେ ହୋଇଥିଲା । ଏଠାରୁ ଶିକ୍ଷାସମାପ୍ତକରି ସେ ରାୟପୁର ରାଜକୁମାର କଲେଜରେ ଅଧ୍ୟୟନ କରି ଏ. ଫ. ଏ. ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କର ଶୁଭ ପରିଣୟ ଗଡ଼ ମଧୁପୁର ରାଜନେମାଙ୍କ ସହ ତା ୨୩-୨-୨୪ ରେ ହୋଇଥିଲା । ସେହିବର୍ଷ ସେ ଯୁବରାଜ ପଦରେ ଅଧିଷ୍ଠିତ ହୋଇ ରାଜ୍ୟ ଶାସନ କାର୍ଯ୍ୟରେ ପିତାଙ୍କୁ ସାହାଯ୍ୟ କରିବାରେ ମନୋନିବେଶ କଲେ ।

ବ୍ରଜକିଶୋର ଥିଲେ ଓଡ଼ିଆ ପ୍ରାଣ । ନିଜ ମାତୃଭାଷା ପ୍ରତି ତାଙ୍କର ଅତ୍ୟନ୍ତ ଶ୍ରଦ୍ଧାଥିଲା । ଏଣୁ ମାତୃଭାଷାର ଉନ୍ନତିକଳ୍ପେ ତରୁଣ ବୟସରୁ ଓଡ଼ିଆରେ ଲେଖା ଲେଖି ଆରମ୍ଭ କରିଥିଲେ । ଆଦ୍ୟ ଯୌବନରୁ ସେ ନିଜର ଅପରୂପ ସୌନ୍ଦର୍ଯ୍ୟ ଦେବୋପମ ଗୁଣ ଓ ସେବାପରାୟଣତାରେ ସମସ୍ତଙ୍କୁ ମୁଗ୍ଧ କରି ପାରିଥିଲେ । ତାଙ୍କର ଧାର୍ମିକତା ପ୍ରତିଭା ଓ ଗୁଣରେ ମୁଗ୍ଧ ହୋଇ ନାରାୟଣପୁରର ସ୍ୱର୍ଗୀୟ ବିଶ୍ୱନାଥ ମିଶ୍ର (ବିଦ୍ୱାନ୍) ଯେଉଁ ପଦ୍ୟ ଲେଖିଛନ୍ତି ତାର ଗୋଟିଏ ପଦ ଏଠାରେ ଉଦାହୃତ ହେଲା ।

**ଅବନୀ ବ୍ୟାପିନୀ ଗୁଣକୀର୍ତ୍ତିଶ୍ରେଣୀ ଆଚ୍ଛାଦନେ ଧୀରବର**
**ଭବ ଧବଳୋଡ଼ କଞ୍ଜସୂର୍ଯ୍ୟତେଜ ଦର୍ଶିଗଲା ଆରପାର ।**

ପିତା ରାଜକାର୍ଯ୍ୟ ପରିଚାଳନା କରୁଥିବା ହେତୁ ଯୁବରାଜ ତାଙ୍କର ଅଧିକାଂଶ ସମସ୍ତ ପ୍ରଜାବର୍ଗଙ୍କ ସ୍ୱାସ୍ଥ୍ୟସେବା, ସାହିତ୍ୟସାଧନା, କଳା, ସଂସ୍କୃତି ଓ ଧର୍ମଚର୍ଚ୍ଚାରେ ମନୋନିବେଶ କରିବାପାଇଁ ସୁଯୋଗ ପାଇଥିଲେ । ସେ ସମୟରେ ଧରାକୋଟରେ ଉପଯୁକ୍ତ ଚିକିତ୍ସାଳୟର ଅଭାବ ଉପଲବ୍ଧିକରି ରାଜବାଟୀରେ ଏକ ହୋମିଓ ଚିକିତ୍ସାଳୟ ପ୍ରତିଷ୍ଠାକରି ବିନାମୂଲ୍ୟରେ ରୋଗୀ ଲୋକଙ୍କ ଚିକିତ୍ସା କରିବା ସଙ୍ଗେସଙ୍ଗେ ଔଷଧ ବିତରଣ କରୁଥିଲେ । ହୋମିଓପାଥି ଚିକିତ୍ସାଶାସ୍ତ୍ର ଅଧ୍ୟୟନକରି ଉକ୍ତ ବିଷୟରେ ଏଲ୍. ଏଚ୍. ଏମ୍. ଏସ୍. ପ୍ରମାଣପତ୍ର ହାସଲ କରିଥିଲେ ।

ସେ ସମୟରେ ଧରାକୋଟ ଅରଣ୍ୟ ସଙ୍କୁଳଥିଲା । ହିଂସ୍ର-ଜନ୍ତୁମାନେ ପ୍ରଜାମାନଙ୍କର ଧନ, ଜୀବନ ଓ ଶସ୍ୟ ନଷ୍ଟକରି ରାଜ୍ୟର ବିପୁଳ କ୍ଷତିସାଧନ କରୁଥିଲେ । ହିଂସ୍ରଜନ୍ତୁ ବିଶେଷତଃ ବ୍ୟାଘ୍ର ଓ ଭାଲୁ ଉପଦ୍ରବରୁ ପ୍ରଜାମାନଙ୍କୁ ରକ୍ଷାକରିବା ପାଇଁ ରାଜ୍ୟରେ ଦଳେ ଶିକାରୀ ରଖିଥିଲେ । ସେ ନିଜେ ସମସ୍ତ ଶସ୍ତ୍ର ବିଦ୍ୟା ବ୍ୟବହାର କରିବାରେ ଧୁରୀଣଥିଲେ । ନିଜେ ଅଶ୍ୱାରୋହଣ ପଟୁ, ତଥା ତାଙ୍କର ଲକ୍ଷ୍ୟ ଅବ୍ୟର୍ଥଥିବା ହେତୁ ବାଘ ଉପଦ୍ରବ ଶୁଣିଲା ମାତ୍ରେ ସେ ଉପଦ୍ରୁତ ଅଞ୍ଚଳକୁ ଯାଇ ବାଘମାରିବା ଉପାୟ କରୁଥିଲେ । ଧରାକୋଟର କବି ସାରଥି ଦାସ ତାଙ୍କ ବ୍ୟାଘ୍ର ପୁରାଣରେ ସେ ୩୯ ଗୋଟି ବ୍ୟାଘ୍ର ଶିକାର କରିଥିବା ବିଷୟ ଉଲ୍ଲେଖ କରିଛନ୍ତି । ତାଙ୍କର ଶିକାର କୌଶଳ ବିଷୟରେ ସେ ଲେଖିଛନ୍ତି—

ଶ୍ରୀ ମଦନ ମୋହନ ସିଂହନନ୍ଦବଂଶୀ
ପ୍ରଜାଙ୍କୁ ପାଳି ଦୁଃଖୀ ରଙ୍କଙ୍କି ଛନ୍ତି ପୋଷି ,
ତାହାଙ୍କ ପାଟଦେବ ଶ୍ରୀ ବ୍ରଜକିଶୋର
ସିଂହନାମ ବିଶ୍ୱ ବିଦିତ ସୁନ୍ଦର ,,

ବୀରପଣେ ତାହାଙ୍କୁ ଗଣନା କରନ୍ତି
ଶିକାର କରିବାରେ ସଦାମନଦିଅନ୍ତି
ଲକ୍ଷନାଟ୍ଟ ନଳ ବିଦ୍ୟାର ମରମ
ଜାଣିଛନ୍ତି ଶିଖି ଅଛନ୍ତି ଉତ୍ତମ

ସେ ସମୟରେ ନାଟକ ରଚନାକରି ମଞ୍ଚସ୍ଥକରିବା ପାଇଁ ପାରଳାଖେମଣ୍ଡି, ଚିକିଟି ସୁରଙ୍ଗୀ ପ୍ରଭୃତିର ରାଜାମାନଙ୍କ ଭିତରେଯେପରି ଅଦମ୍ୟ ଉତ୍ସାହ ଓ ପ୍ରତିଦ୍ୱନ୍ଦିତା ହେଉଥିଲା ସେଥିରୁ ଧରାକୋଟ ବାଦ୍ ଯାଇନଥିଲା । ୧୯୦୨ ଖ୍ରୀଷ୍ଟାବ୍ଦରେ ପାରଳା ଖେମଣ୍ଡିରେ ଯେପରିଗୋଟିଏ ରଙ୍ଗମଞ୍ଚ ପ୍ରତିଷ୍ଠିତ ହୋଇଥିଲା ପରେକିଛି କାଳପରେ ଧରାକୋଟରେ ମଧ୍ୟ ରାଜା ମଦନ ମୋହନଙ୍କ ଦ୍ୱାରା କେତେଗୋଟି ରଙ୍ଗମଞ୍ଚ ସ୍ଥାପିତ ହୋଇଥିଲା । ଯୁବରାଜ ବ୍ରଜକିଶୋର ନିଜେ ଦୁଇଗୋଟି ପୌରାଣିକ ଭକ୍ତିରସାଶ୍ରିତ ନାଟକ 'କାଶୀ ଓ ଭକ୍ତମାଳ'ଶ୍ରେୟ' ରଚନାକରି ନିଜ ରଙ୍ଗମଞ୍ଚରେ ଅଭିନୀତ କରାଇବା ବ୍ୟବସ୍ଥା କରିଥିଲେ । ଉକ୍ତନାଟକଦ୍ୱୟ ସେ ଯଥାକ୍ରମେ ୧୯୨୨ ଓ ୧୯୨୯ ଖ୍ରୀଷ୍ଟାବ୍ଦରେ ରଚନାକରି ମୁଦ୍ରାକାରରେ ପ୍ରକାଶ କରିଥିଲେ । ଏହିନାଟକର ଭାଷାଯେପରି ସରଳ ଓ ମଧୁର ଭାବମଧ୍ୟ ସେପରି ଉଚ୍ଚ ଓ ମହତ୍ ହୋଇପାରିଛି । ଏଥିରେ ସନ୍ନିବେଶିତହୋଇ ଥିବା ସଙ୍ଗୀତ ଗୁଡିକ ଅତ୍ୟନ୍ତ ଲଳିତ ଭାଷାରେ ରଚିତ ହୋଇଛି ।

ସ୍କନ୍ଦ ପୁରାଣାନ୍ତର୍ଗତ କାଶୀଖଣ୍ଡରେ ବର୍ଣ୍ଣିତ ଦିବୋଦାସଙ୍କ ଚରିତ ଏବଂ ହିନ୍ଦିଭାଷାରେ ଲିଖିତ କାଶୀ ମାହାତ୍ମ୍ୟନାମକ ଏକ ବହିର ଅବଲମ୍ବନରେ କାଶୀନାଟକ ରଚିତ ହୋଇଛି । ନାଟକ ଅନ୍ତର୍ଗତ ଗୀତଗୁଡିକ ପ୍ରାଚିନ ଓ ନୂତନର ସମାବେଶରେ ରଚିତ ହୋଇଥିବାରୁ ଯେପରି ଶ୍ରୁତିମଧୁର ସେପରି ହୃଦୟଗ୍ରାହୀ ହୋଇଛି । 'କାଶୀବିଶ୍ୱନାଥଙ୍କ ମହିମା ବର୍ଣ୍ଣନାକରିବାକୁ ଯାଇ ଲେଖକ ଯେଉଁ ଭକ୍ତିରସାତ୍ମକ ଗୀତ ତାଙ୍କ ନାଟକରେ ଉଲ୍ଲେଖ କରିଛନ୍ତି ତାର ଦୁଇପଦ ଦିଆଗଲା ।

ଶିବେବନ୍ଦୀ-ନାଥସେହି ସେ ଭବଗ୍ରାହୀ (ପଦ)
କନନେ ଗଗନେ-ସ୍ଥଳେ କ କାନନେ
ସବୁଠାରେ ରହିଛନ୍ତି ସେ ୧

କରଯେ ଭକତି-ଅବଶ୍ୟ ମୁକତି
ଦିଅନ୍ତି ସଦୟ ହୋଇସେ ୨

ହେଲେପରସନ୍ନ-ଦେବେ ଦରଶନ
ଭଜିଲେ ଯେ ଯହିଁ ତହିଁସେ ୩

ଏହି ନାଟକ ପୌରାଣିକ ହେଲେ ହେଁ, ବହୁ ଐତିହାସିକ ତତ୍ତ୍ୱ ସେଥିରେ ପ୍ରତିଫଳିତ ହୋଇଛି । ଲେଖକ ବଙ୍ଗଳା ଓ ହିନ୍ଦି ଭାଷାରେ ମଧ୍ୟ ବ୍ୟୁତ୍ପତ୍ତି ଲାଭକରିଥିଲେ । ଏହିନାଟକରେ ପାତ୍ର ପାତ୍ରୀଙ୍କ ମୁଖରେ ଦେଶକାଳକୁ ଆଖି ଆଗରେ ରଖି କେତେକ ଗଦ୍ୟ ସଂଳାପ ହିନ୍ଦି ଓ ବଙ୍ଗାଳୀ ଭାଷାରେ ପ୍ରକାଶ କରିଛନ୍ତି । ଏହି ନାଟକ ଗୁଡ଼ିକ ଅନୁଧ୍ୟାନକଲେ ସେ ସମୟରେ ପୂର୍ବରୁ ପ୍ରକାଶ ପାଉଥିବା 'ପୂର୍ଣ୍ଣବାସୀ ପତ୍ରିକା' ଗଡ଼ଜାତରୁ ପ୍ରକାଶ ପାଉଥିବା "ଗଡ଼ଜାତ ବାସିନୀ" ସମ୍ବଲ ପୁରରୁ ପ୍ରକାଶ ପାଉଥିବା 'ସାଧନା ପତ୍ରିକା' ଓ ବ୍ରହ୍ମପୁରର 'ଆଶା'

ପତ୍ରିକା ଖୁବ୍ ଉଚ୍ଚକୋଟୀର ମନ୍ତବ୍ୟ ପ୍ରକାଶ କରିଛନ୍ତି । ଏହି ନାଟକ ସମ୍ପର୍କରେ ଗଡ଼ଜାତ ବାସିନୀ ପତ୍ରିକା ତା ୨୪-୧୧-୧୯୨୯ ରେ ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲେ ତାର କିୟଦଂଶ ପ୍ରକାଶ କରାଗଲା "ଭକ୍ତମାର୍କଣ୍ଡେୟ" ନାଟକରେ ବିଷୟଟି ପୌରାଣିକ ହୋଇଥିଲେ ହେଁ ବିଷୟଟିର ଭାବର ଉତ୍କର୍ଷ ଉଲ୍ଲେଖ ଯୋଗ୍ୟ । ସାଧାରଣତଃ ସ୍ୱୟଂ ଯୁବରାଜ ମହୋଦୟ ସାହିତ୍ୟକାନନ ପଥରେ ଜଣେ ପ୍ରବୀଣ ପରିବ୍ରାଜକ ସଦୃଶ ପରିଚୟ ଦେଇଥିଲା ପରି ସମ୍ପୂର୍ଣ୍ଣ ଜ୍ଞାପିତ ହେଉଛି । ବିଶେଷତଃ ଭବିଷ୍ୟଦ୍ ବୋଧକ ଶିକ୍ଷାଲବ୍ଧ ଆଶା

ଯେଉଁ ମାନଙ୍କର ବଳବତୀ ସେମାନଙ୍କ ପକ୍ଷେ ଏହାର ଦୁଷ୍ପ୍ରାପ୍ୟ ସ୍ୱାଦୁ ଅନାୟାସ ଲବ୍ଧହେବା ଅବଶ୍ୟମ୍ଭାବୀ-ସୁତରାଂ ଇଦୃଶ ଭକ୍ତିରସାତ୍ମକ ଶିକ୍ଷା ସଂଯୁକ୍ତ ପୁସ୍ତକର ପ୍ରଣୟନ କର୍ତ୍ତା ସର୍ବ ସମକ୍ଷରେ ଧନ୍ୟବାଦାର୍ହ ହୁଅନ୍ତୁ ଏହାହିଁ ଆମ୍ଭମାନଙ୍କର କାମନା "।

ଉପରୋକ୍ତ ନାଟକ ବ୍ୟତୀତ ସେ 'ଶ୍ରୀପୁରୁଷୋତ୍ତମ' ନାମକ ଅନ୍ୟ ଏକ ନାଟକ ମଧ୍ୟ ରଚନା କରିଥିଲେ । ସେ ଏକାଧାରରେ ଜଣେ ଐତିହାସିକ , ଗବେଷକ ସାହିତ୍ୟ ସାଧକ ଓ ଧର୍ମପ୍ରାଣ ବ୍ୟକ୍ତି ହିସାବରେ ଖ୍ୟାତିଲାଭ କରିଥିଲେ ସେ ୧୯୩୫ ଖ୍ରୀଷ୍ଟାବ୍ଦରେ ନିଜ ପିତୃଦେବଙ୍କ ସହ ସମଗ୍ର ଉତ୍ତର ଭାରତ ଭ୍ରମଣ କରି ବହୁ ପୌରାଣିକ, ଐତିହାସିକ ଓ ଧର୍ମପୀଠ ଗୁଡ଼ିକ ଦର୍ଶନ ଲାଭକରିବାର ସୁଯୋଗ ପାଇଥିଲେ । ତୀର୍ଥଭ୍ରମଣ ସମୟରେ ସେ ଗୁଡ଼ିକର ଉତ୍ପତ୍ତି ଓ ବୈଶିଷ୍ଟ୍ୟ ସମ୍ପର୍କରେ କିମ୍ବଦନ୍ତୀ ଓ ଗାଇଡ ବହିରୁ ବହୁତଥ୍ୟ ସଂଗ୍ରହକରି ଟିପାଖାତାରେ ଟିପି ରଖିଥିଲେ । ନିଜ ବାସଭବନକୁ ଫେରିବା ପରେ ଦର୍ଶନୀୟ ସ୍ଥାନ

ଗୁଡ଼ିକ ସମ୍ପର୍କରେ ବିଭିନ୍ନ ବହିରୁ ବହୁତଥ୍ୟ ସଂଗ୍ରହକରି 'ଉତ୍ତର ଭାରତ ଭ୍ରମଣ' ନାମକ ଏକ ଉପାଦେୟ ଗ୍ରନ୍ଥ ପ୍ରଣୟନକରି ୧୯୩୫ ମସିହାରେ ପ୍ରକାଶ କରିଥିଲେ । ଏହି ଗ୍ରନ୍ଥ ଗବେଷକ ମାନଙ୍କୁ ବହୁ ପ୍ରାମାଣିକ ତଥ୍ୟ ଯୋଗାଇବାରେ ସାହାର୍ଯ୍ୟ କରୁଛି ।

ତାଙ୍କର ବିକାଶୋନ୍ମୁଖୀ ପ୍ରତିଭା ଓ ରଚନା ପାଟବରେ ମୁଗ୍ଧ ହୋଇ ସ୍ୱର୍ଗୀୟ କବି ଶ୍ୟାମସୁନ୍ଦର ତାଙ୍କ ସମ୍ପର୍କରେ ଯେଉଁ ପଦ୍ୟ ରଚନା କରିଛନ୍ତି ସେଥିରୁ ଗୋଟିଏ ପଦ ଉଦ୍ଧୃତ କରାଗଲା ।

"ମଣିଖଣିଜାତ ମଣିସମ ଯୋଗ୍ୟ ନରମଣି ଏ ନିଶ୍ଚୟ ,,
ବାଣୀ ସେବାରତ ଫଣୀମଣି ମରଦନ ପଦାବ୍ଜେ ଯାଳୟ,

ଏହି ପ୍ରତିଭାସମ୍ପନ୍ନ ସାହିତ୍ୟ ରସିକ ଧରାକୋଟର ସୁଯୋଗ୍ୟ ଯୁବରାଜ ରାଜା ମଦନମୋହନଙ୍କ ମୃତ୍ୟୁପରେ ତା ୨୬-୩-୧୯୩୭ ରେ ଧରାକୋଟର ରାଜ ପଦରେ ଅଭିଷିକ୍ତ ହୋଇଥିଲେ । କିନ୍ତୁ ଅତି ଅଳ୍ପ କାଳ ରାଜତ୍ୱ କରିବା ପରେ ଆକସ୍ମିକ ଭାବେ ବସନ୍ତ ରୋଗରେ ପୀଡ଼ିତ ହୋଇ ସଂସାର କ୍ଷେତ୍ରରୁ ତା ୩-୧୦-୧୯୩୮ ରେ ଚିର ବିଦାୟ ନେଇଥିଲେ । ରାଜତ୍ୱର ସ୍ୱଳ୍ପ ସମୟ ମଧ୍ୟରେ ସେ ବହୁ ପ୍ରଜାନୁରଞ୍ଜନ କାର୍ଯ୍ୟକରି ରାଜ୍ୟବାସୀଙ୍କର ପ୍ରିୟ ଭାଜନ ହୋଇପାରିଥିଲେ । ତାଙ୍କ ଅକାଳ ବିୟୋଗରେ ଉତ୍କଳ ଭାଷା ଓ ସାହିତ୍ୟର ଅପୂରଣୀୟ କ୍ଷତି ଘଟିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।



# ରାଜା ପଦ୍ମନାଭ ସିଂହ ଦେଓ

ରାଜା ବ୍ରଜକିଶୋର ଚନ୍ଦ୍ର ସିଂହଙ୍କ ମୃତ୍ୟୁ ବେଳକୁ ତାଙ୍କର ଦୁଇ ପୁତ୍ରଙ୍କ ମଧ୍ୟରୁ ଜ୍ୟେଷ୍ଠ ପୁତ୍ର ପଦ୍ମନାଭ ସିଂହଦେଓ 'ନା' ବାଳକ ଥିବା ହେତୁ ଧରାକୋଟ ରାଜ୍ୟ ପ୍ରାୟ ୯ବର୍ଷ କାଳ ରାଜ୍ୟ ସରକାରଙ୍କତତ୍ତ୍ୱବଧାନରେ ପରିଚାଳିତ ହେଲା । ପଦ୍ମନାଭ ସିଂହଦେଓ ତା୨୫ ୧୦-୧୯୨୫ କାର୍ତ୍ତିକ କୃଷ୍ଣ ଷଷ୍ଠୀଦିନ ଜନ୍ମ ଗ୍ରହଣ କରିଥିଲେ । ଧରାକୋଟ ନିମ୍ନ ମାଧ୍ୟମିକ ସ୍କୁଲରୁ ଶିକ୍ଷା ସମାପ୍ତ କରି ସେ ୧୯୩୮ ମସିହାରେ ଷ୍ଟୁଆର୍ଟ ସ୍କୁଲରେ ଅଧ୍ୟୟନ କରି ୧୯୪୪ ମସିହାରେ ସିନିଅର କେମ୍ବ୍ରିଜ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେ ରେଭେନ୍ସା କଲେଜରୁ ଆଇ. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ଉଚ୍ଚଶିକ୍ଷା ପାଇଁ ଅଭିଳାଷ ପୋଷଣ କରିଥିଲେ । କିନ୍ତୁ ପ୍ରାପ୍ତ ବୟସରେ ଉପନୀତ ହୋଇଥିବା ଯୋଗୁଁ ସରକାର ତାଙ୍କ ରାଜ୍ୟର ପରିଚାଳନା ଭାର ତାଙ୍କୁ ପ୍ରତ୍ୟର୍ପଣ କରିଥିଲେ । ଏଣୁ ସେ ତା ୨୫-୧୦-୧୯୪୬ ରେ ଧରାକୋଟ ସିଂହାସନ ଆରୋହଣ କରଥିଲେ । ତାଙ୍କର ଶୁଭ ପରିଣୟ ବାଙ୍କୀର ରାଜ ଜେମା ପାର୍ବତୀ କୁମାରୀଙ୍କ ସହ ଅନୁଷ୍ଠିତ ହୋଇଥିଲା ।

ସେ ଜଣେ ଉତ୍ତମ ଶାସକ ଥିଲେ । ସହୃଦୟତା , ଦୟାଶୀଳତା, ବଦାନ୍ୟତା , ଉଦାରତ ଓ ନୈତିକ ତାର ସେ ମୂର୍ତ୍ତିମନ୍ତ ପ୍ରତୀକ ଥିଲେ । ଏହି ପୁଣ୍ୟ ଶ୍ଳୋକ ରାଜା ଅତ୍ୟନ୍ତ ସାହିତ୍ୟ , କଳାପ୍ରିୟ ଓ ଶିକ୍ଷା ପ୍ରେମୀ ଥିଲେ । ତାଙ୍କ ରାଜତ୍ୱର ପ୍ରାରମ୍ଭରୁ ରାଜ୍ୟର ଆୟ ଯଥେଷ୍ଟ କମି ଯାଇଥିଲେ ହେଁ ଏଥିପୂର୍ବରୁ ତାଙ୍କ ପିତୃ ପିତାମହଙ୍କ ଦ୍ୱାରା ପରିଚାଳିତ

ମଧ୍ୟ ଇଂରେଜୀ ବିଦ୍ୟାଳୟକୁ ଉଚ୍ଚ ଇଂରେଜୀ ବିଦ୍ୟାଳୟକୁ ଉନ୍ନୀତ କରି ପରିଚାଳନା ଭାର ନିଜ ହାତରେ ରଖିଥିଲେ । ସଂସ୍କୃତ ବିଦ୍ୟାଳୟ ମଧ୍ୟ ତାଙ୍କ ପ୍ରତ୍ୟକ୍ଷ ପରିଚାଳନା ଦାୟିତ୍ୱରେ ରଖିଥିଲେ । ଏଣୁ ଜମିଦାରୀ ପ୍ରଥା ଉଚ୍ଛେଦ ହେବାପରେ ୧୯୫୩ ମସୀହା ଜୁନ ମାସରୁ ଏହି ଦୁଇଟି ଯାକ ଅନୁଷ୍ଠାନର ପରିଚାଳନା ଦାୟିତ୍ୱ ସରକାର ଗ୍ରହଣ କରିବାକୁ ବାଧ୍ୟ ହେଲେ । ପାରଲା ଖେମଣ୍ଡିର ଦୁଇଟି ହାଇସ୍କୁଲକୁ ବାଦ୍ ଦେଲେ ଧରାକୋଟ ବ୍ୟତୀତ ଅନ୍ୟ କୌଣସି ଜମିଦାରୀ ଇଲାକାର ହାଇ ସ୍କୁଲର ପରିଚାଳନା ଭାର ସରକାର ଗ୍ରହଣ କରିନଥିଲେ ।

ଚଳିତ ରାଜନୀତିରେ ତାଙ୍କର ଅଶେଷ ଜ୍ଞାନ ଓ ଶ୍ରଦ୍ଧାଥିଲା ଏଣୁ ଜମିଦାରୀ ପ୍ରଥା ଉଚ୍ଛେଦ ପରେ ସେ ଗଣତନ୍ତ୍ର ଓ ସ୍ୱତନ୍ତ୍ର ଦଳର ଜଣେ ସକ୍ରିୟ ସଭ୍ୟରହି ଜନ ସାଧାରଣଙ୍କ ସେବାରେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ସେ ଧରାକୋଟ ପଞ୍ଚାୟତ ସମିତିରେ କିଛି କାଳ ଚେୟାରମେନ୍ ମଧ୍ୟଥିଲେ । ଭ୍ରଷ୍ଟାଚାର ଓ ନୀତି ଗର୍ହିତ ରାଜନୀତି କୁ ଘୃଣା କରୁଥିଲେ । ରାଜନୀତିରେ ଯୋଗ ଦେଇଥିଲେ ମଧ୍ୟ ପୁରାଣ, ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଅନାବିଳ ଆଗ୍ରହଥିଲା । ସେଥି ହେତୁ ତାଙ୍କ ପୂର୍ବ ପୁରୁଷ କୃଷ୍ଣ ସିଂହଙ୍କ ଦ୍ୱାରା ଅନୁଦିତ -

ବିଶାଳ ହରିବଂଶ ପୁରାଣକୁ ବହୁ ଅର୍ଥବ୍ୟୟ କରି ସର୍ବ ପ୍ରଥମେ ମୁଦ୍ରିତାକାରରେ ପ୍ରକାଶ କରି ଧାର୍ମିକ ଜନତାର ଅଶେଷ କଲ୍ୟାଣ ସାଧନ କରି ଯାଇଛନ୍ତି । ତାଙ୍କର ଆର୍ଥିକ ସହାୟତାରୁ ସାରଥି ଦାସଙ୍କ ଦ୍ୱାରା ରଚିତ 'ପ୍ରେମ ପ୍ରଜ୍ଞାମୃତ ନାମକ' ଦୁଇଖଣ୍ଡି ପୁରାଣ ବହି ପ୍ରକାଶ ପାଇ ପାରିଲା ।

ତାଙ୍କର ଉତ୍ସାହାନ୍ତ ଶଯ୍ୟରୁ ଓ ଆର୍ଥିକ ସାହାଯ୍ୟ ହେତୁ ଶ୍ୟାମସୁନ୍ଦର-ଦାସ ପଟ୍ଟନାୟକଙ୍କର "ହରହର ଭେଟ" ନାମକ ଏକ କାବ୍ୟ ରଚନା କରି ପ୍ରକାଶ କରିବାରେ ସମର୍ଥ ହୋଇ ପାରିଥିଲେ । ଏତଦ୍ ବ୍ୟତୀତ ରାଧାନାଥଙ୍କ ଚନ୍ଦ୍ରାବଳୀ ଓ ଅନ୍ୟାନ୍ୟ କେତେକ ଗ୍ରନ୍ଥର ମୁଦ୍ରଣଭାର ମଧ୍ୟ ସେ ଆଂଶିକ ଭାବେ ବହନ କରିଥିଲେ ।

କୃଷ୍ଣସିଂହଙ୍କ ସ୍ମୃତିକୁ ଉଜ୍ଜୀବିତ ରଖିବା ପାଇଁ ଆସିକାରେ କୃଷ୍ଣସିଂହ ସାହିତ୍ୟ ପରିଷଦ ଭବନ ନିର୍ମାଣ ଓ କୃଷ୍ଣସିଂହ ପାଠାଗାରକୁ ବହୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଆସିକା ମହାବିଦ୍ୟାଳୟକୁ ମଧ୍ୟ ଆର୍ଥିକ ସାହାଯ୍ୟ କରିଥିଲେ । କଲେଜରେ ଅଧ୍ୟୟନ କରିବା ପାଇଁ ଧରାକୋଟର କେତେକ ଗରିବ ଓ ମେଧାବୀ ଛାତ୍ରଙ୍କୁ ଉତ୍ସାହିତ କରି ମାସିକ ବୃତ୍ତି ପ୍ରଦାନ କରିଥିଲେ ।

ଏହି ରାଜନୀତି ନିପୁଣ, ଗୁଣିଗଣାଗ୍ରଗଣ୍ୟ, ଦେଶହିତୈଷୀ ରାଜା ତା ୫-୫-୧୯୭୪ରେ ମାନବ ଲୀଳା ସମ୍ବରଣ କରିଥିଲେ ।

— ୦ —

# କବି କ୍ଷେତ୍ରବାସୀ ପାଳ

ପବିତ୍ର ଋଷିକୁଲ୍ୟାର ଉତ୍ତରତଟରେ ଅବସ୍ଥିତ ଜାହାଡ଼ା ଗ୍ରାମରେ କବି ୧୯୦୪ ଖ୍ରୀଷ୍ଟାବ୍ଦରେ ଏକ ଗରିବ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଉଚ୍ଚ ଶିକ୍ଷାଲାଭର ସୁଯୋଗରୁ ବଞ୍ଚିତ ହୋଇଥିଲେ ହେଁ ଶିକ୍ଷା ଓ ସାହିତ୍ୟ ପ୍ରତି ତାଙ୍କର ବଳିଷ୍ଠ ଆଗ୍ରହ ଥିବା ହେତୁ ସ୍ୱାଧ୍ୟାୟ ବା ଅଭ୍ୟାସ ବଳରେ ବହୁ ନୀତିପୂର୍ଣ୍ଣ ଓ ଆଧ୍ୟାତ୍ମିକ ଭାବସମ୍ବଳିତ କବିତା

ରଚନା କରି ପଲ୍ଲୀସାହିତ୍ୟର ପ୍ରଭୂତ ଉନ୍ନତି ସାଧନ କରିପାରିଛନ୍ତି । ତାଙ୍କ ଲିଖିତ 'ସ୍ତବହାର' ଶ୍ରୀ ଗୁଣ୍ଡିଚ୍ଚ ସ୍ତବ, ଶ୍ରୀରାମ ଭଜନ ଓ ପ୍ରଶ୍ନ-ରହସ୍ୟ ମୁଦ୍ରିତାକାରରେ ପ୍ରକାଶ ପାଇଛି । ଏହା ଛଡ଼ା ଅର୍ଥାଭାବରୁ କବିଙ୍କ ବହୁ ଉପାଦେୟ ଗଦ୍ୟ ଓ ପଦ୍ୟ ଲେଖା ଯଥା—ସହଜ ଅକ୍ଷର ଶିକ୍ଷା ପ୍ରଣାଳୀ, ଉପଦେଶ ଯଜ୍ଞସୂକ, ଶ୍ରୀରାମଚରିତ ମାନସ, ଆୟୁର୍ବେଦୀୟ ସ୍ୱାସ୍ଥ୍ୟବିଧି ପ୍ରଭୃତି ଅପ୍ରକାଶିତ ଅବସ୍ଥାରେ ପଡ଼ିରହିଛି ।

'ପ୍ରଶ୍ନ ରହସ୍ୟ' ପୁସ୍ତକରେ ପ୍ରଶ୍ନୋତ୍ତର ମାଧ୍ୟମରେ ଲିଖିତ ପ୍ରାଚୀନ ଓଡ଼ିଆ ସାହିତ୍ୟର କବିସୂର୍ଯ୍ୟ, ଯଦୁମଣି ପ୍ରଭୃତି କବିଙ୍କର ପ୍ରଶ୍ନବୃତ୍ତିପୂର୍ଣ୍ଣ ପ୍ରହେଳିକା ଗୁଡ଼ିକର ସମକକ୍ଷ ଆଜିକାଲି ଏପ୍ରକାର ଲେଖା କ୍ୱଚିତ୍ ଓଡ଼ିଆ ସାହିତ୍ୟରେ ଦେଖିବାକୁ ମିଳେ । ବିଦ୍ୟାଳୟ ସ୍ତରରେ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଚତୁର ବୁଦ୍ଧିର ମାନସିକ ଖେଳ-କସରତ ବା ପ୍ରତିଯୋଗିତା ପାଇଁ ଏ ଧରଣର କବିତା ବିଶେଷ ସହାୟକ ହୋଇଥାଏ । ଏହାର ଗୋଟିଏ ଉଦାହରଣ ଦିଆଗଲା ।

ପନ୍ଦର ବାଇଶି ଶୂନ୍ୟସାତ, ଶ୍ୱଶୁର ଘରେ ଜାଇଁ ଅଙ୍କତ  
ସେ ଜ୍ୱାଇଁ ଯେବେ ମାରନ୍ତି ନାତ, ସବୁ ହୋଇଯିବ ସାତ ସାତ  
ଉତ୍ତର—୧୫୨୨୦୭ × ୫୧୧

ସମସ୍ୟା ଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଭାବେ ଦେଖିଲେ ଜଣାପଡ଼େ କବିଙ୍କର ସାହିତ୍ୟ ପୁରାଣ, ବ୍ୟାକରଣ, ଆୟୁର୍ବେଦ, ଅଙ୍କ ପ୍ରଭୃତିରେ ଗଭୀରଜ୍ଞାନ ରହିଥିବାର ଜଣାପଡ଼େ । ତାଙ୍କର ସାହିତ୍ୟ ବିଶେଷତଃ ପଲ୍ଲୀଗୀତି, ଡ଼ଗଡ଼ମାଳୀ ପଲ୍ଲୀ ଛଡ଼ହେଳିକା, ଭଜନ,ଭକ୍ତି,ସଙ୍ଗୀତ, ଧନ୍ଦା

ପ୍ରକୃତ ପୌରାଣିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ସେ ଜାହାଡ଼ାରେ ଋଷିକଲ୍ପା ସାହିତ୍ୟ ବିକାଶ ସମିତି ପ୍ରତିଷ୍ଠାକରି ସାହିତ୍ୟ ଓ ସଂସ୍କୃତିର ଉନ୍ନତି ଲାଗି ଅହରହ ଚେଷ୍ଟା କରିଥିଲେ । ସେ ଥିଲେ ଖୁବ୍ ସ୍ୱାଧୀନ-ଚେତା, ମିଷ୍ଟଭାଷୀ, ପରୋପକାରୀ, ଦେଶଭକ୍ତ ଓ ଛାତ୍ରବତ୍ସଳ ଉତ୍ତମ ଶିକ୍ଷକ ।

ଜୀବନର ଶେଷଯାଏ ନିରଳସଭାବେ ସାହିତ୍ୟ ସାଧନାରେ ବ୍ରତୀରହି ୮୫ ବର୍ଷ ବୟସରେ ନିଜର କର୍ମଭୂମି ଜାହାଡ଼ାରେ ତା ୨୫-୧୦-୮୯ ରେ ସ୍ୱର୍ଗାରୋହଣ କରିଥିଲେ ।

—o—

## ରାଜା ଅନନ୍ତନାରାୟଣ ସିଂହଦେଓ

ଶ୍ରୀ ଅନନ୍ତ ନାରାୟଣ ସିଂହ ଦେଓ ଧରାକୋଟର ସୁସାହିତ୍ୟିକ, ଜ୍ଞାନଗରିଷ୍ଠ ରାଜା ବ୍ରଜକିଶୋରଚନ୍ଦ୍ର ସିଂହ ଦେଓଙ୍କ କନିଷ୍ଠପୁତ୍ର ଅଟନ୍ତି । ତାଙ୍କର ଜ୍ୟେଷ୍ଠ ଭ୍ରାତା ପୁତ୍ର ପୁତ୍ରସନ୍ତାନ ଲଭକରିବା ସୌଭାଗ୍ୟରୁ ବଞ୍ଚିତ ହୋଇଥିବା ହେତୁ ତାଙ୍କର ବିୟୋଗ ପରେ ଧରାକୋଟ ରାଜ୍ୟବାସୀଙ୍କ ଅନୁରୋଧକ୍ରମେ ଓ ନିଜ ବଂଶର ଗୌରବମୟ ପରମ୍ପରା ରକ୍ଷା କରିବା ଦୃଷ୍ଟିରୁ ୧୯୨୫ ମସିହାରେ ଧରାକୋଟର ରାଜପଦରେ ଅଭିଷିକ୍ତ ହେଲେ । ରାଜା ଅପୁତ୍ରିକ ହେଲେ କନିଷ୍ଠଭ୍ରାତା ସିଂହାସନରେ ଅଭିଷିକ୍ତହେବା ପ୍ରଥା ବିଶେଷ ରାଜା ରାଜେନ୍ଦ୍ର ସିଂହ ଓ କୃଷ୍ଣସିଂହଙ୍କ ସମୟରୁ ଚଳିଆସିଅଛି । ଏହିବିଷୟ କୃଷ୍ଣସିଂହ ତାଙ୍କ

ଅନୁବାଦିତ ମହାଭାରତରେ ଉଲ୍ଲେଖ କରିଛନ୍ତି । ଏଣୁ ଏହି ବଂଶର ଅଖଣ୍ଡିତ ପରମ୍ପରା ଅନୁଯାୟୀ ପଦ୍ମନାଭ ସିଂହଙ୍କ ମୃତ୍ୟୁର ଏକବର୍ଷ ପରେ ତାଙ୍କର ଅଭିଷେକ ଉତ୍ସବ ସମ୍ପାଦିତ ହୋଇଥିଲା ।

ସେ ତା ୫-୯-୧୯୨୯ ରିଖରେ ଧବ୍ଳେକୋଟରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାଲ୍ୟଶିକ୍ଷା କଟକରେ ଅବସ୍ଥିତ ଷ୍ଟୁଆର୍ଟ ସ୍କୁଲରେ ହୋଇଥିଲା । ଏହି ସ୍କୁଲରୁ ୧୯୪୦ ମସିହାରେ ଶିକ୍ଷା ସମାପ୍ତ କରି 'ଡୁନ୍' ସ୍କୁଲରେ ନାମ ଲେଖାଇଲେ । ଏହି ସ୍କୁଲରେ ୧୯୪୧ ମସିହା ଠାରୁ ୧୯୪୮ ମସିହା ଯାଏ ଶିକ୍ଷାଲାଭକରି କେମ୍ବ୍ରିଜ ସ୍କୁଲ ସାର୍ଟିଫିକେଟ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେବାପରେ ଉଚ୍ଚ ଶିକ୍ଷା ଲାଭପାଇଁ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଅଧିନସ୍ଥ **Saint Stiffen** କଲେଜରେ ଯୋଗଦାନ କରିଥିଲେ । ୧୯୫୩ ମସିହାରେ ଉକ୍ତ ମହାବିଦ୍ୟାଳୟରୁ ବି. ଏସ୍. ସି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

ଛାତ୍ରାବସ୍ଥାରେ ସେ ବିଭିନ୍ନ କ୍ରୀଡ଼ା ପ୍ରତିଯୋଗିତାରେ ଅଂଶ-ଗ୍ରହଣ କରି କୃତିତ୍ୱର ସହ ଖେଳ ବହୁ ପୁରସ୍କାର ଓ ପ୍ରଶଂସାପତ୍ର ପାଇଥିଲେ ।

ତରୁଣ ବୟସରୁ ସେ ଅଶ୍ୱାରୋହଣ ପଟୁଥିଲେ ଓ ବନ୍ଧୁକ ଚାଳନାରେ ତାଙ୍କର ଲକ୍ଷ୍ୟ ଅବ୍ୟର୍ଥ ରହିଛି । ଏଣୁ ହିଂସ୍ରଜନ୍ତୁଙ୍କ କବଳରୁ ଲୋକଙ୍କୁ ରକ୍ଷା କରିବା ପାଇଁ ବହୁ ବ୍ୟାଘ୍ର ଓ ଭଲ୍ଲୁକ ଶିକାର କରିଛନ୍ତି । ଆଦ୍ୟ ଯୌବନରେ ସେ ଓଡ଼ିଆ ଚଳଚ୍ଚିତ୍ର ପ୍ରତି ଆକୃଷ୍ଟ

ହୋଇଥିଲେ ଏଣୁ ଓଡ଼ିଆରେ ଉତ୍କୃଷ୍ଟ ପୌରାଣିକ ଚଳଚ୍ଚିତ୍ରର ଅଭାବ ଉପଲବ୍‌ଧିକରି ହିନ୍ଦୀ ଜନ୍ମାଷ୍ଟମୀ ଚଳଚ୍ଚିତ୍ରକୁ ଓଡ଼ିଆରେ ଭାଷାନ୍ତରିତ କରି ପରିବେଷଣ ଯୋଗ୍ୟ କରାଇଥିଲେ ।

ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ବିରୋଧୀଦଳର ଭୂମିକାର ଗୁରୁତ୍ୱ ଅନୁଭବ କରି ଶିକ୍ଷା ସମାପ୍ତିପରେ ଲୋକଙ୍କ ଅନୁରୋଧକ୍ରମେ ସେ ସକ୍ରିୟ ରାଜନୀତିରେ ଯୋଗଦାନ କରି ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ମୁଖ୍ୟ ବିରୋଧୀ ଦଳରେ ଏକ ସମ୍ମାନଜନକ ଆସନ ଗ୍ରହଣ କରିଥିଲେ । ସେ ତାଙ୍କର କର୍ତ୍ତବ୍ୟନିଷ୍ଠା, ସାଧୁତା ସେବାପରାୟଣତା ଓ ଅପୂର୍ବ ସଂଗଠନିକ ଶକ୍ତି ବଳରେ ଗଞ୍ଜାମରେ "ଗଣତନ୍ତ୍ରଦଳ"ର ଦୃଢ଼ ଭିତ୍ତିସ୍ଥାପନ କରିପାରିଥିଲେ । ତାଙ୍କର ରାଜନୈତିକ ଜୀବନ ଆରମ୍ଭ ହୋଇଥିଲା ଧରାକୋଟ ସରପଞ୍ଚ ପଦବୀରୁ । ସେ ଦୁଇଥର ଧରାକୋଟ ପଞ୍ଚାୟତ ସମିତିର ସଭାପତି ନିର୍ବାଚିତ-ହୋଇ ବହୁ ଅନୁଷ୍ଠାନ ଓ ଜନ ହିତକର କାମ କରିଯାଇଛନ୍ତି ।

ସେ ୧୯୬୭ ମସିହାରେ ସ୍ୱତନ୍ତ୍ର ଦଳ ଟିକଟରେ ସୋରଡ଼ା ନିର୍ବାଚନ ମଣ୍ଡଳୀରୁ ବିପୁଳ ଭୋଟ ପାଇ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସ୍ୱତନ୍ତ୍ର ଜନକଂଗ୍ରେସ ମନ୍ତ୍ରୀମଣ୍ଡଳ ପାଟଣା ମହାରାଜା ସ୍ୱର୍ଗୀୟ ରାଜେନ୍ଦ୍ର ନାରାୟଣ ସିଂହ ଦେଓଙ୍କ ମୁଖ୍ୟମନ୍ତ୍ରିତ୍ୱରେ ଗଠନ କରାଯାଇଥିଲା । ଏହି ମନ୍ତ୍ରୀମଣ୍ଡଳରେ ସେ ଗ୍ରାମଗୋଷ୍ଠୀ, ଗ୍ରାମପଞ୍ଚାୟତ ଓ ଜିଲ୍ଲା ବିଭାଗରେ ଉପମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ଏହି ମନ୍ତ୍ରିମଣ୍ଡଳ ଓଡ଼ିଶାରେ ପ୍ରାୟ ଚଉଦ ମାସ ତିଷ୍ଠି ରହିଥିଲା । ପୁନର୍ବାର ସେ ୧୯୭୧ ମସିହାରେ ଉକ୍ତ ନିର୍ବାଚନ ମଣ୍ଡଳୀରୁ

ସ୍ୱତନ୍ତ୍ରଦଳ ପକ୍ଷରୁ ନିର୍ବାଚିତ ହୋଇ ସ୍ୱତନ୍ତ୍ର ଉତ୍କଳ ମନ୍ତ୍ରୀମଣ୍ଡଳରେ କେବିନେଟ ମନ୍ତ୍ରୀଭାବେ ଗ୍ରାମଗୋଷ୍ଠୀ, ଗ୍ରାମପଞ୍ଚାୟତ ଓ କୃଷି ବିଭାଗର ଦାୟିତ୍ୱ ବହନ କରି ନିଜ ପ୍ରଶାସନିକ ଓ ରାଜନୈତିକ ବିଚକ୍ଷଣତାର ପରିଚୟ ପ୍ରଦାନ କରିଥିଲେ । ଏଣୁ ରାଜନୈତିକ ମତବାଦ ବିରୋଧ ସତ୍ତ୍ୱେ ସେ ସବୁ ଦଳର ନେତା ଓ କର୍ମୀଙ୍କ ପ୍ରିୟଭାଜନ ହୋଇପାରି ଥିଲେ ।

ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସେ ତାଙ୍କର ଅଭିରୁଚି ତଥା ଆଗ୍ରହକୁ ବିନିଯୋଗ କରିପାରିଛନ୍ତି । କୃଷିବିଜ୍ଞାନ ତଥା ଫଳବୃକ୍ଷରେ ତାଙ୍କର ଜ୍ଞାନ ଓ ନିଷ୍ଠା ଅନ୍ୟମାନଙ୍କର ଅନୁକରଣୀୟ । ଭୂସଂସ୍କାର, ଯାନ୍ତ୍ରିକ ଚାଷ,କୃଷିକାର୍ଯ୍ୟରେ ରାସାୟନିକ ପ୍ରୟୋଗ ତଥା ଜଳସେଚନ-ବିନା କୃଷିର ଓ କୃଷକର ଉନ୍ନତି ସୁଦୂରପରାହତ ଭାବି ସେ କୃଷିଶିଳ୍ପର ବିକାଶ ପାଇଁ ରାଜ୍ୟରେ ବହୁ ଯୋଜନା ପ୍ରସ୍ତୁତକରି ତାକୁ କାର୍ଯ୍ୟକାରୀ କରିବାରେ ତାଙ୍କ ମନ୍ତ୍ରିତ୍ୱ ସମୟରେ ପଦକ୍ଷେପ ନେଇଥିଲେ । ୧୯୭୦ ମସିହାରେ ଜାପାନରେ ଅନୁଷ୍ଠିତ ହୋଇଥିବା ଅନ୍ତର୍ଜାତିକ କୃଷି ଓ ଶିଳ୍ପ ପ୍ରଦର୍ଶନୀରେ ଓଡ଼ିଶା ସରକାରଙ୍କ ପ୍ରତିନିଧିଭାବେ ଯୋଗଦାନ କରିବାର ସୌଭାଗ୍ୟଲାଭ କରିଥିଲେ ।

ସେ ତୃତୀୟଥର ପାଇଁ ଜନତାଦଳ ତରଫରୁ ସୋରଡ଼ା ନିର୍ବାଚନ ମଣ୍ଡଳୀରେ ପ୍ରତିଦ୍ୱନ୍ଦ୍ୱିତା କରି ୧୯୭୭ ମସିହାରେ ବିଧାନସଭାକୁ ନିର୍ବାଚିତ ହୋଇ ନିଜ ରାଜନୈତିକ କର୍ମକୁଶଳତା ଓ ପରିପକ୍ୱତାର ପରିଚୟ ଦେଇଛନ୍ତି । ସେ ଆସିକା ଚିନିଶିଳ୍ପ ପରିଚାଳନା ବୋର୍ଡ଼ର ସଭାପତି ରୂପେ ନିର୍ବାଚିତ ହୋଇ ୧୯୮୨

ମସିହାରୁ ୧୯୮୬ ଯାଏ ନିଜର ଦାୟିତ୍ୱ ଖୁବ୍ ଦକ୍ଷତାର ସହ ତୁଲାଇ ଚିନିଶିଳ୍ପର ତ୍ରୁତ ଉନ୍ନତି କରିବା ସଙ୍ଗେ ସଙ୍ଗେ କାରଖାନା ତରଫରୁ ଏକ ହାଇସ୍କୁଲ ଓ କୃଷକ ଭବନ ପ୍ରତିଷ୍ଠା କରିବା ପାଇଁ ପଦକ୍ଷେପ ନେଇଛନ୍ତି । ଏତଦ୍ ବ୍ୟତୀତ ଶ୍ରମିକ ଓ କର୍ମଚାରୀମାନଙ୍କ ସେବା କଲୀନ ସୁବିଧା ସମେତ ଏ ଅଞ୍ଚଳରେ ଆଖୁଚାଷର ବ୍ୟାପକ ପ୍ରସାର ସହିତ ଚାଷୀମାନଙ୍କର ଉନ୍ନତି କରି ଯାଇଛନ୍ତି ।

ପୃଥିବୀର ବିଭିନ୍ନ ଦେଶରେ କୃଷି ଓ ସମବାୟ ସଂଗଠନ ସମେତ ଆଖୁଚାଷ ଓ ଚିନିଶିଳ୍ପର ପରିଚାଳନା ଓ ବିକାଶମୂଳକ କାର୍ଯ୍ୟ ଅନୁସନ୍ଧାନ କରିବା ଲାଗି ଭାରତ ସରକାର ୧୯୮୪ ମସିହାରେ ଯେଉଁ ତିରିଶି ଜଣିଆ ପ୍ରତିନିଧିଦଳ ବିଦେଶକୁ ପଠାଇଥିଲେ ସେମାନଙ୍କ ଭିତରେ ସେ ଓଡ଼ିଶାରୁ ପ୍ରତିନିଧିତ୍ୱ କରି ରୁଷିଆ, ଆମେରିକା, ଫ୍ରାନ୍ସ ହଲଣ୍ଡ, ଇଂଲଣ୍ଡ, ଜାପାନ, ଥାଇଲେଣ୍ଡ ପ୍ରଭୃତି ବିଭିନ୍ନ ଦେଶ ପରିଭ୍ରମଣ କରି ଉକ୍ତ ବିଷୟରେ ଗଭୀର ଅନୁଭୂତି ଓ ଜ୍ଞାନଲାଭ କରିବାର ସୁଯୋଗ ପାଇଥିଲେ । ସେ ବିଶିଷ୍ଟତାର ପାଇଁ ମଧ୍ୟ ଚିନିଶିଳ୍ପ ପରିଷଦର ସଭାପତିରୂପେ ତା ୧୨.୧୨.୧୯୮୯ ରେ ନିର୍ବାଚିତ ହୋଇ ଶିଳ୍ପ ପରିଚାଳନାର କାର୍ଯ୍ୟଭାର ଗ୍ରହଣ କରିଥିଲେ ।

ସେ କିଛିକାଳ ଓଡ଼ିଶା ଜନତାଦଳର ସଭାପତି ଦାୟିତ୍ୱରେ ରହିଥିଲେ ଓ ଓଡ଼ିଶା କୃଷକ ଜନତା ସଂଗଠନର ନେତୃତ୍ୱ ବହନକରି ଅବହେଳିତ କୃଷକ ସମାଜର ଉନ୍ନତି ବିଧାନଲାଗି ବହୁ କାର୍ଯ୍ୟକ୍ରମ ନିଜ ହାତକୁ ନେଇଥିଲେ । ତାଙ୍କର କର୍ତ୍ତବ୍ୟନିଷ୍ଠା, ଜନପ୍ରିୟତା ଓ

ରାଜନୈତିକ ସଙ୍କୋଚ ପଣିଆ ଯୋଗୁଁ ୧୯୮୯ ମସିହାରେ ଆସିକା ପାର୍ଲିଆମେଣ୍ଟାରୀ ନିର୍ବାଚନ ମଣ୍ଡଳୀରୁ ଜନତାଦଳ ତରଫରୁ ପ୍ରତିଦ୍ୱନ୍ଦ୍ୱିତାକରି ବିପୁଳ ଭୋଟରେ ତାଙ୍କ ପ୍ରତିଦ୍ୱନ୍ଦ୍ୱୀଙ୍କୁ ପରାଜିତକରି ନବମ ଲୋକସଭାକୁ ନିର୍ବାଚିତ ହୋଇଥିଲେ ।

ତାଙ୍କର ପତ୍ନୀ ଶ୍ରୀମତୀ ଶାନ୍ତିଦେବୀ ସ୍ୱୀୟ ପିତା, ମାତା, ଭ୍ରାତା ଓ ପତିଙ୍କ ପଦାଙ୍କ ଅନୁକରଣ କରି ସକ୍ରିୟ ରାଜନୀତିରେ ଯୋଗଦେଇ ଜନତାଦଳ ତରଫରୁ ଧରାକୋଟ ପଞ୍ଚାୟତ ସମିତିର ସଭାପତି ନିର୍ବାଚିତ ହୋଇ ଦୀର୍ଘ ତୃତୀ ବର୍ଷକାଳ ନିଜ ଶାସନ ଓ ପରିଚାଳନାଗତ ଦକ୍ଷତାର ପରିଚୟ ପ୍ରଦାନ କରିଛନ୍ତି ! ସେ ଅତ୍ୟନ୍ତ ସରଳ ଓ ନିରଳସ ଜୀବନ ଯାପନକରି ନିଜ ଜୀବନକୁ ଦେଶ ସେବାରେ ନିୟୋଜିତ କରିଛନ୍ତି । ନିଜର ଅପୂର୍ବ ରାଜନୈତିକ କୁଶଳତା ଓ ସଂଗଠନ ବଳରେ ୧୯୯୦ ମସିହାରେ ଜନତାଦଳ ଟିକଟରେ ସୋରଡ଼ା ବିଧାନସଭା ନିର୍ବାଚନ ମଣ୍ଡଳୀରେ ପ୍ରତିଦ୍ୱନ୍ଦ୍ୱିତାକରି ଓଡ଼ିଶା ବିଧାନସଭାକୁ ସଭ୍ୟ ନିର୍ବାଚିତ ହୋଇଛନ୍ତି । ଉଭୟ ପତିପତ୍ନୀ ନିଜ ଜୀବନକୁ ଦେଶସେବାରେ ଉତ୍ସର୍ଗ କରିଛନ୍ତି ।

ଶ୍ରୀ ଅନନ୍ତନାରାୟଣ ଜଣେ ପ୍ରତିଭାସମ୍ପନ୍ନ-ସଙ୍କୋଚ ରାଜନୀତିଜ୍ଞ । ସେ ଦେଶର ଜଟିଳ ରାଜନୈତିକ ସମସ୍ୟା ଉପରେ ବିଭିନ୍ନ ସମୟରେ ବହୁ ପାଣ୍ଡିତ୍ୟପୂର୍ଣ୍ଣ । ଗବେଷଣା ମୂଳକ ପ୍ରବନ୍ଧ ଲେଖି ଓଡ଼ିଶାର ପତ୍ର ପତ୍ରିକାରେ ପ୍ରକାଶ କରନ୍ତି । ରାଜନୀତି କ୍ଷେତ୍ରରୁ ଓ ସମାଜରୁ ଭ୍ରଷ୍ଟାଚାର, ଲାଞ୍ଚ, ମିଛ, ପ୍ରିୟାପ୍ରୀତି ତୋଷଣକୁ ହଟାଇବାପାଇଁ ଅହରହ ଚେଷ୍ଟାକରୁଛନ୍ତି ।

ତାଙ୍କର ସୀମିତ ଆର୍ଥିକ ସମ୍ବଳକୁ ବଶୂରକୁନେଇ ରାଜବଂଶର ସମସ୍ତ ଗୌରବମୟ ପରମ୍ପରାକୁ ଏଯାଏଁ ରକ୍ଷାକରିବାକୁ ଯତ୍ନପରୋନାସ୍ତି ଚେଷ୍ଟା କରି ଆସୁଛନ୍ତି । ପୂର୍ବରୁ ରାଜବାଟୀରେ ଓ ରାଜ୍ୟରେ ପାଳିତ ହେଉଥିବା ବିଭିନ୍ନ ଦେବଦେବୀଙ୍କ ଯାତ୍ରାଯାତ୍ରା ଉତ୍ସବ ପର୍ବ ପର୍ବାଣି ପ୍ରଭୃତି ପାଳନ କରିବାକୁ ଆଦୌ ଅବହେଳା କରି ନାହାଁନ୍ତି । ତାଙ୍କ ଉଦ୍ୟମରେ ବହୁ ସଦ୍‌ନୁଷ୍ଠାନ ଧର୍ମକୋଟରେ ସ୍ଥାପନ କରାଯାଇଛି । ଅନାଥାଶ୍ରମର କାର୍ଯ୍ୟଖୁବ୍ ଶ୍ରିପ୍ରଗତିରେ ଚାଲିଛି । ମୁଣ୍ଡମରାଇରେ ଅବସ୍ଥିତ ଉଚ୍ଚ ବିଦ୍ୟାଳୟକୁ ତାଙ୍କ ନାମରେ ନାମିତ କରାଯାଇ ଶ୍ରୀ ଅନନ୍ତନାରାୟଣ ବିଦ୍ୟାପୀଠ ରଖାଯାଇଛି ।

ପ୍ରଶାସନିକ ଦକ୍ଷତା, ବଦାନ୍ୟତା, ଗୁଣଗ୍ରାହକତା, ଧର୍ମନିଷ୍ଠା, ନିସ୍ବଳଙ୍କ ଚରିତ୍ରବତ୍ତା ସମାଜସେବା, ସାହିତ୍ୟ ପ୍ରତି ମମତା ତଥା ଉଦାର ରାଜନୈତିକ ମତବାଦୀଗୁଣ ତାଙ୍କ ବ୍ୟକ୍ତିତ୍ୱକୁ ମହନୀୟ ଓ ବଳିଷ୍ଠ କରିପାରିଛି ।



# ଶୁଦ୍ଧିପତ୍ର

ସହୃଦୟ ପାଠକ ପାଠିକାମାନଙ୍କୁ ଅନୁରୋଧ, ସେମାନେ ନିମ୍ନଲିଖିତ ଶୁଦ୍ଧିପତ୍ର ଅନୁସାରେ ବହିଟିକୁ ପ୍ରଥମେ ସଂଶୋଧନ କରିଦେବେ ।

| ପୃଷ୍ଠା | ଧାଡି | ଅଛି | ହେବ |
|---|---|---|---|
| ୬ | ୯ | neme | name |
| ୬ | ୧୮ | ଦସ୍ମୀପୁରରୁ | ଜସ୍ମୀପୁରରୁ |
| ୭ | ୯ | ପୂବତ | ପୂଜତ |
| ୭ | ୧୨ | ଛଠ | ଗୁଠ |
| ୮ | ୫ | ପରଶୁରାମଙ୍କ | ପରଶୁରାମଙ୍କୁ |
| ୮ | ୫ | ହୋଇ | ରାଜାହୋଇ |
| ୮ | ୧୫ | ଧ୍ୱଂସବଶେଷ | ଧ୍ୱଂସାବଶେଷ |
| ୧୨ | ୧୨ | ଫେରିଥିଲେ | ଫେରିଥିଲା |
| ୧୩ | ୪ | ପାଠ୍ୟ | ପାଠୀ |
| ୧୪ | ୨ | ରହିଛନ୍ତି | ରହିଛି |
| ୧୫ | ୧୬ | ଭକ୍ତ | ଉକ୍ତ |
| ୧୬ | ୧୬ | ସନ୍ତୋଗ | ସନ୍ତୋଷ |
| ୧୯ | ୩ | ପରେ | ପରି |
| ୧୯ | ୧୧ | ଧନୈକ | ଜନୈକ |
| ୧୯ | ୧୬ | ପାଇଛନ୍ତି | ରହିଛନ୍ତି |
| ୧୯ | ୧୮ | ଚଜାମ୍ନତ୍କ | ଚଦାମ୍ନତ୍ନ |
| ୨୦ | ୪ | ମାନଙ୍କୁ | ମାନଙ୍କ |
| ୨୦ | ୯ | ଦାନଶୈକ୍ତ | ଦାନଶୀଳ |

| | | | |
|---|---|---|---|
| ୨୩ | ୧୨ | ଶାସକ | ଶାସନ |
| ୨୩ | ୧୬ | ଶାସନାନ୍ତ· | ଶାସନାନ୍ତ |
| ୨୭ | ୧୮ | ଆପ୍ରହ | ଆଗ୍ରହ |
| ୨୯ | ୮ | କୃତକଦ୍ୟ | କୃତବଦ୍ୟ |
| ୩୧ | ୧୧ | ଚଠଚଠ | ଗୋଟିଏ 'ଢଠ' କଟିଯିବ |
| ୩୧ | ୧୯ | ପଣ୍ଡିକୁ | ପଣ୍ଡିଙ୍କୁ |
| ୩୪ | ୬ | ଜଣାଯାଏ | ଦେଖାଯାଏ |
| ୩୬ | ୯ | ସ୍ୱକଳ | ସ୍ୱବଳ |
| ୩୭ | ୧୨ | ରହୁଥିଲେ | ରହୁଥିଲା |
| ୩୭ | ୧୪ | ଅବଗୋହ | ଅବଗାହ |
| ୩୭ | ୧୯ | ଠାରେ | ରେ |
| ୩୮ | ୧୦ | ଆସି | ଆଣି |
| ୩୯ | ୧ | ରେଖାରୂଢ଼ | ରଥାରୂଢ଼ |
| ୩୯ | ୭ | ମଁହୂ | ମୂହୂବାଦସ୍ୱନ |
| ୩୯ | ୧୨ | ଇଚ୍ଛାଲେକ୍ୟ | ଇଚ୍ଛାଲୋକ୍ୟ |
| ୩୯ | ୧୬ | ଗମନକଷସ୍ତେ | ଗମନବଷସ୍ତେ |
| ୩୯ | ୧୮ | କଦାଲକ୍ଷେ | କଦାଇକ୍ଷେ |
| ୪୦ | ୧୦ | ଆଠଟଡ଼ରୁ | ଆଠଗଡ଼ର |
| ୪୦ | ୧୫ | ଅଶୁକଳ୍ପା | ଋଷିକଳ୍ପା |
| ୪୦ | ୨୦ | ସନ୍ତାବ | ସନ୍ତାନ |
| ୪୧ | ୫ | ଆତ୍ମୋପାଲବ୍ଧି | ଆତ୍ମୋପଲବ୍ଧି |
| ୪୯ | ୩ | ଅସତ୍ନୋତ୍ତ | ଅସଙ୍ଗତ |
| ୪୯ | ୧୨ | ରଚନାରେ | ରଚନାକର |

| | | | |
|---|---|---|---|
| ୪୯ | ୧୮ | କନା | ନନା |
| ୫୧ | ୮ | ଭକ୍ତରସାମୁକ | ଭକ୍ତିରସାତ୍ମକ |
| ୫୨ | ୧୭ | ତନଗୋଟି | ତନକୋଟି |
| ,, | ୧୮ | ,, | ,, |
| ୫୩ | ୧୧ | ଗୁଡକର | ଗୁଡକରେ |
| ୫୩ | ୨୩ | ଅପାସାକୃତ | ଅପସାରିତ |
| ୫୪ | ୧ | କଳବର | କଢବର |
| ୫୪ | ୧୯ | ଉକ୍ତାଦନ | ଉତ୍ପାଦନ |
| ୫୭ | ୧୭ | ନାମ | ନାମରେ |
| ୫୮ | ୬ | ସେ | ତାକୁ |
| ୬୪ | ୨୧ | ପିତୃଙ୍କ | ପିତୃବ୍ୟ |
| ୬୫ | ୧୨ | କୃଷ୍ଣସିଂହଙ୍କ | କୃଷ୍ଣସିଂହଙ୍କୁ |
| ୬୫ | ୧୩ | କୃଷ୍ଣସିଂହଙ୍କୁ | କୃଷ୍ଣସିଂହଙ୍କ |
| ୬୮ | ୧ | ସମଦ୍ରାଃ, | ସମୁଦ୍ରାଃ |
| ୬୮ | ୪ | ଅବଶ୍ୟଂତ | ‘ତ’କୁ ଛାଡପଢ଼ିବାକୁହେବ |
| ୬୮ | ୪ | ଭୃଶୋବଥୀଂ | ଭୃଶୋଦ୍ୱିଗ୍ନଂ |
| ୬୯ | ୧୨ | ଶିକ୍ଷାଶିକ୍ଷା | ଗୋଟିଏ‘ଶିକ୍ଷା’ଛାଡ଼ିପଡିବାକୁ ହେବ |
| ୭୦ | ୧୧ | ବଷସ୍ଥମଣ୍ଡପ | ବଜେମଣ୍ଡପ |
| ୭୦ | ୧୪ | ବାଲିଘରର | ବାଲିପଦରର |
| ୭୧ | ୧ | ଅନୁମତିନମମ | ଅନୁମତିନମେ |
| ୭୧ | ୧୧ | ସେବାଘରଣ | ସେବାପରାୟଣ |
| ୭୩ | ୨ | ଜାଣିବବୃର | ଜାଣିବ ବଧୂର |

| | | | |
|---|---|---|---|
| ୬୩ | ୭ | ଦ୍ରୋଣପର୍ବକରିଥିବା ହେଉଛିକୃଷ୍ଣସନ୍ଧି | ଏହାକୁଛାଡ଼ିପଢ଼ିବାକୁହେବ |
| ୬୩ | ୨୨ | ୨୭୦୮ | ୧୭୦୮ |
| ୬୪ | ୭ | ଥିଲେ | ଥିଲ |
| ୬୪ | ୨୦ | ସ୍ୱର୍ଗାରୋହଣ | ସ୍ୱର୍ଗାରୋହଣ ପର୍ବ |
| ୭୬ | ୧୭ | ଜଗନ୍ନାଥଙ୍କୁ | ଜଗନ୍ନାଥଙ୍କୁ ବନ୍ଦନାକରି |
| ୭୬ | ,, | ଓଆଡ଼କେତେକ | ଏହାଛାଡ଼ିପଢ଼ିବାକୁହେବ |
| ୭୬ | ,, | ଧାର୍ମିକ | ସ୍ୱୀୟ ଧାର୍ମିକ |
| ୭୭ | ୭ | ପୁରୁଷ | ପୁରୁଷଙ୍କ |
| ୭୮ | ୨୦ | ସ୍ୱଛନ୍ଦ | ସ୍ୱଚ୍ଛନ୍ଦ |
| ୭୯ | ୧ | ସତେଜ | ସତେକ |
| ୭୯ | ୪ | ସତେଜ | ସତେକ |
| ୭୯ | ୧୩ | ଭଙ୍ଗାରେଅତକ୍ଲୋଳ | ଭଙ୍ଗୀରେ ଅତଲ୍ଲୋଳ |
| ୭୯ | ୧୬ | ଫେକ | ଫେନ |
| ୮୧ | ୧ | ପଡିଲ | ପଢ଼ିଲ |
| ୮୩ | ୧୯ | ସ୍ୱମନ୍ତ | ସୁମନ୍ତ |
| ୮୩ | ୨୦ | ଜକ୍ଲନେ | ଜଳ୍ପନେ |
| ୮୪ | ୯ | ଶୋଭିକୁପଣି | ଶୋଭିବପଣି |
| ୮୬ | ୮ | ରାଜ୍ୟଦରବାର | ରାଜଦରବାର |
| ୮୬ | ୧୨ | ଆକାରର | ଆକାରରେ |
| ୮୬ | ୧୧ | ଚର୍ମ୍ମର | ଚର୍ମ୍ମ |
| ୮୮ | ୧ | ଛନ୍ଦରେ | ଛଳରେ |

| | | | |
|---|---|---|---|
| ୯୦ | ୧୫ | ନରସିଂହଙ୍କ | ନରସିଂହ |
| ୯୧ | ୯ | ପୁଣ୍ୟପୁଞ୍ଜା | ପୁଣ୍ୟପୁଞ୍ଜ |
| ୯୧ | ୨୧ | ଅଷ୍ଟାନ୍ଦ୍ରସ୍ୱ | ଅଷ୍ଟାଦ୍ଧ୍ରସ୍ୱ |
| ୯୨ | ୨ | ଉପଜୀବୀ | ଉପଜୀବ୍ୟ |
| ୯୨ | ୮ | ଯାଦ୍ୱାବେଦନା | ନାଦ୍ୱାବେଦନା |
| ୯୬ | ୩ | ବଦୂବ୍ୟାତ୍ରା | ବଦ୍ୱତ୍ରା |
| ୧୦୦ | ୧୬ | ସ୍ୱଚ୍ଛଳ | ସ୍ୱଚ୍ଛନ୍ଦ |
| ୧୦୪ | ୧୩ | ଚୋର | ଚଢାଇ |
| ୧୦୫ | ୧୦ | ଦେବବ୍ୟାସକୃତ — | ବେଦବ୍ୟାସକୃତ |
| ୧୦୬ | ୧୨ | ବଶାଖା | ନଶାଖ |
| ୧୦୬ | ୧୩ | ଯୋଷାଯାକ — | ଯୋଷାଯାନ |
| ୧୦୮ | ୧୪ | କ୍ଷୋଭଭଙ୍ଗୁରତା | କ୍ଷଣଭଙ୍ଗୁରତା |
| ୧୦୮ | ୨୦ | ଦ୍ୱାଦ୍ୱାଜନ.ଞବର୍ଗ — | ଦ୍ୱାଦ୍ୱାଜନାପବର୍ଗ |
| ୧୦୮ | ୨୧ | ଦେୱଃ | ଦେବଃ |
| ୧୦୯ | ୧ | ଘାଖ | ଘାଖ୍ୟ |
| ୧୧୦ | ୬ | ଥିଲେ | ଥିଲ |
| ୧୧୧ | ୧୪ | ପୂର୍ବାର୍ଦ୍ଧ | ପୂର୍ବାର୍ଦ୍ଧ ୬୧୫ |
| ୧୧୧ | ୧୫ | ଫିନ୍ଦରେ | ଛନ୍ଦରେ |
| ୧୧୨ | ୨୧ | ବଟବେଦନ | ନବେଦନ |
| ୧୧୩ | ୧୧ | ମସ୍ୱନ୍ତା | ନସ୍ୱନ୍ତା |
| ୧୧୪ | ୮ | ବସ୍ତୁତ | ବସ୍ତୁତଙ୍କନ |
| ୧୧୪ | ୨୧ | ଦେଖିଥିଲେଚେ — | ଦେଖିଥିଲେଦ୍ୱେ |
| ୧୧୫ | ୨୦ | ବ୍ୱହନ୍ତ | କହନ୍ତି |

| | | | |
|---|---|---|---|
| ୧୧୭ | ୧୦ | ଶାକମ୍ବଘ | ଶାକମ୍ଭଘ |
| ୧୨୧ | ୮ | କୌରବଙ୍କ | କୌରବଙ୍କ |
| ୧୨୧ | ୧୦ | କୌତୁକାଧାନ | କୌତୁକାଧାନ |
| ୧୨୧ | ୧୮ | ତାଙ୍କରଅଗାଧପାଣ୍ଡିତ୍ୟଥିଲେ – | '(ଏହ୍ୱବଷପୂଦୁଇ ଥରଛପାଯାଇ–ଥିବାହେତୁ– ଏହାଛାଡ଼ି ପଢ଼ବେ) |
| ୧୨୨ | ୨ | ତଦାମାନ୍ତ୍ୟକ | ତଦାମନ୍ତନ |
| ୧୨୨ | ୧୭ | ଦୃଷ୍ଟ | ଦୃଷ୍ଟ |
| ୧୨୨ | ୪ | 'ନାମକ'ପଦପରେ | ସେହ୍ୱଦୃଷ୍ଟାର ଦ୍ୱାଦଶଧାଡ଼ିକୁ ପଢିବେ |
| ୧୨୩ | ୩ | ସ୍ୱଶୁରଙ୍କୁ | ସ୍ୱଗୁରୁଙ୍କୁ |
| ୧୨୪ | ୩ | ଅଗୁଣୋଦୟ | ଅରୁଣୋଦୟ |
| ୧୨୬ | ୯ | ତାଳଧ୍ୱଜ | ତାଳଧ୍ୱଜ |
| ୧୨୭ | ୨୨ | ନାଧବକୁ | ମାଧବକୁ |
| ୧୨୮ | ୨୨ | ବରଦ୍ୱକାରେ | ବରଦ୍ୱକାତର |
| ୧୩୦ | ୧୧ | ସ୍ୱରବର | ସ୍ୱରରସ |
| ୧୩୨ | ୧୦ | ଇନ୍ଦ୍ରସ୍ଥଳେ | ଇନ୍ଦ୍ରଛଳେ |
| ୧୩୭ | ୧୨ | ଶାଦ୍ୱନ | ଶାସନ |
| ୧୩୮ | ୫ | କରଛିଛି | କରଛନ୍ତି |
| ୧୩୮ | ୭ | ମନ୍ଦମତ୍ତ | ମଦମତ୍ତ |
| ୧୩୯ | ୨ | ଖୋଜୁଜନ୍ତି | ଖୋଜୁଛନ୍ତି |
| ୧୪୧ | ୧୯ | ପଣ୍ଡିତମାନେ | ପଣ୍ଡିତମାନଙ୍କଠାରୁ |
| ୧୪୧ | ୨୦ | ହୋଇଥିଲେ | ହେଉଥିଲେ |

| | | | |
|---|---|---|---|
| ୧୪୨ | ୧୦ | ଦ୍ୟର୍ଥ | ଦ୍ୱିଅର୍ଥ |
| ୧୪୩ | ୧୮ | ପର୍ଯ୍ୟବେଶିତ | ପର୍ଯ୍ୟବସିତ |
| ୧୪୪ | ୬ | ସମ୍ଭର | ସମ୍ଭାର |
| ୧୪୪ | ୧୯ | ବଶ୍ୱାସ | ନଶ୍ୱାସ |
| ୧୪୪ | ୨୧ | ଘଟାଇଛନ୍ତି | ଘଟାଇଛନ୍ତ୍ର |
| ୧୪୫ | ୧୦ | ଅନୁଗ୍ରହ | ନିଅନୁଗ୍ରହ |
| ୧୪୫ | ୧୧ | ଅନୁଗ୍ରହ | ନିଅନୁଗ୍ରହ |
| ୧୪୬ | ୧୨ | କବାଟେଣେ | କବକେତେକ |
| ୧୪୬ | ୧ | ନୋଡ଼ାତୁଣ୍ଡଂ | ନୋଡ଼ାକୁଣ୍ଡଂ |
| ୧୪୬ | ୧୯ | ସ୍ଥିର | ସ୍ଥିରା |
| ୧୪୯ | ୫ | ଉତ୍ସର୍ଗ | ଉତ୍କର୍ଷସାଧନ |
| ୧୪୯ | ୧୫ | ଶିକ୍ଷକ | ଶିବଙ୍କ |
| ୧୫୦ | ୧୬ | ପୂତମୀର | ପୂତ[illegible]ର |
| ୧୫୧ | ୧୩ | ଆରାଘ | ଆରା[illegible]ା |
| ୧୫୧ | ୧୬ | ସାଜକ | ସାଦନ |
| ୧୫୨ | ୩ | କନ୍ଦେଶ୍ୱର | ବକ୍ରେଶ୍ୱର |
| ୧୫୪ | ୧୩ | ଉପାବାର | ଉପାଡବାର |
| ୧୫୫ | ୧୬ | ଦୁହିତ | ଦୁହିତା |
| ୧୫୬ | ୧ | କରଗତ | ଗୋଟି ଏକରଗତତ୍ତ୍ୱ ପଡିବାକୁ ହେବ |
| ୧୫୭ | ୧୮ | ସନ୍ଧ | ସର |
| ୧୫୮ | ୧୫ | ରାଜବା | ରାଜନା |
| ୧୫୮ | ୧୮ | ବ୍ୟୁପ୍ତତି | ବ୍ୟୁତ୍ପତ୍ତି |
| ୧୬୨ | ୬ | "ପଟ୍ଟନାୟକପ୍ରଭୃତି ଏହିବିଦ୍ୟାଳୟରେ ଅଧ୍ୟୟନ କରିଥିଲେ" (ମିଶିବ) | |

| | | | |
|---|---|---|---|
| ୧୬୧ | ୧୮ | ଶିଷାପ୍ରଭ(ଆକୃଷ୍ଟକରବାଲଗି)(ମିଶିବ) | |
| ୧୬୨ | ୬ | ଜଣାଇବା (ପରେ) ଉଦ୍ଦେଶ୍ୟରେ (ମିଶିବ) | |
| ୧୬୩ | ୨୧ | ଭାଷ୍ୟ | ଭାଷା |
| ୧୬୪ | ୧୩ | man | men |
| ୧୬୪ | ୧୯ | ଘ୍ରାଣଗ୍ରାସୀକୁ | ଘ୍ରାଣଗ୍ରାସୀଙ୍କୁ |
| ୧୬୫ | ୧୮ | ପଦାର୍ପକର | ପଦାର୍ପଣକର |
| ୧୬୭ | ୨ | ଗାପୀବୃନ୍ଦ | ଗୋପୀବୃନ୍ଦ |
| ୧୬୭ | ୧୭ | ଉଦ୍ଧାଟା | ଉଦ୍‌ଘାଟା |
| ୧୭୦ | ୧୩ | ଅଧିବେଣନରେ | ଅଧିବେଶନରେ |
| ୧୭୧ | ୧ | ଚେଷ୍ଟାରେ | ଚେଷ୍ଟା |
| ୧୭୨ | ୯ | ନଜ | ନିଜେ |
| ୧୭୨ | ୯ | ରୁଦ୍ରଭିଷେକ | ରୁଦ୍ରାଭିଷେକ |
| ୧୭୨ | ୨୧ | ପଣ୍ଡାଦେବୀଙ୍କ | ପଣ୍ଡାଙ୍କ |
| ୧୭୩ | ୧୫ | ଗୋଷଇର | ଗୋଷଘର |
| ୧୭୪ | ୪ | ଚନ୍ଦନନ୍ତରମ୍ ସ୍ୱରସୁନ୍ଦରଃ – ଚନ୍ଦନନ୍ତରମ୍ ସୁର ସୁନ୍ଦରଃ | |
| ୧୭୪ | ୫ | ଦେବାଭିଦଃ | ଦେବାଭିଧଃ |
| ୧୭୪ | ୭ | ପ୍ରଣପାଜତ | ପ୍ରତାପଜତ |
| ୧୭୪ | ୯ | ପ୍ରସାଦ | ପ୍ରାସାଦ |
| ୧୭୪ | ୧୦ | ଚତୁର୍ଦ୍ଦଶୋଥିତ୍ୱାନବଂଶତ – ଚତୁର୍ଦ୍ଦଶତ୍ୱାନ ବଂଶତ | |
| ୨୭୪ | ୧୧ | ଭୂଷଣୋପାଧିକ | ଭୂଷଣୋପାଧିକ |
| ୧୭୫ | ୫ | କଞ୍ଚନ୍ଦ୍ରଦେବଧାସ୍ତା | କଞ୍ଚଦ୍ ବଧାସ୍ତା |
| ୧୭୫ | ୫ | ମଦନମୋହନଙ୍କୁ | ମଦନମୋହନ |

| | | | |
|---|---|---|---|
| ୧୭୫ | ୯ | ରଖାଯାଇଥିଲ | କରାଇଥିଲେ |
| ୧୭୫ | ୧୫ | ଧର୍ମାନୁଶାସିତା | ଧର୍ମାନୁସରିତା |
| ୧୭୫ | ୧୯ | ଧର୍ମୈକ୍ୟକ୍ତ | ଧର୍ମୈକକ୍ତ |
| ୧୭୭ | ୧ | ମର୍ଦ୍ଧ୍ୟନ | ମର୍ଦ୍ଧନ |
| ୧୭୭ | ୭ | ପ୍ରଜାବତ୍ସଳ | ପ୍ରଜାବତ୍ସଳତା |
| ୧୭୭ | ୧୮ | ଦେଖି | ଲେଖି |
| ୧୭୮ | ୧୦ | ବିଶେଶ | ବିଶେଷ |
| ୧୭୮ | ୧୨ | ରାମାଜିର | ରାଜବଂଶର |
| ୧୭୮ | ୧୮ | ଏହ୍ନିରହେ | ଏହ୍ନିଟିରହେ |
| ୧୭୯ | ୧୪ | ଶୃଙ୍ଖାଘ | ଶୃଙ୍ଗାଘ |
| ୧୮୦ | ୩ | ରାଜ | ରାଜା |
| ୧୮୦ | ୧୨ | କୃଷ୍ଣ | କୃଷ୍ଣ |
| ୧୮୦ | ୧୩ | ସ୍ୱର୍ଗସ୍ତୁ | ସ୍ୱର୍ଗୀସ୍ତୁ |
| ୧୮୧ | ୫ | ଦେଉଥିଲେ | ଦେଇଥିଲେ |
| ୧୮୧ | ୧୨ | ଉଦ୍ଦେଶ୍ୟରେ | ଉଦ୍ଦେଶ୍ୟରେ |
| ୧୮୧ | ୧୯ | ନାମଙ୍କ | ନାମକ |
| ୧୮୩ | ୧୫ | ଅବସ୍ଥିତ | ଅବସ୍ଥିତ |
| ୧୮୪ | ୭ | ସୌନ୍ଦର୍ଯ୍ୟ | ସୌନ୍ଦର୍ଯ୍ୟ |
| ୧୮୪ | ୧୫ | ମନବାଞ୍ଛା | ମନୋବାଞ୍ଛା |
| ୧୮୫ | ୫ | ସ୍ତତ | ସ୍ତୁତ |
| ୧୮୫ | ୮ | ଦ୍ରବଭୂତ | ଦ୍ରବୀଭୂତ |
| ୧୮୫ | ୧୩ | ବର୍ଣ୍ଣାରୁ | ବର୍ଣ୍ଣନାରୁ |
| ୧୮୭ | ୧୫ | —କୃପାଛେଷଣେ ଷଣେ କର ଶଂଖୋଳ | |
| ୧୮୮ | ୧ | ବ | କ |

| | | | |
|---|---|---|---|
| ୧୮୮ | ୫ | ଜ୍ଜଲ | ଜ୍ଜ୍ୱାଲ |
| ୧୮୮ | ୧୩ | ଅଷ୍ଟାକ | ଅଷ୍ଟକ |
| ୧୮୮ | ୧୫ | ବୈଦ୍ୟନାଥଷ୍ଟକରୁ | ବୈଦ୍ୟନାଥଷ୍ଟକ |
| ୧୮୮ | ୧୮ | ଶରିଦ୍ୱାଣ୍ଣ | ଶରଦ୍‌ବାଣ |
| ୧୮୮ | ୨୦ | ବୈଦ୍ୟନାଥଷ୍ଟକଂ | ବୈଦ୍ୟନାଥାଷ୍ଟକଂ |
| ୧୮୮ | ୨୦ | ସବୃଦ୍ଧ | ସବୃଦ୍ଧିଃ |
| ୧୮୮ | ୨୧ | ଭବେତ୍‌ ପ୍ରସାଦାତ୍‌ | ଭବେତ୍‌ତତ୍‌ ପ୍ରସାଦାତ୍ତା |
| ୧୮୮ | ୨୧ | ଭୁବକ୍ରୀଡ଼ | ଭୁନକ୍ରୀଡ଼ |
| ୧୮୯ | ୩ | କାଳୋଚିତ୍ତ | କାଳୋଚିତ |
| ୧୮୯ | ୧୭ | ଶିରେ | ଗିରେ |
| ୧୯୧ | ୪ | ଦେଶାତ୍ମବୋଢ | ଦେଶାତ୍ମବୋଧ |
| ୧୯୧ | ୧୦ | ପଙ୍କ | ପଙ୍କେ |
| ୧୯୧ | ୧୯ | ଉନ୍ମୋକ୍ତ | ଉନ୍ମୁକ୍ତ |
| ୧୯୨ | ୧୬ | ବଷେଷ | ବିଶେଷ |
| ୧୯୩ | ୬ | ହୋଇଥିବା | ହୋଇନଥିବା |
| ୧୯୩ | ୧୪ | ନୁତ୍ୟ | ନୃତ୍ୟ |
| ୧୯୪ | ୧୦ | ବୁଭପଟ୍ଟାଭିଷେକ | ଶୁଭପଟ୍ଟାଭିଷେକ |
| ୧୯୪ | ୧୫ | କଳକାକଳୀ | କଳକଳ |
| ୧୯୪ | ୧୫ | ଘନକପିନ | ଘନବପିନ |
| ୧୯୪ | ୧୬ | ସେକନୀ | ସେବନୀ |
| ୧୯୫ | ୧୪ | ବତଡତ | ବଜ୍ରଡତ |
| ୧୯୫ | ୧୫ | ବଶେଷଣୀ | ବିଶ୍ଳେଷଣୀ |
| ୧୯୬ | ୧୫ | ଭୌଗଳକ | ଭୌଗୋଳିକ |
| ୧୯୮ | ୯ | ବେଶକୁ | ଦେଶକୁ |

| | | | |
|---|---|---|---|
| ୧୯୮ | ୧୩ | ଉଲ୍ଲେଖ | ଉଲ୍ଲେଖକର |
| ୧୯୮ | ୧୮ | ଦେବୁଁ | ଦେଖୁ |
| ୧୯୮ | ୧୮ | ଝଷ | ଝଙ୍କ |
| ୨୦୦ | ୩ | ନିଜେ | ଷଜେ |
| ୨୦୦ | ୪ | ‘‘କବତା’’- | ଛୁଡ଼ପଡ଼ାଯିବ |
| ୨୦୦ | ୧୫ | ଧଗକୋଠର | ଧଗ୍ରକୋଠ |
| ୨୦୧ | ୧୨ | ‘ନ’କାଗଜ୍ୟ | ନକାଗଦ୍ୟ |
| ୨୦୧ | ୧୪ | ନିଜର | ନଜିର |
| ୨୦୧ | ୧୫ | ଜନଜୀକୁନବ | ଜନଜୀବନକୁ |
| ୨୦୨ | ୧୬ | ଷଦ୍‌ବସ୍ତ | ଷଦ୍‌ବସ୍ତା |
| ୨୦୨ | ୧୮ | ବାଦ୍‌ଚ୍ଛୁଭୁସ | ବାକ୍‌ଚ୍ଛୁଭୁସ |
| ୨୦୩ | ୨ | ଦଝକ | ଦତ୍ତକ |
| ୨୦୪ | ୨୦ | ସ୍ୱପ୍ନବୋକ୍ର | ସ୍ୱପ୍ନବୋକ୍ତ |
| ୨୦୬ | ୬ | ଦୁଃଷ | ଦୁଃଖୀ |
| ୨୦୬ | ୯ | ବର୍ଣ୍ଣନା | (ଦୁଇଟିରୁଗୋଟିଏ କଟିଯିବ) |
| ୨୦୬ | ୧୭ | ଚନ୍ଦ୍ରବାକ | ଚକ୍ରବାକ |
| ୨୦୭ | ୨୧ | ନାମରେ | ନାମର |
| ୨୦୯ | ୧୧ | କୁରୁଙ୍କର | କୃଷ୍ଣଙ୍କର |
| ୨୧୦ | ୧୦ | ରଚନାରେ | ରଚନାକର |
| ୨୧୨ | ୧ | ଭାବେସତ୍ତ୍ୱର | ଭାବସତ୍ତ୍ୱର |
| ୨୧୩ | ୨୦ | ମିବୋସ୍‌ସର୍ବ | ମିବୋସ୍‌ସର୍ଗ |
| ୨୧୫ | ୧୯ | authology | anthology |
| ୨୧୭ | ୧୧ | ପିଉ | ପିଉ |

| | | | |
|---|---|---|---|
| ୨୨୦ | ୫ | କଥା | ତଥା |
| ୨୨୧ | ୫ | ସ୍ୱନଘଷାବଳୀ | ସ୍ମନପଷାବଳୀ |
| ୨୨୧ | ୯ | lettle | little |
| ୨୨୨ | ୬ | ସାଙ୍ଗିତିକ | ସାଙ୍ଗୀତିକ |
| ୨୨୫ | ୧୬ | ବାଦ୍ଦବୋଧ | ବାଜମେଧ |
| ୨୨୬ | ୧୧ | ଦଶମୀପର୍ବ | ଦଶମୀପର୍ବକଥା |
| ୨୩୦ | ୩ | ତମରସ | ତାମରସ |
| ୨୩୧ | ୯ | କଭିନ୍ନ | ବଭିନ୍ନ |
| ୨୩୨ | ୪ | ଉକ୍ଗାତା | ଉଦ୍‌ଗାତା |
| ୨୩୩ | ୧୮ | ବଳପର | ବଳପର |
| ୨୩୩ | ୨୨ | ଶ୍ରେଣି | ଶ୍ରେଣୀ |
| ୨୩୫ | ୬ | ମଢ଼ମେ | ମଧମେ |
| ୨୩୫ | ୬ | କବନ୍ଦ୍ରେ | କବାନ୍ଦୌ |
| ୨୩୬ | ୭ | ପ୍ରତିପଦ ଶ୍ରବ | ପ୍ରତିପଦାଶ୍ରବ |
| ୨୩୬ | ୧୯ | କବାନ୍ଦ୍ର | କବୀନ୍ଦ୍ର |
| ୨୩୯ | ୧୦ | ରସଜୀଲ | ଗ୍ରସଜୀଲ |
| ୨୪୧ | ୧୯ | ପରବୃଷ୍ଟ | ପରପୁଷ୍ଟ |
| ୨୪୨ | ୧ | ପ୍ରଥିତଯଶ | ପ୍ରଥିତଯଶା |
| ୨୪୪ | ୧୪ | ମଦନମେହନ | ମଦନମୋହନ |
| ୨୪୫ | ୪ | ପ୍ରାଚନ | ପ୍ରାଚୀନ |
| ୨୪୬ | ୮ | ଭବ୍ୟୁଦ୍‌ବୋଧକ | ଭକ୍ତ୍ୟୁଦ୍‌ବୋଧକ |
| ୨୪୬ | ୧୦ | ଦୁପ୍ରାପ୍ୟ | ଦୁଷ୍ପ୍ରାପ୍ୟ |
| ୨୪୬ | ୮ | ମଣିକାଣିଜାଦ | ମଣିଝଣିଜାତ |

| | | | |
|---|---|---|---|
| ୨୪୮ | ୩ | ତତ୍ତ୍ୱାବଧାନ | ତତ୍ତ୍ୱାବଧାନ |
| ୨୪୮ | ୭ | ସ୍କୁବରେ | ସ୍କୁଲରେ |
| ୨୪୯ | ୪ | ଉଚ୍ଛେଦ | ଉଚ୍ଛେଦ |
| ୨୪୯ | ୮ | ଭାର | ଘର |
| ୨୫୦ | ୧୫ | ଉତ୍ତରଖରେ | ଉତ୍ତରଖଣ୍ଡରେ |
| ୨୫୧ | ୩ | ଅର୍ଥାଭାବରୁ | ଅର୍ଥାଭାବରୁ |
| ୨୫୧ | ୮ | ସାହିତ୍ୟରେ | ସାହିତ୍ୟରେ |
| ୨୫୧ | ୧୪ | କ୍ଲାଇଁଉକତ | କ୍ଲାଇଁଭକନ |
| ୨୫୨ | ୧୩ | ବ୍ୟୋଗରରେ | ବ୍ୟୋଗପରେ |
| ୨୫୨ | ୧୭ | ବନ୍ଦସ୍ଥ | ଏହାଦ୍ୱାରା ପଢ଼ାଯିବ |
| ୨୫୪ | ୨ | ଚଳନ୍ତବଳୁ | ଚଳନ୍ତିସବୁ |
| ୨୫୭ | ୭ | ଅନୁକରଣ | ଅନୁସରଣ |
| ୨୫୭ | ୧୯ | କରିଜନ୍ତି | କରିଛନ୍ତି |

—o—

# ସହାୟକ ଗ୍ରନ୍ଥାବଳୀ


୧ । ଚାରଣୀ ଚରଣ ଗ୍ରନ୍ଥାବଳୀ — ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

୨ । ଓଡ଼ିଆ ଲେଖକ ଓ ପରିଚୟ . (ଖ୍ରୀ ୧୪୫୦ – ୧୮୫୦) ଓଡ଼ିଶା ସାହିତ୍ୟ ଏକାଡ଼େମୀ

୩ । ଖୁର୍ଦ୍ଧା ଇତିହାସ — (ଖ୍ରୀ ୧୫୭୮ – ୧୮୧୭) କେଦାରନାଥ ମହାପାତ୍ର

୪ । ଓଡ଼ିଶାର ସଂସ୍କୃତ ଲେଖା ଓ ଲେଖକ — ନୀଳମଣି ମିଶ୍ର

୫ । ଓଡ଼ିଆ ଗୀତିକାବ୍ୟ ସଞ୍ଚୟନ — ଡାକ୍ତର ଜାନକୀବଲ୍ଲଭ ମହାନ୍ତି

୬ । ଓଡ଼ିଶା ଇତିହାସରେ ଖଲିକୋଟର ସ୍ଥାନ — ପଣ୍ଡିତ ବାଇକୋଳି ମହାପାତ୍ର

୭ । ପ୍ରାଚୀନ ଉତ୍କଳ — ଜଗବନ୍ଧୁ ସିଂହ

୮ । ଓଡ଼ିଶାର ଶାକ୍ତ ସଂସ୍କୃତି — ଓଡ଼ିଶା କାଲଚରଲ ଫୋରମ

୯ । ଗୋପବନ୍ଧୁ ରଚନାବଳୀ (୨ୟ ଖଣ୍ଡ) — ସମାଜ ପ୍ରେସ

୧୦ । ରାଧାନାଥ ଗ୍ରନ୍ଥାବଳୀ — ପ୍ରଥମ ଓ ଦ୍ୱିତୀୟଭାଗ

୧୧ । ଧରାକୋଟ ଦର୍ଶନ — ଚନ୍ଦ୍ରମଣି ମହାନ୍ତି

୧୨ । ଓଡ଼ିଶା ଇତିହାସ — ଡାକ୍ତର ସତ୍ୟନାରାୟଣ ରାଜଗୁରୁ

୧୩ । ପ୍ରବନ୍ଧାବଳୀ — ଶ୍ୟାମସୁନ୍ଦର ରାଜଗୁରୁ

14. A descriptive Catalogue of Sanskrit Manuscript of Orissa — Volume II
Orissa Sahitya Academy — Bhubaneswar

15. The Ganjam District Manual — By T. G. Maltby
Reprinted by the Superintendent — Govt. Press Madras 1888

୧୬ । ଏଥିରେ ଆଲୋଚନାକରାଯାଇଥିବା ସମସ୍ତ ଲେଖକଙ୍କ ପ୍ରକାଶିତ ପୁସ୍ତକ ଓ ଅପ୍ରକାଶିତ ପାଣ୍ଡୁଲିପି ।

